## ସାହିତ୍ୟସାଧକ

# ଫକୀରମୋହନ

ଲେଖକ—

ଅଧ୍ୟାପକ **ଚନ୍ଦ୍ରମଣି ଦାଶ**, ଏମ୍.ଏ.

ଅଧ୍ୟାପକ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର



ପ୍ରକାଶକ—

**ଓଡ଼ିଶା ବୁକ୍ ହାଉସ୍**

ବ୍ରହ୍ମପୁର

ମୂଲ୍ୟ—ଟ ୪ . ୫୦ ନୂ: ପ:

# ସୂଚିପତ୍ର

# ଆତ୍ମଲିପି

'ସାହିତ୍ୟ-ସାଧକ ଫକୀରମୋହନ' ମୋର 'କବି ଗୋଦାବରୀଶ' ପରେ ଦ୍ୱିତୀୟ ସମାଲୋଚନା ପୁସ୍ତକ । 'କବି ଗୋଦାବରୀଶ'ପ୍ରତି ଗୁଣୀ ଓ ସାଧାରଣ ସାହିତ୍ୟାମୋଦୀ ପାଠକ-ସାଧାରଣଙ୍କର ଶ୍ରଦ୍ଧା ଓ ସହାନୁଭୂତି ଦେଖି ମୁଁ ଫକୀରମୋହନଙ୍କ ସାହିତ୍ୟ ଉପରେ ଗୋଟିଏ ବିଶ୍ଳେଷଣାତ୍ମକ ସମାଲୋଚନା ପୁସ୍ତକ ଲେଖିବାକୁ ପ୍ରୟାସୀ ହେଲି । ଏହା ପୂର୍ବରୁ ଫକୀରମୋହନଙ୍କ କଥା-ସାହିତ୍ୟ ଉପରେ ଓଡ଼ିଶାର କେତେ ଜଣ ସୁସମାଲୋଚକ ଓ କୃତୀ ସାହିତ୍ୟିକ ଉପାଦେୟ ଗ୍ରନ୍ଥମାନ ରଚନା କରିଅଛନ୍ତି । ଏ ଦିଗରେ ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଅଧ୍ୟାପକ ଶ୍ରୀ ନଟବର ସାମନ୍ତରାୟଙ୍କ ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ । ଉତ୍କଳର ବରେଣ୍ୟ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାଶ ମଧ୍ୟ ଫକୀରମୋହନଙ୍କ ସାହିତ୍ୟସୃଷ୍ଟି ସମ୍ବନ୍ଧରେ ତାଙ୍କର 'ଓଡ଼ିଆ ଭାଷା ଓ ସାହିତ୍ୟ' ପୁସ୍ତକରେ ଏବଂ ଫକୀରମୋହନ ଗ୍ରନ୍ଥାବଳୀର ଭୂମିକାରେ ସୁଚିନ୍ତିତ ଓ ସାରବାନ୍ ମତମାନ ବ୍ୟକ୍ତ କରିଅଛନ୍ତି । ଏପରି ସ୍ଥଳେ ବ୍ୟାସକବି ଫକୀରମୋହନଙ୍କ ସାହିତ୍ୟ ସମ୍ବନ୍ଧରେ ଆଉ ଗୋଟିଏ ଆଲୋଚନାମୂଳକ ପୁସ୍ତକ ଲେଖି ଓଡ଼ିଆ ସମାଲୋଚନା ସାହିତ୍ୟକୁ ଭାରାକ୍ରାନ୍ତ କରିବାର କି ଆବଶ୍ୟକତା ଥିଲା ଏ ବିଷୟରେ କେହି କେହି ସନ୍ଦିହାନ ହୋଇପାରନ୍ତି । ସେ ସନ୍ଦେହ ନିରାକରଣ ନିମନ୍ତେ ଏଠାରେ ଏତିକିମାତ୍ର କୁହାଯାଇପାରେ, ଫକୀରମୋହନଙ୍କ ଏକନିଷ୍ଠ ସାହିତ୍ୟ-ସାଧନା ଏବଂ ଅଗାଧ ଐକାନ୍ତିକ ସାହିତ୍ୟ-ପ୍ରୀତି ମୋ କ୍ଷୁଦ୍ର ପ୍ରାଣରେ ସେହି ପୁଣ୍ୟାତ୍ମା କୃତୀ ପୁରୁଷଙ୍କ ପ୍ରତି ଏତେ

ପ୍ରଗାଢ଼ ଭକ୍ତି, ଶ୍ରଦ୍ଧା ଓ ସମ୍ମାନ ଉଦ୍ରେକ କରିଅଛି ଯେ ତାଙ୍କ ସାହିତ୍ୟସୃଷ୍ଟି ସମ୍ବନ୍ଧରେ ଅଧିକ ବିଶଦ ଓ ବିସ୍ତୃତଭାବରେ ଅନ୍ତତଃ କେତେକ ବିଷୟ ଆଲୋଚନା କରିବାର ବଳବତୀ ଇଚ୍ଛାକୁ ମୁଁ କୌଣସିପ୍ରକାରେ ଦମନ କରିପାରି ନାହିଁ । ଓଡ଼ିଆ ସାହିତ୍ୟ ବର୍ତ୍ତମାନ ଦ୍ରୁତପ୍ରଗତିଶୀଳ, ବିଶେଷତଃ କ୍ଷୁଦ୍ରଗଳ୍ପ ଓ ନାଟକ ପ୍ରଭୃତିରେ ଏହା ଭାରତର ଅନ୍ୟାନ୍ୟ ଆଞ୍ଚଳିକ ସାହିତ୍ୟ ସହିତ ସମତାଳରେ ଗତିକରିବାକୁ ସଚେଷ୍ଟ । କିନ୍ତୁ ଫକୀରମୋହନ ଓ ତାଙ୍କ ସମୟର ମୁଷ୍ଟିମେୟ କେତେକ ବଳିଷ୍ଠ ଦେଶାତ୍ମବୋଧସମ୍ପନ୍ନ ସାହିତ୍ୟିକ ଅତି ବିନମ୍ର ଓ ନିରହଙ୍କାରଭାବରେ ଯେପରି ନିରବଚ୍ଛିନ୍ନ ସାହିତ୍ୟ-ସାଧନାରେ ଆତ୍ମନିୟୋଗ କରିଥିଲେ, ବିଶେଷତଃ ନାନା ବାଧାବିଘ୍ନ ଓ ଭାଗ୍ୟବିପର୍ଯ୍ୟୟର ସମ୍ମୁଖୀନ ହୋଇ ଫକୀରମୋହନ ଓଡ଼ିଆ ଭାଷା ଓ ସାହିତ୍ୟର ଉତ୍କର୍ଷ ବିଧାନ ନିମନ୍ତେ ଯେଉଁ ଅକ୍ଳାନ୍ତ ସାଧନା ଓ ଆତ୍ମୋତ୍ସର୍ଗର ଚରମ ପରାକାଷ୍ଠା ଦେଖାଇଅଛନ୍ତି, ମୁଁ ଆଜି ଆଧୁନିକ କିମ୍ବା ଅତ୍ୟାଧୁନିକ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଆଉ ସେପରି କାହାକୁ ଦେଖିବାକୁ ପାଏ ନାହିଁ । ଏ ଅବଶ୍ୟ ମୋର ବ୍ୟକ୍ତିଗତ ମତ । ତେଣୁ ଏ ପୁସ୍ତକଟି ଫକୀରମୋହନଙ୍କ ପ୍ରତି ମୋର ଯେଉଁ ଅପରିମିତ ଶ୍ରଦ୍ଧା ଓ ସମ୍ମାନ, ତାର ଅନୁପ୍ରେରଣାର କ୍ଷୀଣ ଉଦ୍ୟମ ମାତ୍ର । ଫକୀରମୋହନଙ୍କ ସାହିତ୍ୟାନୁଶୀଳନରେ, ମୋର ବିଗୃରଧାରାରେ, ଯଦି କିଛି ଭ୍ରମ, ତ୍ରୁଟି କିମ୍ବା ଅସଙ୍ଗତି ଥାଏ, ପାଠକପାଠିକାମାନେ ତାହା କୃପାକରି ମାର୍ଜନା କରିବେ ।

ସେହିପରି କଟକ ଗୋପବନ୍ଧୁ-ସାହିତ୍ୟ-ମନ୍ଦିରରୁ 'ସମାଜ'ର ସୁନାମଧନ୍ୟ ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କ ଦୀର୍ଘ ମୁଖବନ୍ଧ ସହ ନିକଟରେ ପ୍ରକାଶ ପାଇଥିବା ମୋର 'ଐତିହାସିକ କୃପାସିନ୍ଧୁ'

'କୋଣାର୍କ' ଓ 'ବାରବାଟୀ' ପ୍ରଭୃତି ଗ୍ରନ୍ଥ ରଚୟିତା ଏବଂ ସତ୍ୟବାଦୀ ବନ-ବିଦ୍ୟାଳୟର ସୁଦକ୍ଷ ଶିକ୍ଷକ ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ପ୍ରତି ଲେଖକର ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନର ବିନୀତ ନିଦର୍ଶନ ମାତ୍ର ।

ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପ-ସାହିତ୍ୟର ତୁଳନାତ୍ମକ ବିଚାର କରିବାକୁ ଯାଇ ମୁଁ ଯେଉଁ କେତୋଟି ବିଦେଶୀ ଉପନ୍ୟାସ ଓ ଗଳ୍ପର ସାହାଯ୍ୟ ନେଇଅଛି, ତାହା ଶ୍ରୀ ଦେବୀପ୍ରସାଦ ଭଟ୍ଟାଚାର୍ଯ୍ୟଙ୍କ ପ୍ରଣୀତ 'ଉପନ୍ୟାସେର କଥା' ଏବଂ ଶ୍ରୀ ନାରାୟଣ ଗଙ୍ଗୋପାଧ୍ୟାୟଙ୍କ 'ସାହିତ୍ୟେର ଶ୍ରେଷ୍ଠ ଗଳ୍ପ' ଗ୍ରନ୍ଥମାନଙ୍କରୁ ଯଥାସମ୍ଭବ ଅନୂଦିତ ହୋଇ ଉଦ୍ଧାର କରାଯାଇ ଅଛି । ସେଥିନିମନ୍ତେ ଏ ଉଭୟ ବଙ୍ଗୀୟ ସାହିତ୍ୟିକଙ୍କଠାରେ ମୁଁ କୃତଜ୍ଞତା ନିବେଦନ କରୁଅଛି ।

ମୋର 'କବି ଗୋଦାବରୀଶ'ର ପ୍ରକାଶକ ବ୍ରହ୍ମପୁରର ଓଡ଼ିଶା ବୁକ୍ ହାଉସ ସ୍ୱତଃପ୍ରବୃତ୍ତ ହୋଇ ଏ ପୁସ୍ତକର ପ୍ରକାଶଭାର ଗ୍ରହଣ କରିଥିବାରୁ ମୁଁ ତାହାର ପରିଚାଳକମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ ଏତିକିମାତ୍ର ବକ୍ତବ୍ୟ, ମୋର ଏହି କ୍ଷୀଣ ଉଦ୍ୟମଟି ଯଦି ପୁଣ୍ୟାତ୍ମା ଫକୀରମୋହନଙ୍କର ସାରସ୍ୱତ ସାଧନା ଓ ଜୀବନ-ସ୍ମୃତିକୁ ଓଡ଼ିଶାରେ ଅଧିକ ଦୃଢ଼ ଓ ଜୀବନ୍ତ କରି ରଖିବାରେ ସାହାଯ୍ୟ କରିବ, ତେବେ ଶ୍ରମ ପଣ୍ଡ ହୋଇନାହିଁ ବୋଲି ମନେକରିବି ।

ଶ୍ରୀରାମଚନ୍ଦ୍ରପୁର, ସାକ୍ଷୀଗୋପାଳ
ଦେବସ୍ନାନପୂର୍ଣ୍ଣିମୀ
୭-୬-୬୩

**ଶ୍ରୀ ଚିନ୍ତାମଣି ଦାଶ,**
ଅଧ୍ୟାପକ
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

# ସାହିତ୍ୟସାଧକ ଫକୀରମୋହନ

( ୧ )

## ସାଧନା ଓ ସିଦ୍ଧି

ସାହିତ୍ୟ ସାଧନାର ଧନ । ଧ୍ୟାନର ସାମଗ୍ରୀ । ଭାବନାର ସମ୍ପଦ । ପ୍ରତିଭା ଓ ସୃଜନୀଶକ୍ତି ଥିଲେ ସୁଦ୍ଧା ସାହିତ୍ୟ-ସୃଷ୍ଟି କଠିନ ବ୍ୟାପାର ଓ ଅଧ୍ୟବସାୟସାପେକ୍ଷ । କେବଳ ମନର ସାଧ ଓ ସୁକୁମାର ଭାବ-ବିଳାସ ନେଇ କେହି ଚିରନ୍ତନ ସାହିତ୍ୟ ସୃଷ୍ଟି କରିପାରେ ନାହିଁ । ସାହିତ୍ୟିକର ସହଜାତ ଶକ୍ତି ଥାଇପାରେ, କଳ୍ପନା, ଅନୁଭୂତି ଏବଂ ସୃଷ୍ଟି-ପ୍ରେରଣା ଥାଇପାରେ, କିନ୍ତୁ ଅଭ୍ୟାସ, ନିରବଚ୍ଛିନ୍ନ ସାଧନା ଓ ଅନୁଶୀଳନର ଅଭାବରେ ସେ ପ୍ରତିଭା ମ୍ଳାନ ହୋଇଯାଏ, ତାର ଉତ୍ତରୋତ୍ତର ବିକାଶ ଘଟେ ନାହିଁ । ଶକ୍ତି ବ୍ୟର୍ଥତାରେ ପରିଣତ ହୁଏ । କବି କାବ୍ୟ ପ୍ରେରଣା ନିମନ୍ତେ ଦୈବ ଉପରେ ନିର୍ଭର କରି ରହେ ନାହିଁ, ବରଂ ଯୋଗସାଧକ ପରି ନିଜର ସାଧନାଦ୍ୱାରା ଆପଣାର ସୃଜନୀଶକ୍ତି, ପ୍ରଜ୍ଞା, କିମ୍ବା ବୁଦ୍ଧିକୁ ଜାଗ୍ରତ କରିପାରେ । ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ କହିଛନ୍ତି—ମନୁଷ୍ୟର ପାଶବିକ ପ୍ରବୃତ୍ତି ଅଛି, ଏହା ବାସ୍ତବ । ମନୁଷ୍ୟ ଏହା ଜାଣେ, କିନ୍ତୁ ତାହାକୁ ସେ ଘୃଣା କରେ—ସେ ବିଷୟ ସେ ଭାବିବାକୁ ଚାହେଁ ନାହିଁ । ସେହି ପ୍ରକୃତିକୁ ଅତିକ୍ରମ କରି ତାହାର ଊର୍ଦ୍ଧ୍ୱକୁ ଉଠିବାର ଚେଷ୍ଟା ଓ ଆଦର୍ଶର ସ୍ୱପ୍ନ ହିଁ

ମନୁଷ୍ୟର ନିତ୍ୟ ସହଚର । ସେହି ଚେଷ୍ଟା, ସାଧନା ଓ କଳ୍ପନା ହିଁ ସାହିତ୍ୟରେ ଭାଷା ପାଏ । "ମନୁଷ୍ୟ ଚିରକାଳ ପରିପୂର୍ଣ୍ଣତାର ଆସନ ପାଇଛି ସାହିତ୍ୟର ତପୋବନରେ ଧ୍ୟାନର ସମ୍ପଦରେ" । ତେଣୁ ସାହିତ୍ୟ-ରଚନା ପିଲାଖେଳ ନୁହେଁ । ସାହିତ୍ୟିକକୁ ମାନବାତ୍ମାର ଗୌରବ ସମ୍ବନ୍ଧରେ ସଚେତନ ହେବାକୁ ପଡ଼ିବ, ଲୋକଙ୍କ ସହିତ ମିଳିମିଶି ସେମାନଙ୍କ ଅନ୍ତରର କଥା ଶୁଣିବାକୁ ହେବ । ସେମାନଙ୍କର ଅବ୍ୟକ୍ତ ବେଦନାର ନିଗୂଢ଼ ବ୍ୟଥା ବ୍ୟକ୍ତ କରିବାକୁ ହେବ । ବୁଦ୍ଧିକୁ ତୀକ୍ଷ୍ଣ କରିବାକୁ ହେବ । ଚିନ୍ତାକୁ ସଂଯତ କରିବାକୁ ହେବ । ପ୍ରବୃତ୍ତିକୁ ଦମନ କରିବାକୁ ହେବ । ଭାବକୁ ରସୋତ୍ତୀର୍ଣ୍ଣ କରିବାକୁ ହେବ । ବାକ୍‌ବୈଭବର ଆଶ୍ରୟ ନେବାକୁ ହେବ । ଲିପିକୁଶଳତା ଅର୍ଜନ କରିବାକୁ ହେବ । ଏହା କଣ ବିନା ଶ୍ରମ ଓ ସାଧନାରେ କେବଳ ନିସର୍ଗ ପ୍ରତିଭାବଳରେ ସମ୍ଭବ ? ଯେଉଁଠାରେ ପ୍ରତିଭା ଓ ସାଧନାର ମଣିକାଞ୍ଚନ ସଂଯୋଗ, ସେହିଠାରେ ଦେଖିବାକୁ ମିଳେ ଚିରଭାସ୍ୱର ସାହିତ୍ୟ-କୀର୍ତ୍ତି । ବ୍ୟାସକବି ଫକୀରମୋହନ ଏହିପରି ଜଣେ ସାହିତ୍ୟ-ସାଧକ ଥିଲେ । ଦେଶାତ୍ମବୋଧ ଉପରେ ପ୍ରତିଷ୍ଠିତ ତାଙ୍କର ସେ ବ୍ୟାକୁଳ ସାଧନା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେହିପରି ଅକ୍ଷୁଣ୍ଣ ଥିଲା । ସେ ସରସ ସୁନ୍ଦର ଲିପିକୁଶଳତା, ସେ ସଂସ୍କାରପ୍ରବଣତା, ଘଟଣାକୁ ତୁଳା ଭଣିଲାପରି ଟିକିନିଖି କରି ଧୀର ମନ୍ଥର ଭାବରେ ବିଶ୍ଳେଷଣ କରିବାର ପ୍ରତିଭା ଏବଂ ଚଟୁଳ ହାସ୍ୟରସ ପରିବେଷଣ ସଙ୍ଗେ ସଙ୍ଗେ କରୁଣ ରସର ସୁମଧୁର ବିନ୍ୟାସରେ ପାଠକ ଚକ୍ଷୁକୁ ଅଶ୍ରୁସିକ୍ତ କରିବାର କ୍ଷମତା—ଶେଷ ପର୍ଯ୍ୟନ୍ତ ତାଙ୍କର ଏ ସବୁ ସେହିପରି ଅବ୍ୟାହତ ଥିଲା । ବଙ୍ଗଳାର ସର୍ବଶ୍ରେଷ୍ଠ ଜୀବନ-ସାଧକ ଔପନ୍ୟାସିକ ଶରତଚନ୍ଦ୍ରଙ୍କ ସମ୍ବନ୍ଧରେ ଜଣେ ସମାଲୋଚକ ଯାହା

ଲେଖିଥିଲେ ତାହା ଫକୀରମୋହନଙ୍କ ଜୀବନବ୍ୟାପୀ ସାହିତ୍ୟ-ସାଧନା ପ୍ରତି ସମ୍ପୂର୍ଣ୍ଣରୂପେ ପ୍ରଯୋଜ୍ୟ ବୋଲି ମନେ ହୁଏ । "ତାହାଙ୍କର (ଶରତଚନ୍ଦ୍ରଙ୍କର) ଆବିର୍ଭାବ ଓ ତିରୋଭାବ ଏହି ଉଭୟ ମଧ୍ୟରେ ଥିଲା ଗୋଟିଏ ସାର୍ଥକ ଓ ନିରବଚ୍ଛିନ୍ନ ସାହିତ୍ୟିକ ଜୀବନ । ସେ ଯେପରି ଆମ୍ଭମାନଙ୍କ ନିମନ୍ତେ ସଦ୍ୟ ପ୍ରସ୍ତୁତ ମାନସିକ ଅନ୍ନ ନେଇ ଉପସ୍ଥିତ ହୋଇଥିଲେ ସେହିପରି ସେହି ଅନ୍ନର ଶେଷ କଣାଟି ବିତରଣ କରିବା ସଙ୍ଗେ ସଙ୍ଗେ ବିଦାୟ ନେଇଅଛନ୍ତି । ଏ ଦିଗରୁ ବିଚାର କଲେ ତାହାଙ୍କର ସାହିତ୍ୟିକ ଜୀବନ ଧନ୍ୟ ବୋଲି କହିବାକୁ ହେବ । ଏପରି ପୁଣ୍ୟବାନ୍ ସାହିତ୍ୟିକ ଆମ୍ଭେମାନେ ଅଳ୍ପ ଦେଖିଅଛୁ ।"

୧୯୧୭ ମସୀହାର ଏପ୍ରିଲ ମାସ ୪ ତାରିଖରେ ଫକୀର-ମୋହନ ଉତ୍କଳ-ସାହିତ୍ୟର ସମ୍ପାଦକ ବିଶ୍ୱନାଥ କରଙ୍କ ନିକଟକୁ ଲେଖିଥିଲେ, "ସ୍ଥିର କଲି, ଶକ୍ତି ସାମର୍ଥ୍ୟ ଥିବାଯାଏ ଗଳ୍ପ ଲେଖିବି ।" କେବଳ ପ୍ରତିଶ୍ରୁତି ଦେଇନଥିଲେ, ପ୍ରତିଶ୍ରୁତିକୁ ଅକ୍ଷରେ ଅକ୍ଷରେ କାର୍ଯ୍ୟରେ ବି ପ୍ରତିପାଳନ କରିଥିଲେ । ସେତେ-ବେଳକୁ ମୃତ୍ୟୁର ମୁଖବ୍ୟାଦାନ ଦେଖାଗଲଣି । ଶରୀର କ୍ରମେ ଅବଶ ହୋଇ ଆସିଲଣି । ଏକାସନରେ ବସି ଅଧଘଣ୍ଟାରୁ 'ବେଶୀ ସମୟ ଲେଖିବା' ତାଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲଣି । ତଥାପି ସେହି ଜରାଜୀର୍ଣ୍ଣ ଅବସ୍ଥାରେ ସୁଦୀର୍ଘ ଗଳ୍ପ ରଚନାର ପରିକଳ୍ପନା ଚାଲିଛି, ଦୀର୍ଘାୟିତ ଗଳ୍ପକୁ ଉପନ୍ୟାସରେ ରୂପାନ୍ତରିତ କରିବାର ଉତ୍ସାହ ମନଭିତରେ ଜାଗି ଉଠିଛି ।

ଫକୀରମୋହନଙ୍କ ସାହିତ୍ୟ-ସାଧନାର ସ୍ୱରୂପ ସମ୍ବନ୍ଧରେ ପଣ୍ଡିତ ନୀଳକଣ୍ଠ ଦାଶ ଯଥାର୍ଥ ଲେଖିଅଛନ୍ତି, "ଆଜି ରାଧାନାଥ ଓ

ମଧୁସୂଦନ ଉତ୍କଳ ସାହିତ୍ୟ-କ୍ଷେତ୍ର ଛାଡ଼ି ଯାଇଅଛନ୍ତି । ସେ ଦୁଇ ନୈଷ୍ଠିକ ସାହିତ୍ୟ-ସାଧକଙ୍କ ଆସନ ଅଦ୍ୟାପି ଖାଲି ପଡ଼ିଅଛି । ସେମାନଙ୍କ ସମାନଧର୍ମୀ ବୃଦ୍ଧ ଫକୀରମୋହନ କେବଳ ଏକନିଷ୍ଠ ହୋଇ ସାହିତ୍ୟ-ସେବାବ୍ରତ ଆଚରଣ କରୁଅଛନ୍ତି । ଏହି ତିନିହେଁ ନବଯୁଗର ଉତ୍କଳ-ସାହିତ୍ୟ-ଆଶ୍ରମର ଋଷି ।" *

ବାସ୍ତବରେ ଫକୀରମୋହନ ସାରସ୍ୱତ ତପୋବନର ଜଣେ ନିରବଚ୍ଛିନ୍ନ ସାଧକ ଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସେହି ଅକ୍ଳାନ୍ତ ସାଧନା, ଅଧ୍ୟବସାୟ ଓ ଲେଖନୀ ଚାଳନାର ବିରାମ ନଥିଲା । ଦେହ ଜରା-ଜର୍ଜର ଓ ବ୍ୟାଧିପ୍ରପୀଡ଼ିତ ମନ ଅବଶ ଓ ନାନା ଅଶାନ୍ତିରେ ବିକ୍ଷୋଭିତ; ଲେଖନୀ ଧରିବାକୁ ଶକ୍ତି ନାହିଁ—ହାତ ଥରୁଛି, ତଥାପି ଜୀବନର ଅନ୍ତିମ ନିଃଶ୍ୱାସ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଉତ୍କର୍ଷ ବିଧାନର ଚିନ୍ତାରେ ସେ ଅସ୍ଥିର ଥିଲେ । ଏ ଅକାଟ୍ୟ ଓ ଅତନ୍ଦ୍ର ସାଧନା କେବଳ ଦେଖିବାକୁ ମିଳେ ଆର୍ଯ୍ୟ ଋଷିମାନଙ୍କର ତପଶ୍ଚରଣରେ । ଯେଉଁ ଭାରତୀୟ ତପୋଧନମାନେ ସଂସାରର ମୋହ ପ୍ରପଞ୍ଚରୁ ନିଜକୁ ବିମୁକ୍ତ କରି ଅଧ୍ୟାତ୍ମସାଧନା ନିମନ୍ତେ ଅନନ୍ତ କ୍ଳେଶ ଓ ଦୁଃଖକୁ ଆନନ୍ଦରେ ବରଣ କରି ନେଇଥିଲେ ଏବଂ ଭଗବତ୍ ପ୍ରାପ୍ତି ନିମନ୍ତେ ଯେ କୌଣସି କୃଚ୍ଛ୍ର ସାଧନାକୁ

---

* ଗୋପବନ୍ଧୁଙ୍କ ସମ୍ପାଦିତ 'ସତ୍ୟବାଦୀ' ମାସିକ ପତ୍ରିକାର ବୃଷ ୧୩୨୨ ସାଲ୍ ୧ମ ଭାଗ ୪ର୍ଥ ସଂଖ୍ୟାଠାରୁ ସିଂହ ପର୍ଯ୍ୟନ୍ତ ଚାରି ସଂଖ୍ୟାରେ ପ୍ରକାଶିତ ଓ ପଣ୍ଡିତ ମହାଶୟଙ୍କର 'ଓଡ଼ିଆ ଭାଷା ଓ ସାହିତ୍ୟ'ରେ ସନ୍ନିବିଷ୍ଟ 'ଫକୀରମୋହନ ଓ ଓଡ଼ିଆ ଉପନ୍ୟାସ' ଦ୍ରଷ୍ଟବ୍ୟ । ଫକୀରମୋହନ ସେତେବେଳେ ଜୀବିତ ଥିଲେ ।

ଦୁଃସାଧ କିମ୍ବା କଷ୍ଟକର ମନେ କରୁନଥିଲେ, ଫକୀରମୋହନ ଥିଲେ ସେହିମାନଙ୍କର ସାର୍ଥକ ଦାୟାଦ । ଓଡ଼ିଆ ଭାଷା ଓ ସାହିତ୍ୟର ଦୁର୍ଗତି ଦେଖି ତାଙ୍କ ପ୍ରାଣ ବ୍ୟାକୁଳ ହୋଇଥିଲା । "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଁ", ଏ ବାକ୍ୟବାଣରେ ତାଙ୍କର ହୃଦୟ କ୍ଷତବିକ୍ଷତ ହୋଇଥିଲା । ପ୍ରତିବେଶୀ ସାହିତ୍ୟମାନଙ୍କ ପରି ଓଡ଼ିଆ ସାହିତ୍ୟକୁ ସୁମହାନ୍ ଓ ସର୍ବାଙ୍ଗସୁନ୍ଦର କରିବା ନିମନ୍ତେ ସେ ଯୋଗୀଋଷିମାନଙ୍କ ପରି ଦିବା ଶର୍ବରୀ ଧ୍ୟାନ କରୁଥିଲେ । ଓଡ଼ିଶା ଓ ଓଡ଼ିଆ ଭାଷାର ଉନ୍ନତି ବ୍ୟତୀତ ତାଙ୍କର ଯେପରି ଅନ୍ୟ କୌଣସି କାମନାର ସାମଗ୍ରୀ ନଥିଲା । ଭଲ ବଙ୍ଗଳା ବହିଟିଏ ପଢ଼ିଲେ ଆଗ୍ରହରେ କହି ପକାଉଥିଲେ, "ଆହା, ଆମ ଓଡ଼ିଆ ଭାଷାରେ ଏପରି ସୁନ୍ଦର ବହିଟିଏ ପ୍ରକାଶ ପାନ୍ତା କି ?"

ଫକୀରମୋହନ କେବଳ ଯେ ବାଲେଶ୍ୱରରେ ମୁଦ୍ରାଯନ୍ତ୍ର ସ୍ଥାପନ କରି ମାସିକ ପତ୍ରିକା ଓ ପ୍ରାଚୀନ ଓଡ଼ିଆ କାବ୍ୟ କବିତାର ପୁନର୍ମୁଦ୍ରଣ କରୁଥିଲେ, ତାହା ନୁହଁ; ଓଡ଼ିଆରେ ପିଲାଙ୍କ ନିମନ୍ତେ ଉତ୍ତମ ଧରଣର ପାଠ୍ୟପୁସ୍ତକ ନଥିବାର ଦେଖି, ସେ ପାଠ୍ୟ-ପୁସ୍ତକ ରଚନା କରିବାରେ ବି ବ୍ରତୀ ହୋଇଥିଲେ । ତାଙ୍କର ସାହିତ୍ୟ-ସାଧନା ବହୁମୁଖୀ । ପାଠ୍ୟପୁସ୍ତକ ପ୍ରଣୟନ କରିବାଠାରୁ ଉପନ୍ୟାସ ଓ ଗଳ୍ପ ରଚନା କରି ଆତ୍ମଚରିତ ଲେଖିବା ପର୍ଯ୍ୟନ୍ତ ସେ ସାହିତ୍ୟର ସକଳ ଦିଗରେ ଲେଖନୀ ଚାଳନା କରିଅଛନ୍ତି । ସେ ଯହିଁରେ ହାତ ଦେଇଅଛନ୍ତି, ତାହା ଶ୍ରୀସମ୍ପନ୍ନ ଓ ସାଫଲ୍ୟ-ମଣ୍ଡିତ ହୋଇଅଛି । ରାଧାନାଥ ପଦ୍ୟ-ସାହିତ୍ୟର ଯୁଗ-ପ୍ରବର୍ତ୍ତକ ହେଲେ, ଫକୀରମୋହନ ଗଦ୍ୟ-ସାହିତ୍ୟର ସ୍ରଷ୍ଟା ଓ ପଥିକୃତ୍ । ଗଦ୍ୟ-ଶୈଳୀର ଶିଳ୍ପ-ପରିପାଟିରେ ସେ ଯେଉଁ ନୂତନ ସରଣୀ, ଅଭିମୁଖ୍ୟ ଓ ବିପ୍ଳବର ସମୁଜ୍ଜ୍ୱଳ ପରିଚୟ ଦେଇ ଯାଇଅଛନ୍ତି,

ତାଙ୍କ ମୃତ୍ୟୁର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ କୌଣସି ଓଡ଼ିଆ ଲେଖକ ଫକୀରମୋହନଙ୍କୁ ସେ ଦିଗରେ ଅତିକ୍ରାନ୍ତ କରିଥିଲେ ବୋଲି ମନେ ହୁଏ ନାହିଁ । ଏବେ ଓଡ଼ିଆ କଥା-ଶିଳ୍ପର ପରିବେଶ, ପରିସର, ପରିଧି ଓ ଭୌଗୋଳିକତା ବିସ୍ତୃତି ଲାଭ କରିଛି । ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ କୌଣସି କୌଣସି ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଆଜି ହୁଏତ ଭାରତୀୟ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିବାକୁ ସଚେଷ୍ଟ । କିନ୍ତୁ ଫକୀରମୋହନଙ୍କ ପରି ଗ୍ରାମ୍ୟ ତଥା ଜୀବନ୍ତ ଓଡ଼ିଆ ଭାଷାରେ ଯୁଗଯୁଗ ଧରି ସାହିତ୍ୟ-କ୍ଷେତ୍ରରୁ ନିର୍ବାସିତ, ଅବହେଳିତ ଓ ବିସ୍ମୃତିର ଅତଳଗର୍ଭରେ ବିଲୀନ ନାନା ଦୁଃଖଦୈନ୍ୟ ଓ ନିର୍ଯାତନାରେ ନିପୀଡ଼ିତ ଜନସାଧାରଣଙ୍କର ତୁଚ୍ଛ ଦୈନନ୍ଦିନ ଜୀବନଯାତ୍ରାର ସମ୍ବେଦନାମୟ ଚିତ୍ର ଏପର୍ଯ୍ୟନ୍ତ କେହି ସେପରି ଅଙ୍କନ କରି ପାରିନାହାନ୍ତି । ଗଣତାନ୍ତ୍ରିକ ସାହିତ୍ୟର ମୂଳଭିତ୍ତି ସେ କେବଳ ସ୍ଥାପନ କରିନାହାନ୍ତି, ନିଜର ପ୍ରଜ୍ଞା ଓ ସାଧନାବଳରେ ସେ ଏହାର ମଧ୍ୟ ବିକାଶ ସାଧନ କରିଅଛନ୍ତି ।

ଫକୀରମୋହନଙ୍କର ଆବିର୍ଭାବ ୧୮୪୩ ଖ୍ରୀଷ୍ଟାବ୍ଦରେ ଏବଂ ତିରୋଭାବ ୧୯୧୮ରେ । ତାଙ୍କର ଏହି ପରମବାଞ୍ଛିତ ସୁଦୀର୍ଘ ଜୀବନକାଳ ବହୁ ଘଟଣାପୂର୍ଣ୍ଣ । ସେ ଓଡ଼ିଶା ଗଡ଼ଜାତର ବହୁ ଅଞ୍ଚଳରେ ଦାୟିତ୍ୱପୂର୍ଣ୍ଣ ଦେୱାନି କାର୍ଯ୍ୟ କରିଅଛନ୍ତି । ଘୋର ଶାସନ-ସଙ୍କଟର ସମ୍ମୁଖୀନ ହୋଇଅଛନ୍ତି । ପ୍ରଜାମେଳି ଦମନ କରିବାକୁ ଯାଇ ଜୀବନକୁ ବିପଦାପନ୍ନ କରିଅଛନ୍ତି । ଓଡ଼ିଆ ଜାତିର କଲ୍ୟାଣ ନିମନ୍ତେ ବାରମ୍ବାର ନାନା ଦୁର୍ଘଟଣା ଓ ଦୁଃସାଧ୍ୟ ବ୍ୟାଧିରେ ଆକ୍ରାନ୍ତ ହୋଇ ମୃତ୍ୟୁମୁଖରୁ ଉଦ୍ଧାର ଲାଭ କରିଅଛନ୍ତି । ପତ୍ନୀ-ବିୟୋଗ ଓ ପାରିବାରିକ ଅଶାନ୍ତିରେ ସଂସାରର ବିଷଜ୍ୱାଳା ମର୍ମେ ମର୍ମେ ଅନୁଭବ କରିଅଛନ୍ତି । ଶେଷ ଜୀବନରେ ନିଃସଙ୍ଗ ଓ

ନିସ୍ୱାର୍ଥ ହୋଇ କାଳାତିପାତ କରିଅଛନ୍ତି । ତଥାପି ଷଣିକଲା ଇଂରେଜ କବି ଶେଲି (**Shelley**) ପ୍ରକୃତି-ଉପାସକ କବି ଡ଼ବ୍ଲ୍ୟୁଅଡ଼ସ୍ ୱ୍ୟର୍ଥ (**Wordsworth**) ଙ୍କୁ ଲକ୍ଷ୍ୟ କରି କହିଥିବାପରି ଫକୀରମୋହନଙ୍କୁ ଯେ କୌଣସି ସାହିତ୍ୟ-ପ୍ରେମିକ କହିବ:—

**"Thou wert as a lone star,**
**whose light did shine**
**On some frail bark**
**in winter's midnight roar,**

× × × ×

**In honoured poverty thy voice did weave**
**Songs consecrate to truth and liberty."**

ଫକୀରମୋହନ ରାଧାନାଥ ଓ ମଧୁସୂଦନଙ୍କର ସମସାମୟିକ ହେଲେ ମଧ, ଓଡ଼ିଆ ସାହିତ୍ୟର ଉପନ୍ୟାସ-କ୍ଷେତ୍ରରେ ସେ ଥିଲେ ସେତେବେଳେ ଏକକ-ସାଙ୍ଗସାଥିଶୂନ୍ୟ । ନିର୍ଭୀକ ଓ ପୌରୁଷବାନ୍ ଯୋଦ୍ଧାରୂପେ ଓଡ଼ିଆ ଭାଷାର ସଂରକ୍ଷଣ ଓ ଅଭିବୃଦ୍ଧି ନିମନ୍ତେ ସେତେବେଳେ ଫକୀରମୋହନ ଯେପରି ଭାଷା ବିବାଦର ରଣ-ପ୍ରାଙ୍ଗଣରେ ଅସୀମ ସାହସ ଓ ଶକ୍ତି ଧାରଣ କରି ଅବତୀର୍ଣ୍ଣ ହୋଇଥିଲେ, ରାଧାନାଥ ଓ ମଧୁସୂଦନ ସେପରି ଯୋଦ୍ଧୃବେଶ ଗ୍ରହଣ କରିପାରି ନାହାନ୍ତି । ସେତେବେଳେ ଓଡ଼ିଆ ଭାଷାର ଦୁର୍ବଳ ତରଣୀ ପ୍ରତିବେଶୀର ଦର୍ପ-ସାଗରରେ ଟଳମଳ । ଓଡ଼ିଆ ଭାଷାର ବର୍ତ୍ତମାନ ଓ ଭବିଷ୍ୟତ୍ କେବଳ କୁହେଳିକାଚ୍ଛନ୍ନ ନୁହେ,

ଘନାନ୍ଧକାରରେ ବିଜଡ଼ିତ । ଫକୀରମୋହନ ସୀମାହୀନ ଗଗନରେ ଦୀପ୍ତିମନ୍ତ ଏକମାତ୍ର ତାରକାପରି ଓଡ଼ିଆ ଜାତିକୁ ଏ ଅନ୍ଧକାର ମଧ୍ୟରେ ଆଲୋକର ରେଖା ଦେଖାଇଥିଲେ । ଶେଷ ଜୀବନରେ ମଲ୍ଲିକାଶପୁରର ନିର୍ଜନ କୋଠରୀ କିମ୍ବା ଶାନ୍ତିକାନନରେ ବସି ଜୀବନ-ସଙ୍ଗୀତ ଗାନ କରୁଥିଲେ । ଏ ଜୀବନ-ସଙ୍ଗୀତ ଥିଲା ତାଙ୍କର ଜୀବନ-ସାଧନା—ସତ୍ୟ ସୁନ୍ଦରର ଐକାନ୍ତିକ ଆରାଧନା । ଜୀବନ-ଶିଳ୍ପୀ ଫକୀରମୋହନଙ୍କର ଜୀବନ-ସଙ୍ଗୀତ ତଥା ମହିମାମଣ୍ଡିତ ଓ ସୌଷ୍ଠବସମ୍ପନ୍ନ ସାହିତ୍ୟ-ଶିଳ୍ପର ସୂତ୍ରପାତ ହୁଏ ୧୮୬୬ ସାଲରେ । ସେତେବେଳେ ତାଙ୍କର ବୟସ ମୋଟେ ୨୩ ବର୍ଷ । ସେ ସାହିତ୍ୟିକ ସାଧନା ଆରମ୍ଭ ହୁଏ ଗୋଟିଏ ବଙ୍ଗଳା ପୁସ୍ତକର ଓଡ଼ିଆ ଅନୁବାଦରେ । ତାହା ହେଉଛି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର-ଙ୍କର ଜୀବନ-ଚରିତ । ବୋଧହୁଏ ଏହି ଜୀବନ-ଚରିତର ଅନୁବାଦରୁ ଫକୀରମୋହନଙ୍କଠାରେ ଉନ୍ମେଷିତ ହୁଏ ସମାଜ-ସଂସ୍କାର-ପ୍ରବଣତା, ମନୀଷୀସୁଲଭ ମନନଶୀଳତା ଓ ଲୋକଚରିତ୍ର ଅନୁଶୀଳନ କରିବାର ଗଭୀର ଅନ୍ତର୍ଦୃଷ୍ଟି ଏବଂ ଅଦମ୍ୟ ଜ୍ଞାନତୃଷ୍ଣା । ଏହା ହୋଇଥିଲେ ମଧ୍ୟ ଏଥିରେ ସଂକୋଚ କିମ୍ବା ଗ୍ଲାନିର ବିଷୟ କିଛି ନାହିଁ । ପ୍ରତିଭାର ସଂସ୍ପର୍ଶରେ ପ୍ରତିଭା ବିକାଶମୁଖୀ ହୁଏ, ଆଦର୍ଶର ଅନୁପ୍ରେରଣାରେ ଜୀବନର ସୁସ୍ଥିର ଆଦର୍ଶ ଆହୁରି ଊର୍ଦ୍ଧ୍ୱମୁଖୀ ହୋଇଉଠେ । ଏହି ବଙ୍ଗାନୁବାଦରୁ ଆରମ୍ଭ ହୋଇ ସ୍ରୋତସ୍ୱିନୀ ନଦୀ ପରି ଅବ୍ୟାହତ ଓ ଅପ୍ରତିହତ ଗତିରେ ଚାଲିଲା ତାଙ୍କର ସାହିତ୍ୟ-ସାଧନା । ଏ ସାଧନାର ପରବର୍ତ୍ତୀ ପର୍ଯ୍ୟାୟ ହେଲା—ରାମାୟଣ ଓ ମହାଭାରତର ଅନୁବାଦ । ତାଙ୍କର ପ୍ରଥମ ମୌଳିକ ରଚନା ହେଉଛି 'ପୁଷ୍ପମାଳା', ଏବଂ ତା ପରେ 'ଉପହାର'—କେତେକ କ୍ଷୁଦ୍ର କିମ୍ବା ଗୀତିକବିତାର ସମାହାର ।

୧୮୯୭ ମସୀହାରୁ ଆରମ୍ଭ ହୁଏ 'ଛ ମାଣ ଆଠ ଗୁଣ୍ଠ' ଉପନ୍ୟାସ । ଏହା ପ୍ରଥମେ ଧାରାବାହିକ ଭାବରେ ସ୍ୱର୍ଗତ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଉଥାଏ । ୧୮୯୮ ମସୀହାରେ ପ୍ରକାଶ ପାଏ ତାଙ୍କର କ୍ଷୁଦ୍ରଗଳ୍ପ 'ରେବତୀ' । ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଶୁଭାରମ୍ଭ ଏହି ଅନବଦ୍ୟସୁନ୍ଦର ଓ ଆବେଦନଶୀଳ 'ରେବତୀ' ଗଳ୍ପରୁ । ୧୯୦୨ ଠାରୁ ୧୯୧୭ ମସୀହା ଏହି ପନ୍ଦର ବର୍ଷ ଫକୀରମୋହନଙ୍କ ସାହିତ୍ୟିକ ସାଧନାର ଚରମ ଅଭିବ୍ୟକ୍ତିର ସମୟ । 'ଖିଳ ହରିବଂଶ'ର ପଦ୍ୟାନୁବାଦ, କବିତାସଂଗ୍ରହ 'ଅବସରବାସରେ' ର ପ୍ରକାଶ, ବୌଦ୍ଧାବତାର କାବ୍ୟର ପ୍ରଣୟନ, 'ପୂଜାଫୁଲ' କବିତା ପୁସ୍ତିକାର ମୁଦ୍ରଣ, 'ମାମୁଁ', 'ଲଛମା', 'ଛାନ୍ଦୋଗ୍ୟ ଉପନିଷଦ୍', 'ଗଳ୍ପସ୍ୱଳ୍ପ' ଓ 'ଆତ୍ମଚରିତ'—ଏ ସକଳ ଅମୂଲ୍ୟ ଓ ଉପାଦେୟ ଗ୍ରନ୍ଥ ଏହି ପନ୍ଦରବର୍ଷ ଭିତରେ ଜ୍ଞାନର ପରିପକ୍ୱତା, ଅନୁଭୂତିର ନିବିଡ଼ତା, ସହାନୁଭୂତିର ବିଶାଳ ବ୍ୟାପକତା ଏବଂ ପ୍ରତିଭାର ପରିପୂର୍ଣ୍ଣ ବିକାଶ ମଧ୍ୟରେ ରଚିତ ।

ଫକୀରମୋହନଙ୍କର ସମସ୍ତ ଜୀବନ 'ଏକ ଶିବରାତ୍ରି' । ମଝିରେ ମଝିରେ ତାଙ୍କର ଲେଖନୀ ନାନା କାରଣରୁ ଶିଥିଳ ହୋଇ ଯାଉଥିଲା । 'ଛ ମାଣ ଆଠ ଗୁଣ୍ଠ'ର ୧୫ ବର୍ଷ ପରେ ତାଙ୍କର ଦ୍ୱିତୀୟ ଉପନ୍ୟାସ 'ମାମୁଁ' । ଯେଉଁମାନେ 'ଉତ୍କଳ-ସାହିତ୍ୟ'ରେ ଧାରାବାହିକ ଭାବରେ 'ଛ ମାଣ ଆଠ ଗୁଣ୍ଠ' ଉପନ୍ୟାସର ବିଭିନ୍ନ ପରିଚ୍ଛେଦ ପଢ଼ି ରାମଚନ୍ଦ୍ର ମଙ୍ଗରାଜଙ୍କର ମକଦ୍ଦମା ବିଚାର ଦେଖିବାକୁ ମଫସଲରୁ କଟକ ସହରକୁ ଦଉଡ଼ି ଯାଉଥିଲେ, 'ଛ ମାଣ ଆଠ ଗୁଣ୍ଠ'କୁ ପୁସ୍ତକାକାରରେ ପ୍ରକାଶିତ ହେବାର ଦେଖି ଯେଉଁ ପାଠକପାଠିକାମାନଙ୍କର ପ୍ରାଣ ଆଶା ଓ ଆନନ୍ଦରେ ଉଦ୍‌ବେଳ

ହୋଇ ଉଠିଥିଲେ, ସେମାନେ ସମସ୍ତେ ଉତ୍କଣ୍ଠିତ ହୋଇ ଚାହିଁ ରହିଥିବେ, ଫକୀରମୋହନଙ୍କ ଲେଖନୀର ଦ୍ୱିତୀୟ ଉପନ୍ୟାସକୁ । କିନ୍ତୁ ସେ ଉତ୍କଣ୍ଠା ଦୂର ହୋଇ ପାରି ନଥିଲା । ଅବଶ୍ୟ ଏ ପନ୍ଦର ବର୍ଷ ମଧ୍ୟରେ ସେ ନୀରବ ନଥିଲେ । କିମ୍ବା ଦୁଃଖ ଜଞ୍ଜାଳ ମଧ୍ୟରେ ଅବସାଦ ଫକୀରମୋହନଙ୍କ ଜୀବନର ଧର୍ମ ନଥିଲା । ଏ ମଧ୍ୟରେ କିଛି କିଛି କାବ୍ୟ କବିତା ଲେଖା ଚାଲିଥାଏ । 'ଲଛମା' ମଧ୍ୟ 'ଅପୂର୍ବ ମିଳନ' ନାମରେ 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ ହେଉଥାଏ । କିନ୍ତୁ ନିଜର ଆର୍ଥିକ ଅସ୍ୱଚ୍ଛଳତା ଓ ଦେଶର ସାହିତ୍ୟାମୋଦୀ ବ୍ୟକ୍ତିମାନଙ୍କର ଉତ୍ସାହ ଏବଂ ଉଦ୍ଦୀପନାର ଅଭାବ ଯୋଗୁ ତାଙ୍କର ଲେଖା ସବୁ ପ୍ରକାଶ ପାଇ ପାରୁନଥିଲା । ତଥାପି ପଣ୍ଡିତ ନୀଳକଣ୍ଠ ଦାଶଙ୍କ ମତରେ, "ଓଡ଼ିଶାର ଗ୍ରାମ୍ୟଜୀବନ, ଐତିହାସିକ ଘଟନା, ବର୍ତ୍ତମାନ ଯୁଗର ବ୍ୟବହାର ଓ ପଦ୍ଧତି ସଙ୍ଗେ ଫକୀରମୋହନଙ୍କର ଯେପରି ଘନିଷ୍ଠ ପରିଚୟ, ଏବଂ ବିଷୟ ବର୍ଣ୍ଣନାରେ ତାଙ୍କର ଯେପରି ସହଜ ଶକ୍ତିମତ୍ତା, ସେଥିରେ ଏହି ପନ୍ଦର ବର୍ଷ ମଧ୍ୟରେ ଅନ୍ତତଃ ୧୫ ଖଣ୍ଡ ଉପନ୍ୟାସ ସେ ଓଡ଼ିଆ ସାହିତ୍ୟକୁ ଦେଇପାରିଥାନ୍ତେ ।" *

ସେ ଯାହା ହେଉ, ସାହିତ୍ୟ-ସୃଷ୍ଟି 'ଅଧିକ ଶସ୍ୟ ଉତ୍ପାଦନ' (**Grow More Food Compaign**) ଆନ୍ଦୋଳନର ସମଧର୍ମୀ ନୁହେଁ । କିଏ କେତେ ଖଣ୍ଡ ପୁସ୍ତକ ପୁସ୍ତିକା ଲେଖି ପ୍ରକାଶ କରିଛି, କିମ୍ବା ସମ୍ବାଦପତ୍ର ସ୍ତମ୍ଭରେ ଚଳନ୍ତି

---

* ଓଡ଼ିଆ ଭାଷା ଓ ସାହିତ୍ୟ—'ଫକୀରମୋହନ ଓ ଓଡ଼ିଆ ଉପନ୍ୟାସ' ।

ସମସ୍ୟା ଉପରେ କେତୋଟି ପ୍ରବନ୍ଧ ଲେଖିଅଛନ୍ତି, କିମ୍ବା କିଏ କେତେ ଶସ୍ତା ଧରଣର କ୍ଷୁଦ୍ର କବିତା ଓ ଗଳ୍ପ ଲେଖି-ଅଛନ୍ତି, ସେଥିରୁ ତାହାଙ୍କ ସାହିତ୍ୟର ମୂଲ୍ୟ କଳନା କରାଯାଏ ନାହିଁ । ଖଣ୍ଡିଏ ମାତ୍ର ବହି ଲେଖିଥିଲେ ସୁଦ୍ଧା ସେଥିରେ ଯଦି ମାନବ ଜୀବନର ଚିରନ୍ତନ ସତ୍ୟ ପ୍ରକଟିତ ହୋଇଥାଏ, ତାହା ପାଠକର ପାଠକପାଠିକାମାନଙ୍କର ମର୍ମସ୍ଥଳ ପର୍ଯ୍ୟନ୍ତ ଯଦି ସ୍ପନ୍ଦିତ ଓ ଆଲୋଡ଼ିତ ହୋଇଯାଏ, ତେବେ ସେହି ଗୋଟିଏ ମାତ୍ର ସାହିତ୍ୟ-କୀର୍ତ୍ତି ସେ ଲେଖକଙ୍କୁ ସାହିତ୍ୟର ଇତିହାସରେ ଚିରସ୍ମରଣୀୟ କରେ । ହୃଦୟ ଦେଇ ଅନ୍ୟର ହୃଦୟ ଅନୁଭବ ନକଲେ ଏବଂ ସୁଗଭୀର ଓ ସୁବିସ୍ତୃତ ସମବେଦନା ସହିତ ଜୀବନର ସାର୍ଥକ ରୂପକାର ହୋଇ ନ ପାରିଲେ, ଗଣି ଗଣି ପୁସ୍ତକପୁସ୍ତିକା ପ୍ରଣୟନ କରି ମଧ୍ୟ ସେ ସାହିତ୍ୟିକ ନୁହଁନ୍ତି । ତେଣୁ ଫକୀରମୋହନ ଏତେ ପୁସ୍ତକ ନ ଲେଖି ଯଦି କେବଳ 'ଛ ମାଣ ଅଠ ଗୁଣ୍ଠ' ଉପନ୍ୟାସଟି ରଚନା କରି ଲେଖନୀ-ଚାଳନାରୁ ନିବୃତ୍ତ ହୋଇଥାନ୍ତେ, ତେବେ ମଧ୍ୟ ସେ ଆଜି ଓଡ଼ିଆ ଜାତିର ନମସ୍ୟ ହୋଇ ରହିଥାନ୍ତେ । କିନ୍ତୁ ସଂଖ୍ୟା ଦୃଷ୍ଟିରୁ ଫକୀରମୋହନଙ୍କ ସୃଷ୍ଟି ସେତେ ବିପୁଳ ନ ହେଲେହେଁ ଆଶାଜନକ ଏବଂ ଅନ୍ତର୍ନିହିତ ଗୁଣ ଓ ଉତ୍କର୍ଷ ଦୃଷ୍ଟିରୁ ତାଙ୍କର ଗ୍ରନ୍ଥ ସବୁ ସୁନ୍ଦର, ଚିତ୍ତଶୁଦ୍ଧିବିଧାୟକ, ତେଣୁ କଲ୍ୟାଣବହ ।

ଫକୀରମୋହନଙ୍କ ସାହିତ୍ୟ-ସାଧନାର ସର୍ବୋତ୍କୃଷ୍ଟ ବିଭବଟି ହେଉଛି—ସେ ଖାଣ୍ଟି ଓଡ଼ିଆ ଭାଷାରେ ସର୍ବପ୍ରଥମେ ଗଳ୍ପ ଉପନ୍ୟାସ ଲେଖି ଓଡ଼ିଆ ଗଦ୍ୟ ସାହିତ୍ୟରେ ଗୋଟିଏ ନବଯୁଗ ସୃଷ୍ଟି କଲେ । ଗ୍ରାମ୍ୟ ଜୀବନର ଏପରି ବାସ୍ତବ ଓ ପ୍ରାଞ୍ଜଳ ଚିତ୍ର ତାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ନଥିଲା । କିନ୍ତୁ ଫକୀରମୋହନଙ୍କ

ସାଧନା ଏତକରେ ସୀମାବଦ୍ଧ ନଥିଲା । ରାଧାନାଥ ଆଧୁନିକ କାବ୍ୟ-ସାହିତ୍ୟର ସ୍ରଷ୍ଟା । ମଧୁସୂଦନ ଭକ୍ତ କବି । କିନ୍ତୁ ଫକୀରମୋହନ କେବଳ ଗଦ୍ୟ-ସାହିତ୍ୟ କିମ୍ବା କଥା-ସାହିତ୍ୟର ସ୍ରଷ୍ଟା ନଥିଲେ, ସେ ଥିଲେ ଏହାଠାରୁ ଅଧିକ ମହୀୟାନ୍—ସେ ଥିଲେ ଉତ୍କଳର ନବ-ଜୀବନର ପ୍ରବର୍ତ୍ତକ, ଏକ ନବ ଜାତୀୟ ଜାଗରଣର ସ୍ରଷ୍ଟା । ସାହିତ୍ୟ ମାଧ୍ୟମରେ ଦେଶକୁ ସକଳ ଦିଗରୁ ସଂଗଠିତ କରିବା ଥିଲା ତାଙ୍କ ଜୀବନର ଅନ୍ୟତମ ଲକ୍ଷ୍ୟ ।

ଫକୀରମୋହନଙ୍କ ସାହିତ୍ୟସାଧନାର ସାମଞ୍ଜସ୍ୟ ଦେଖିବାକୁ ମିଳେ ଇଂରେଜ ଔପନ୍ୟାସିକ ସ୍କଟ୍, ଡିକେନ୍‌ସ, ଏବଂ ଆଧୁନିକ ବଙ୍ଗ-ଉପନ୍ୟାସର ପ୍ରବର୍ତ୍ତକ ବଙ୍କିମଚନ୍ଦ୍ରଙ୍କଠାରେ । ବସ୍ତୁତଃ ଫକୀରମୋହନଙ୍କୁ କେହି କେହି ଡିକେନ୍‌ସଙ୍କ ସହିତ ତୁଳନା କରି ତାଙ୍କର ମହତ୍ତ୍ୱ ପ୍ରତିପାଦନ କରନ୍ତି, କିନ୍ତୁ ଫକୀରମୋହନଙ୍କର 'ସ୍ୱାବଲମ୍ବନଶୀଳତା, ମନଃସଂଯୋଗ ଓ ଅଧ୍ୟବସାୟ' କେବଳ ଦେଖିବାକୁ ମିଳେ ଔପନ୍ୟାସିକ ସ୍କଟଙ୍କଠାରେ ।

* ସ୍କଟଙ୍କ ସମ୍ବନ୍ଧରେ ଲେଖାଅଛି, 'ପରବର୍ତ୍ତୀ ଜୀବନରେ ଯେତେବେଳେ ସେ ଏଡିନ୍‌ବରା ନଗରର ସେସନ୍‌ସ ଅଦାଲତରେ କିରାଣୀ କାର୍ଯ୍ୟ କରୁଥିଲେ, ସେତେବେଳେ ପ୍ରାତଃଭୋଜନ ପୂର୍ବରୁ ସେ ତାଙ୍କର ସାହିତ୍ୟିକ କାର୍ଯ୍ୟ ଶେଷ କରୁଥିଲେ । ହାରାହାରି ହିସାବ କଲେ ସ୍କଟ୍ ପ୍ରତିବର୍ଷର ଅର୍ଦ୍ଧେକ ସମୟ ସାହିତ୍ୟ-ସେବାରେ ନିଯୁକ୍ତ କରୁଥିଲେ । ତାଙ୍କ ଜୀବନର ନୀତି ଏହା ଥିଲା ଯେ, ସେ ତାଙ୍କର ଜୀବିକାର୍ଜନ ନିମନ୍ତେ ସାହିତ୍ୟସେବା ଉପରେ

---

* ସ୍କଟ୍—( ୧୭୭୧-୧୮୩୨ ) ଇଂରେଜ ସାହିତ୍ୟର ରୋମାଣ୍ଟିକ୍ ଯୁଗର ଜଣେ ସୁପ୍ରସିଦ୍ଧ ଔପନ୍ୟାସିକ ।

ଗର୍ବର କରୁନଥିଲେ । ଏକଦା ସେ କହିଥିଲେ, "ସାହିତ୍ୟକୁ ମୁଁ ସୌଖୀନ ବାଡ଼ିପଡ଼ି କରିଥିଲି । ତାହା ମୋ ପକ୍ଷରେ ପ୍ରେଷ୍ଠା ଲୋକର ବାଡ଼ି ସ୍ୱରୂପ ନଥିଲା । ମୁଁ ଯେତେଦୂର ପାରୁଥିଲି, ସାହିତ୍ୟସେବା ଲବ୍ଧ ଧନକୁ ସାଂସାରିକ ବ୍ୟାପାରରେ ଖର୍ଚ୍ଚ କରୁନଥିଲି" । *

ସାହିତ୍ୟକୁ ଫକୀରମୋହନ "ସୌଖୀନ ବାଡ଼ିପଡ଼ି" ଅବଶ୍ୟ କରିନଥିଲେ । ଏ ସାହିତ୍ୟ-ସେବା ଥିଲା ତାଙ୍କ ଦେଶସେବାର ମାଧ୍ୟମ—ଦେଶର ଦୁର୍ଗତି ଦୂର କରିବାର ଉପାୟ । ତେବେ ପୁତ୍ରଙ୍କ ପରେ ସେ ଲେଖାଲେଖିକୁ ଜୀବିକାର୍ଜନର ଅବଲମ୍ବନ କରି ନଥିଲେ । ବହି ବିକିରୁ ସେ ଯାହା ପାଉଥିଲେ ତାହା ଏହି ବହି ପ୍ରକାଶରେ ହିଁ ବ୍ୟୟିତ ହେଉଥିଲା । ଅନେକେ ମଧ୍ୟ ତାଙ୍କଠାରୁ ବହି ନେଇ ଟଙ୍କା ଦେବେ ବୋଲି କହି ଦେଉନଥିଲେ ।

ପୁତ୍ରଙ୍କ ପରେ ଫକୀରମୋହନ ପ୍ରତିଦିନ ନିୟମିତ ଭାବରେ ୬।୭ ଘଣ୍ଟା ଲେଖୁଥିଲେ । ଅତି ସକାଳୁ ଭୋର ବେଳେ ଉଠୁଥିଲେ ଏବଂ ପ୍ରାୟ ୫ଟା ବେଳକୁ କମ୍ବା ତା ଆଗରୁ ଗୁଡ଼ା ଖାଉଥିଲେ, ଏବଂ ତା ପରେ ଲେଖୁଥିଲେ । ୨।୩ ଘଣ୍ଟା ଲେଖିସାରି ଖଣ୍ଡିଏ ଲମ୍ବା ଠେଙ୍ଗା ଧରି 'ଶାନ୍ତି କାନନ' ବଗିଚାକୁ ଯାଉଥିଲେ ଏବଂ ପ୍ରାୟ ୧୦ଟା ବେଳେ ଘରକୁ ଫେରି ଭୋଜନ କରୁଥିଲେ । †

---

* ସ୍ୱର୍ଗତ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ', ୧୩୧୫ ମସିହା ଫାଲ୍‌ଗୁନ ସଂଖ୍ୟାର 'ସ୍ୱାବଲମ୍ବନ' ପ୍ରବନ୍ଧରୁ ଉଦ୍ଧୃତ ।

† 'ଫକୀରମୋହନ ପରିକ୍ରମା'—ଫକୀରମୋହନଙ୍କ କଥା (ପୃ.୧୪) ।

ବଙ୍ଗଳାର ସୁପ୍ରସିଦ୍ଧ ଔପନ୍ୟାସିକ ଓ ବନ୍ଦେମାତରଂ ମନ୍ତ୍ରର ଋଷି ବଙ୍କିମଚନ୍ଦ୍ରଙ୍କ (୧୮୩୮-୧୮୯୪) ସହିତ ମଧ୍ୟ ଏକନିଷ୍ଠ ଓ ଐକାନ୍ତିକ ସାହିତ୍ୟ-ସାଧନା ଦିଗରୁ ଫକୀରମୋହନଙ୍କୁ ତୁଳନା କରାଯାଇପାରେ । ଏବେ କୌଣସି କୌଣସି ବଙ୍ଗୀୟ ସମାଲୋଚକ ଫକୀରମୋହନଙ୍କ 'ଛ ମାଣ ଆଠ ଗୁଣ୍ଠ' ଉପରେ ବଙ୍କିମଚନ୍ଦ୍ରଙ୍କର ପ୍ରଭାବ ପଡ଼ିଛି ବୋଲି ଧାରଣା କରୁଛନ୍ତି, କିନ୍ତୁ ଫକୀରମୋହନଙ୍କ ଚରିତ୍ର-ଚିତ୍ରଣ, ବାକ୍‌ଭଙ୍ଗୀ ଓ ହାସ୍ୟରସର ମଧୁର ପରିବେଷଣ, ଏବଂ ପାରିପାର୍ଶ୍ୱିକ ଅବସ୍ଥାର ପୁଙ୍ଖାନୁପୁଙ୍ଖ ବାସ୍ତବନିଷ୍ଠ ବର୍ଣ୍ଣନା ବଙ୍କିମଚନ୍ଦ୍ରଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଫକୀରମୋହନଙ୍କ 'ଛ ମାଣ ଆଠ ଗୁଣ୍ଠ' ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଲାବେଳକୁ ବଙ୍କିମଙ୍କର ମହାପ୍ରୟାଣ । ତେଣୁ ତାଙ୍କର 'ବିଷବୃକ୍ଷ' ପ୍ରଭୃତି ଉପନ୍ୟାସ ପାଠ କରିବାର ସୁବିଧା ଫକୀରମୋହନ ପାଇଥିବେ । କିନ୍ତୁ ବଙ୍କିମଙ୍କ ଲିଖନଶୈଳୀ, ଘଟନାବିନ୍ୟାସ ଓ ଚରିତ୍ରଚିତ୍ରଣ ସହିତ ଫକୀର-ମୋହନଙ୍କର ସାଦୃଶ୍ୟ ନାହିଁ—ବରଂ ବୈସାଦୃଶ୍ୟ ବେଶୀ । 'ଛ ମାଣ ଆଠ ଗୁଣ୍ଠ'ର 'ଚମ୍ପା' ବିଷବୃକ୍ଷର 'ହୀରା' ନୁହେଁ, ଏବଂ 'କୁନ୍ଦନନ୍ଦିନୀ' 'ସାଆନ୍ତାଣୀ' ନୁହେଁ । ବରଂ ଜଣେ ବଙ୍ଗୀୟ ମନୀଷୀ । ସ୍ୱର୍ଗତ ରାଜେନ୍ଦ୍ରଲାଲ ମିତ୍ର ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ସମ୍ବନ୍ଧରେ ଉଲ୍ଲେଖ କରିଅଛନ୍ତି, "ବଙ୍କିମବାବୁ ଇଂରାଜୀ ଉପନ୍ୟାସ ଲେଖକଙ୍କ ମଧ୍ୟରୁ ସ୍କଟ୍-ନାମା ଜଣେ ଶ୍ରେଷ୍ଠତମ ଲେଖକଙ୍କୁ ଆଦର୍ଶ ସ୍ୱୀକାର କରି ଉପର୍ଯ୍ୟୁପରି ତିନିଖଣ୍ଡି ଗ୍ରନ୍ଥ ପ୍ରସ୍ତୁତ କରିଅଛନ୍ତି ।" ବାଲଜାକ୍, ଧୁଶକିନ୍, ଦୁମା, ଏବଂ ଟଲ୍‌ଷ୍ଟୟ୍ ଏ ସମସ୍ତେ ସ୍କଟଙ୍କଠାରେ ଋଣୀ । ଏଥିରେ ବଙ୍କିମଚନ୍ଦ୍ରଙ୍କ ପକ୍ଷରେ କୌଣସି ଅଗୌରବର ବିଷୟ ନାହିଁ । * କିନ୍ତୁ ଫକୀରମୋହନଙ୍କ ସମ୍ବନ୍ଧରେ

* 'ଉପନ୍ୟାସେର କଥା'—ଦେବୀପଦ ଭଟ୍ଟାଚାର୍ଯ୍ୟ (ପୃ. ୧୬୭)

କେହି ଏପରି ମନ୍ତବ୍ୟ ପ୍ରକାଶ କରି ପାରିବ ନାହିଁ ଯେ, ତାଙ୍କର ଐତିହାସିକ ଉପନ୍ୟାସ 'ଲଛମା' ସକାଶେ ସେ ବଙ୍କିମଚନ୍ଦ୍ରଙ୍କର କାବ୍ୟଧର୍ମୀ ଉପନ୍ୟାସ 'ଦୁର୍ଗେଶନନ୍ଦିନୀ', 'କପାଳକୁଣ୍ଡଳୀ' କିମ୍ବା 'ମୃଣାଳିନୀ'ଠାରେ ଋଣୀ। ସ୍କଟଙ୍କ ଐତିହାସିକ ଉପନ୍ୟାସମାନଙ୍କ ପ୍ରଭାବର ପ୍ରଶ୍ନ ତ ଏଠାରେ ଅବାନ୍ତର । କାରଣ ଫକୀରମୋହନ ନିଜ ଅଧ୍ୟବସାୟ ଓ ପ୍ରଗାଢ଼ ଯତ୍ନରେ ଇଂରେଜୀ ଅଭିଧାନ ଦେଖି ଇଂରେଜୀ ଶବ୍ଦର ଅର୍ଥ ଓଡ଼ିଆରେ ଲେଖି **Lamb's Tales from Shakespeare** ପ୍ରଭୃତି କେତେଖଣ୍ଡି ଇଂରେଜୀ ବହି ପଢ଼ିଥିଲେ । ତେଣୁ ସ୍କଟଙ୍କ ଐତିହାସିକ ଉପନ୍ୟାସ ପଢ଼ିବାର ସୁବିଧା ତାଙ୍କର ନଥିଲା । ତେଣୁ ତାଙ୍କ ଉପନ୍ୟାସରେ ସ୍କଟ କାହିଁକି, ତାଙ୍କ ସହିତ ତୁଳନୀୟ ଡିକେନ୍‌ସଙ୍କର ପ୍ରଭାବର ଛାୟା ମଧ୍ୟ ଅସ୍ପଷ୍ଟ । *

ତଥାପି ବଙ୍ଗର ଉପନ୍ୟାସ ସ୍ରଷ୍ଟା ବଙ୍କିମଙ୍କ ସହିତ ଆଧୁନିକ ଓଡ଼ିଆ ଉପନ୍ୟାସର ସ୍ରଷ୍ଟା ଫକୀରମୋହନଙ୍କର ଯଥେଷ୍ଟ ମାନସିକ ସାମଞ୍ଜସ୍ୟ ଦେଖାଯାଏ ।

ବଙ୍କିମଚନ୍ଦ୍ରଙ୍କ ସମ୍ବନ୍ଧରେ ଜଣେ ବଙ୍ଗୀୟ ମନୀଷୀ, ପ୍ରତିଷ୍ଠିତ କବି ଓ ନିର୍ଭୀକ ସମାଲୋଚକ ଲେଖିଅଛନ୍ତି:—

(୧) ବଙ୍କିମଙ୍କୁ ସାହିତ୍ୟ-ସାଧନାର ପ୍ରେରଣା ଯୋଗାଇଥିଲା ପ୍ରତ୍ୟକ୍ଷଭାବରେ ସ୍ୱଜାତି, ସ୍ୱଦେଶ ଓ ସ୍ୱସମାଜ, ଏବଂ

---

* 'କବିସୂର୍ଯ୍ୟ ଗ୍ରନ୍ଥାବଳୀ'ର ସମ୍ପାଦିକା ପଣ୍ଡିତ କୁଳମଣି ଦାଶ ଅଭିବାଦନ ତଳେ ମତେ ସ୍ପଷ୍ଟଭାବରେ କହିଅଛନ୍ତି, 'ସେ ଫକୀରମୋହନଙ୍କୁ ଘନିଷ୍ଠଭାବରେ ଜାଣନ୍ତି ।' ଇଂରେଜରେ ତାଙ୍କର ଅଳ୍ପମାତ୍ର ଜ୍ଞାନ ଥିଲା ।

ପରୋକ୍ଷ ଭାବରେ ମନୁଷ୍ୟର ଅଦୃଷ୍ଟ ଓ ମନୁଷ୍ୟତ୍ୱର ଆଦର୍ଶ ସନ୍ଧାନ ।

(୨) ସେ ସରସ୍ୱତୀଙ୍କ ସେବାରେ ପ୍ରସନ୍ନ କରି ଶ୍ରେଷ୍ଠ ବର ଲାଭ କରିଥିଲେ, ଅଥଚ ନର, ନାରାୟଣ ଓ ନରୋତ୍ତମଙ୍କୁ କଦାପି ବିସ୍ମୃତ ହୋଇ ନାହାନ୍ତି ।

(୩) ବଙ୍କିମଚନ୍ଦ୍ର କେବଳ ମାତ୍ର ଚରିତ୍ରାଙ୍କର କିମ୍ବା ସତ୍ୟପରାୟଣ ସମାଜ-ସଂସ୍କାରକ ନଥିଲେ—ବଙ୍କିମଙ୍କ ଉପନ୍ୟାସଠାରୁ ବଙ୍କିମ ବଡ଼ । ସେ କେବଳ ସାହିତ୍ୟସ୍ରଷ୍ଟା ଶିଳ୍ପୀ ନୁହନ୍ତି— ନବ୍ୟ ବଙ୍ଗସାହିତ୍ୟର ପ୍ରତିଷ୍ଠାତା ।

(୪) ଦେଶାତ୍ମବୋଧ ଥିଲା ବଙ୍କିମ ପ୍ରତିଭାର ମୂଳ ଉତ୍ସ । ଏ ମନ୍ତ୍ରରେ ତାଙ୍କୁ କେହି ଦୀକ୍ଷିତ କରି ନାହାନ୍ତି, ଏହା ଶିକ୍ଷା-ଲବ୍ଧ ନୁହଁ—ସହଜାତ ମନୀଷା ପରି ଏହା ଯେପରି ତାଙ୍କର ପ୍ରାକ୍ତନ ସମ୍ପଦ । ଜାଗରଣରେ, ସ୍ୱପ୍ନରେ, ଧ୍ୟାନରେ ଓ ଜ୍ଞାନରେ ଏକ ମୁହୂର୍ତ୍ତି ସେ ଏଥିରୁ ମୁକ୍ତ ହୋଇ ପାରୁ-ନଥିଲେ ।

(୫) ସେ ପୂର୍ଣ୍ଣ ମନୁଷ୍ୟତ୍ୱର ଆଦର୍ଶ ସନ୍ଧାନରେ ବ୍ୟସ୍ତ ଥିଲେ, ତାହାଙ୍କର ଧ୍ୟାନ ଥିଲା ଧର୍ମ; ଏ ଧର୍ମର ଲକ୍ଷ୍ୟ ମନୁଷ୍ୟର ମନୁଷ୍ୟତ୍ୱ ସାଧନ । ତେଣୁ ବଙ୍କିମଙ୍କ ଉପନ୍ୟାସରେ ଆଦର୍ଶବାଦ ପ୍ରବଳ । ଯାହାକୁ ଆମ୍ଭେମାନେ ସାହିତ୍ୟର **realism** (ବାସ୍ତବବାଦ) କହୁ, ସେହି **realism**ର ପ୍ରେରଣାରେ ସେ ଅଳ୍ପ ଲେଖିଅଛନ୍ତି । ସର୍ବତ୍ର ସେ ଗୋଟିଏ ଉଚ୍ଚ ଭାବ ଓ ବୃହତ୍ ଆଦର୍ଶ ଫୁଟାଇବାକୁ ଚେଷ୍ଟା କରି

ଅଛନ୍ତି । ସାହିତ୍ୟକୁ ଶାନ୍ତି ଶିଳ୍ପକଳାର ଆଦର୍ଶରେ କଳ୍ପନା ନକରି ସେ ଯାହା ସୃଷ୍ଟି କରିଅଛନ୍ତି, ତାହା × × × କି ମହତ୍, କେତେ ସୁନ୍ଦର ଓ ମହିମମୟ !"

(୨) "ଜଗତ୍ର ଅନୁଭୂତି ଏବଂ ତାହାର ପ୍ରକାଶ ବେଦନା ଯଦି ସାହିତ୍ୟସୃଷ୍ଟିର କାରଣ ହୁଏ, ଏବଂ ସେ ପ୍ରକାଶଭଙ୍ଗୀ ଅନବଦ୍ୟ ହେଲେ ଯଦି ତାହା ସାହିତ୍ୟ ହୁଏ, ତେବେ ସେହି ସାହିତ୍ୟ ମଧ୍ୟରେ କବିର ଅନ୍ତରତମ ପ୍ରକୃତିର ପୂର୍ଣ୍ଣ ପରିଚୟ ମିଳେ ।" *

ବଙ୍କିମଙ୍କ ସାହିତ୍ୟସାଧନା ଓ ସୃଷ୍ଟି ସମ୍ବନ୍ଧରେ ପ୍ରାଜ୍ଞ ସମାଲୋଚକଙ୍କର ଏ ଚିନ୍ତାଗର୍ଭକ ମନ୍ତବ୍ୟ ଫକୀରମୋହନଙ୍କ ପ୍ରତି ସମ୍ପୂର୍ଣ୍ଣଭାବରେ ପ୍ରଯୋଜ୍ୟ, ଏବଂ ତାଙ୍କର ସାହିତ୍ୟାଦର୍ଶର ପୂର୍ଣ୍ଣ ପରିଚୟ ପାଇବା ନିମନ୍ତେ ଏହାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ହେବା ଆବଶ୍ୟକ । ଇଂରେଜୀରେ ଗୋଟିଏ କଥା ଅଛି, **"Great minds think alike."**

ଫକୀରମୋହନଙ୍କ ସାହିତ୍ୟସାଧନା ଯେପରି ବିସ୍ତୃତ ଓ ବ୍ୟାପକ, ସେହିପରି ଗଭୀର ଓ ସ୍ୱତଃସ୍ଫୂର୍ତ୍ତି ।

---

* 'ଅଧୁନିକ ବଙ୍ଗଳା ସାହିତ୍ୟ'—ଶ୍ରୀ ମୋହିତଲାଲ ମଜୁମଦାର, 'ବଙ୍କିମଚନ୍ଦ୍ର' ।

( ୨ )

# ଓଡ଼ିଆ ଉପନ୍ୟାସର ପୂର୍ବ ସୂଚନା

## ଉମେଶଚନ୍ଦ୍ର ଓ ରାମଶଙ୍କର

ଔପନ୍ୟାସିକ ଓ ନାଟ୍ୟକାର ରାମଶଙ୍କର ରାୟ 'ଓଡ଼ିଆ ଭାଷାର ଉନ୍ନତି' ସମ୍ବନ୍ଧରେ ଗୋଟିଏ ଅଭିଭାଷଣ ଦେବାକୁ ଯାଇ ଥରେ କହିଥିଲେ, "ଉପନ୍ୟାସ ଲେଖା ନହେଲେ ଭାଷାର ସୌଷ୍ଠବ ସାଧିତ ହୁଏ ନାହିଁ, ଏବଂ ସେହି ହେତୁ ଗୃହଅଡ଼େ ଉପନ୍ୟାସ ଲେଖି ଲେଖି ବୋଲି ରଡ଼ି ପଡ଼ୁଛି । ମାତ୍ର ଲେଖା ହୋଇ ବହୁ ବ୍ୟୟରେ ଛପା ହେଲେ କେତେ ଜଣ ଲୋକ 'ମୋର ମାତୃଭାଷା ଉପନ୍ୟାସ ଗ୍ରନ୍ଥ' ବୋଲି କିଣିବାକୁ ଅଗ୍ରହାନ୍ୱିତ ହୁଅନ୍ତି ? ମୁଁ 'ଉତ୍କଳ ମଧୁପ' ନାମକ ମାସିକ ପତ୍ର ବାହାର କଲାବେଳେ 'ସୌଦାମିନୀ' ନାମକ ଉପନ୍ୟାସ ଲେଖୁଥିଲି । ସେ ଉପନ୍ୟାସ ଶେଷ ହେବା ପୂର୍ବେ ଦେଶର ସ୍ୱାଭାବିକ ଗତରେ ଗ୍ରାହକମାନେ ମୂଲ୍ୟ ନ ଦେବାରୁ କାଗଜ ଖଣ୍ଡିକ ବନ୍ଦ ହୋଇଗଲା । ମୁଁ କ୍ଷୁବ୍ଧ ହୋଇ ରହିଲି । ସେହି ଉପନ୍ୟାସର ହସ୍ତଲିପି ମୁଁ ତତ୍କାଳୀନ ଶିକ୍ଷାବିଭାଗର ଡେପୋଟୀ ଇନ୍‌ସପେକ୍ଟର ଉମାଚରଣ ବାବୁଙ୍କୁ ଦେଖାଇଲି । ସେ ତାହା ପଢ଼ି ତହିଁର ବିସ୍ତର ପ୍ରଶଂସା କଲେ, ମାତ୍ର ଉପନ୍ୟାସ ବିଦ୍ୟାଳୟର ପାଠ୍ୟପୁସ୍ତକର ଅନୁପଯୁକ୍ତ ବୋଲି ମତ ଦେବାରୁ ମୁଁ ଶାନ୍ତ ହୋଇ ରହିଲି । ତତ୍ପରେ 'ଇନ୍ଦ୍ରଧନୁ' ନାମକ ମାସିକ ପତ୍ରିକା ବାହାରିବାରୁ ତହିଁର ସମ୍ପାଦକଙ୍କ ଅନୁରୋଧମତେ

ମୁଁ 'ଉନ୍ମାଦନୀ' ଉପନ୍ୟାସ ଲେଖୁଥିଲି । ସେ ପତ୍ରିକା ଅଳ୍ପକାଳ ପରେ ବନ୍ଦ ହୋଇଗଲା, ଏବଂ 'ଉନ୍ମାଦନୀ' ଲେଖା ସେହିଠାରେ ଶେଷ ହେଲା । ମୟୂରଭଞ୍ଜର 'ଉତ୍କଳପ୍ରଭା' ବାହାରିବାରୁ ମୁଁ 'ବିବାସିନୀ' ଲେଖିଲି । ସୌଭାଗ୍ୟକ୍ରମେ 'ବିବାସିନୀ' ଶେଷ ହେବା ପର୍ଯ୍ୟନ୍ତ କାଗଜଖଣ୍ଡିକ ବଞ୍ଚିଥିଲା । ମୁଁ ପୁରସ୍କାର ପାଇଲି, ଏବଂ ହିନ୍ଦୋଳ କଲ୍ଲାର ରାଜା ମହୋଦୟ ସ୍ୱତଃପ୍ରବୃତ୍ତ ହୋଇ ବ୍ୟୟଭାର ଗ୍ରହଣ କରିବାରୁ ମୁଁ ତାହା ଛାପାକଲି । × × × ଶିକ୍ଷା ବିଭାଗର ଦୃଷ୍ଟି ପଡ଼ିନଥିଲେ 'ବିବାସିନୀ'ର ନାମ ନଥାନ୍ତା ।" *

ଓଡ଼ିଆ ଉପନ୍ୟାସ-ସାହିତ୍ୟର କ୍ରମବିକାଶ ଦର୍ଶାଇବା ନିମନ୍ତେ ଏଠାରେ ଏହି ଦୀର୍ଘ ଉଦ୍ଧୃତିର ଅବତାରଣା ।

କେବଳ 'ବିବାସିନୀ' ନୁହେଁ, ଫକୀରମୋହନଙ୍କ ଅଭିନବ ସୃଷ୍ଟି 'ଛ ମାଣ ଆଠ ଗୁଣ୍ଠ' ପୂର୍ବରୁ ରାମଶଙ୍କର ଆଉ ଦୁଇଖଣ୍ଡି ଉପନ୍ୟାସ ପ୍ରଣୟନ କରିଥିଲେ—'ସୌଦାମିନୀ' ଓ 'ଉନ୍ମାଦନୀ' । ତାହା ନାନା ଅନିବାର୍ଯ୍ୟ କାରଣରୁ ଲୋକଲୋଚନର ଅଗୋଚରରେ ରହିଗଲା । ଖଣ୍ଡିଏ ପାଠ୍ୟପୁସ୍ତକ ରୂପେ ଗୃହୀତ ହେବ ନାହିଁ ଶୁଣି ସେ ତା ଆଉ ନଲେଖି ବନ୍ଦ କରିଦେଲେ । ଆଉ ଖଣ୍ଡିଏ 'ଇନ୍ଦ୍ରଧନୁ'ର ଅନ୍ତର୍ଦ୍ଧାନ ପରେ ଚିରକାଳ ନିମନ୍ତେ ଅନ୍ତର୍ହିତ ହୋଇ ଗଲା । 'ବିବାସିନୀ' ମଧ୍ୟ ଛପା ହୋଇ କାଠଦଣ୍ଡା ଅବସ୍ଥାରେ ଥିଲା, କିନ୍ତୁ ଦୈବାତ୍ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହେବାରୁ ତାହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ଶିକ୍ଷାବିଭାଗର କୃପାଦୃଷ୍ଟି ପଡ଼ିନଥିଲେ 'ବିବାସିନୀ' ସାହିତ୍ୟ-ରାଜ୍ୟରେ ବିସ୍ମୃତ ହୋଇ ରହିଥାନ୍ତା ।

---

* ଅଭିଭାଷଣ—ଅଧ୍ୟାପକ ବଂଶୀଧର ମହାନ୍ତି (ପୃ ୨୪) ।

'ବାସିନୀ' 'ଛ ମାଣ ଅଠ ଗୁଣ୍ଠ'ର ପୂର୍ବବର୍ତ୍ତୀ ଉପନ୍ୟାସ । ଅପ୍ରୃତନବେ ମଧ୍ୟ ନିତାନ୍ତ କ୍ଷୁଦ୍ର ନୁହେଁ—ଐତିହାସିକ ପୃଷ୍ଠପଟ ଉପରେ ରଚିତ । ଲୋକେ ସେତେବେଳେ ଉପନ୍ୟାସ ପଢ଼ିବାକୁ ଅଗ୍ରହୀ, ତେବେ ତାହା କାହିଁକି ଲୋକପ୍ରିୟ ହୋଇପାରି ନଥିଲା ? ପାଠ୍ୟପୁସ୍ତକ ହେବାର ଅଶା ନାହିଁ ବୋଲି ରାମଶଙ୍କର କାହିଁକି ବା 'ସୌଦାମିନୀ' ଲେଖାରୁ କ୍ଷାନ୍ତ ହେଲେ ! ତେବେ କଣ ଏ ଉପନ୍ୟାସ ରଚନା କରିବାରେ ତାଙ୍କର ହୃଦୟର ଯୋଗ ନଥିଲା— ଅନ୍ତରର ମୌଳିକ ସୃଷ୍ଟି ପ୍ରେରଣାର ଅଭାବ ଥିଲା ? ଅଥଚ 'ଛ ମାଣ ଅଠ ଗୁଣ୍ଠ' ଏପରି ଜୀବନ୍ତ ଓ ଅବେଦନଶୀଳ ହୋଇଥିଲା ଯେ ମଫସଲ ଲୋକେ 'ଉତ୍କଳ-ସାହିତ୍ୟ'ରୁ ତାହାର ପ୍ରକାଶିତ ଅଂଶମାନ ପଢ଼ି ବର୍ଣ୍ଣିତ ଘଟନାକୁ ସତ୍ୟ ବୋଲି ମନେ କରି ମଙ୍ଗରାଜଙ୍କ ମାମଲା ଦେଖିବାକୁ କଟକ କଚେରୀକୁ ଦଉଡ଼ି ଅସୁଥିଲେ । ଏହାରି ମଧ୍ୟରେ ଖୋଜିବାକୁ ହେବ ରାମଶଙ୍କର ଓ ଫକୀରମୋହନଙ୍କ ଔପନ୍ୟାସିକ ଶିଳ୍ପବୋଧ ଓ ପ୍ରକାଶନୈପୁଣ୍ୟର ପାର୍ଥକ୍ୟ । ସେହି ପାର୍ଥକ୍ୟରୁ ହିଁ ସୂଚିତ ହୁଏ, ରାମଶଙ୍କର ନୁହନ୍ତି, ଫକୀରମୋହନ ହିଁ ଓଡ଼ିଆ ଉପନ୍ୟାସ ତଥା କଥା-ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା, ଓଡ଼ିଆ ଗଦ୍ୟ-ସାହିତ୍ୟର ନୂତନ ଦିଗ୍‌ଦ୍ରଷ୍ଟା ଓ ନିୟାମକ ।

୧୮୮୮ ଖ୍ରୀଷ୍ଟାବ୍ଦରେ ଉମେଶଚନ୍ଦ୍ର ସରକାର 'ପଦ୍ମମାଳୀ' ରଚନା କରିଥିଲେ । ଓଡ଼ିଆ ଉପନ୍ୟାସ-ସାହିତ୍ୟର ଇତିହାସ ଓ କାଳନିର୍ଣ୍ଣୟ ଦୃଷ୍ଟିରୁ ସେ ଆମ ଉପନ୍ୟାସର ଜନ୍ମଦାତା ସତ୍ୟ । ତାର ତିନିବର୍ଷ ପରେ ୧୮୯୧ ରେ 'ବାସିନୀ' ରଚନା କରି ରାମଶଙ୍କର ଦ୍ୱିତୀୟ ଔପନ୍ୟାସିକର ପଦ ଗ୍ରହଣ କରିପାରନ୍ତି । କେହି କେହି ମଧ୍ୟ ରାମଶଙ୍କରଙ୍କୁ ପ୍ରଥମ ଔପନ୍ୟାସିକ ବୋଲି ମନେ

କରନ୍ତି, କାରଣ ତାଙ୍କର ଅସମ୍ପୂର୍ଣ୍ଣ 'ସୌଦାମିନୀ' ୧୮୭୮ ଠାରୁ ୧୮୮୦ ମସୀହା ମଧ୍ୟରେ ରଚିତ ହୋଇଥିଲା । 'ଛ ମାଣ ଆଠ ଗୁଣ୍ଠ' ଉପନ୍ୟାସ 'ଉତ୍କଳ-ସାହିତ୍ୟ'ରେ ପ୍ରକାଶ ପାଏ ୧୮୯୭ ଅକ୍ଟୋବର ମାସରୁ । ଏହା ୧୯୦୨ ମସୀହାରେ ପୁସ୍ତକାକାରରେ 'ଉତ୍କଳ-ସାହିତ୍ୟ' ପ୍ରେସ୍‌ରେ ମୁଦ୍ରିତ । ଏ ସମୟରେ ଆଉଜଣେ ଔପନ୍ୟାସିକ ଉପନ୍ୟାସ ରଚନାରେ ମନ ବଳାଇଥିଲେ । ସେ ହେଉଛନ୍ତି କୁଳବୃଦ୍ଧ ମନସ୍ୱୀ ମଧୁସୂଦନଙ୍କ କନିଷ୍ଠ ଭ୍ରାତା ଗୋପାଳ ବଲ୍ଲଭ ଦାସ । ଆଦିବାସୀ ଭୂୟାଁମାନଙ୍କର ଜୀବନଯାତ୍ରାକୁ କେନ୍ଦ୍ର କରି ସେ ଯେଉଁ 'ଭୀମାଭୂୟାଁ' ଉପନ୍ୟାସ ରଚନା କରିଥିଲେ ତାହା ଅପରୂପ ନହେଲେ ବି ଗୋଟିଏ ଅଭିନବ ସୃଷ୍ଟି । 'ପଦ୍ମମାଳୀ' ଓ 'ବିବାସିନୀ' ଉପନ୍ୟାସ ତୁଳନାରେ 'ଭୀମାଭୂୟାଁ'ର ସ୍ଥାନ ଯେ ଉଚ୍ଚରେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏଥିରେ ଲେଖକଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳେ । ଆଦିବାସୀମାନଙ୍କର ସରଳ, ଅନାଡ଼ମ୍ବର ଓ ଆଦିମ ଧର୍ମବିଶ୍ୱାସର ପ୍ରାଞ୍ଜଳ ଚିତ୍ର ଅଙ୍କିତ । ଆଶା ନୈରାଶ୍ୟର ସଂଘାତର ପ୍ରତିଚ୍ଛବି ବି ଅଛି । 'ଭୀମାଭୂୟାଁ' ରଚିତ ହୋଇଥିଲା ୧୮୯୮ରେ, ଅର୍ଥାତ୍ ଫକୀରମୋହନଙ୍କ 'ଛ ମାଣ ଆଠ ଗୁଣ୍ଠ' ଲେଖିବାର ଏକବର୍ଷ ପରେ । କିନ୍ତୁ ପ୍ରକାଶ ପାଇଲା ୧୯୦୮ ମସୀହାରେ । ଗୋପାଳବଲ୍ଲଭ ଥିଲେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧିଧାରୀ । ପାଶ୍ଚାତ୍ୟ ସାହିତ୍ୟରେ ତାଙ୍କର ହୁଏତ ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ସେ ପୁଣି ସେକାଳର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ—ଡେପୁଟି ମାଜିଷ୍ଟ୍ରେଟ୍, ଓ ପରେ କଲେକ୍ଟର ଇତ୍ୟାଦି । ସେ ବି ଜଣେ କବି ଥିଲେ—'କବିତା-ମଞ୍ଜରୀ'ର ରଚୟିତା । ଅବସ୍ଥା ସ୍ୱଚ୍ଛଳ ଥିଲା । ଅବସର ସମୟରେ ସାହିତ୍ୟ-ସେବାରେ ନିଜକୁ ନିୟୋଜିତ କରି 'ଭୀମାଭୂୟାଁ' ପରି ଆଉ

କେତେଖଣ୍ଡ ଉପନ୍ୟାସ ରଚନା କରିବାରେ ତାଙ୍କର କୌଣସି ଶାରୀରିକ ବାଧାବିଘ୍ନ କିମ୍ବା ଅସୁବିଧା ହୁଏତ ନଥିବ । କିନ୍ତୁ ସେ ସେହି ଖଣ୍ଡିକ ଉପନ୍ୟାସ ରଚନା କଲେ କାହିଁକି ? ସେହି ଖଣ୍ଡିକରେ ମଧ୍ୟ 'ଛ ମାଣ ଆଠ ଗୁଣ୍ଠ' ଲେଖକଙ୍କର ବଳିଷ୍ଠ ଜୀବନବୋଧ, ପର୍ଯ୍ୟବେକ୍ଷଣର ବିସ୍ତୃତି, ଅନୁଭୂତିର ଗଭୀରତା, ଲିଖନଭଙ୍ଗୀର ନବନବ ବୈଚିତ୍ର୍ୟ, ଘଟଣାର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଓ ପରିସ୍ଥିତିର ବାସ୍ତବ ଚିତ୍ରଣ ଦେଖାଯାଏ କି ?

'ଛ ମାଣ ଆଠ ଗୁଣ୍ଠ' ଯେ 'ଲଛମା' ଓ 'ମାମୁଁ' ଠାରୁ ସକଳ ଦିଗରେ ଏକ ଅମ୍ଳାନ, ଅଦ୍ୱିତୀୟ ଓ ସଫଳ ସୃଷ୍ଟି—ଏହା ସର୍ବବାଦୀସମ୍ମତ । 'ମାମୁଁ' ୧୯୦୮ରେ ପ୍ରକାଶ ପାଇ ମଧ୍ୟ ଫକୀରମୋହନଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରି ନାହିଁ । କେଉଁଝର-ପ୍ରଜାବିଦ୍ରୋହ ଦମନରେ ଫକୀରମୋହନ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ସୁଦ୍ଧା, ଏବଂ ଭୂୟାଁମାନଙ୍କର ଚାଲିଚଳଣି, ଆଗ୍ରହ ବ୍ୟବହାର, ଢଙ୍ଗଢାଙ୍ଗ, ମନ ଓ ପ୍ରକୃତି ସହିତ ତାଙ୍କର ପ୍ରଚୁର ବ୍ୟକ୍ତିଗତ ଅଭିଜ୍ଞତା ଥିଲେ ମଧ୍ୟ, ସେ ଏହି ଘଟଣାକୁ ଭିତ୍ତିକରି କୌଣସି ଗଳ୍ପ ବା ଉପନ୍ୟାସ ଲେଖି ନାହାନ୍ତି । 'ନଅଙ୍କ' ଦୁର୍ଭିକ୍ଷ ଯୋଗୁଁ ଅକାଳ ମୃତ୍ୟୁମୁଖରେ ପଡ଼ି ତାଙ୍କର ଆଗରେ ଶଗଡ଼ରେ ବୁହା ହୋଇ ଶହ ଶହ ମୂଲ୍ୟବାନ୍ ମନୁଷ୍ୟର ମୃତଦେହ ନଈ ବାଲିରେ ଆବର୍ଜନାର ବୋଝ ପରି ଫିଙ୍ଗା ଫୋପଡ଼ା ହେଉଥିଲେ ସୁଦ୍ଧା ସେ ସେହି ହୃଦୟବିଦାରକ ଓ ଐତିହାସିକ ଦୈବ-ଦୁର୍ବି-ପାକକୁ ଉପଜୀବ୍ୟ କରି ଉପନ୍ୟାସ ରଚନା କରିବାର ଅନୁପ୍ରେରଣା ଲାଭ କରି ନାହାନ୍ତି । ଫକୀରମୋହନଙ୍କର ଦୃଷ୍ଟି ଥିଲା ଗଭୀର ଓ ବ୍ୟାପକ—ଚିନ୍ତାର ପରିଧି ଥିଲା ସୁବିସ୍ତୃତ । କେଉଁଝର ପ୍ରଜା-ବିଦ୍ରୋହ ଓ ନଅଙ୍କ ଦୁର୍ଭିକ୍ଷ—ଏ ଯେ ଇତିହାସର କାଳ-ତରଙ୍ଗର

ଗୋଟିଏ ଗୋଟିଏ ବୁଦ୍‌ବୁଦ ମାତ୍ର । ନଅଙ୍କ ଅବଶ୍ୟ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । କିନ୍ତୁ ଆଶାବାଦୀ ଓ ଜାତୀୟ ଚେତନାରେ ଉଦ୍ଦୀପ୍ତ ଫକୀରମୋହନଙ୍କର ବିଶ୍ୱାସ ଥିଲା—ଏପରି ଜାତୀୟ ବିପତ୍ତି ଜାତିର ଦୁର୍ଭାଗ୍ୟକୁ ସବୁ ସମୟରେ ଆଣେ ନାହିଁ । ଏହା ଜାତିର ଭିତ୍ତିଭୂମି ସାମୟିକ ଭାବରେ ଦୋହଲାଇ ଦେଇ ଯାଏ ସତ୍ୟ—କିନ୍ତୁ ଏହା ଜନସାଧାରଣଙ୍କୁ ଭବିଷ୍ୟତ୍ ପାଇଁ ସତର୍କ କରିଦେଇ ଯାଏ । କେଉଁଝର-ପ୍ରଜାମେଳି ତ ଭୂୟାଁ-ମାନଙ୍କର ଗୋଟିଏ ଅନ୍ଧବିଶ୍ୱାସର ପରିଣାମ—ନେତା ଧରଣୀଧରର ସାମୟିକ ଉତ୍ତେଜନା ଓ ଭିତ୍ତିହୀନ ଉଚ୍ଚାକାଂକ୍ଷାର ଫଳ । ଏହା ଯେପରି ସହଜରେ ଆସିଥିଲା, ସେହିପରି ଫକୀରମୋହନଙ୍କ ବୁଦ୍ଧି ଓ କୂଟନୀତିରେ ମିଳାଇଗଲା । ଫକୀରମୋହନଙ୍କ ପରି ମନୁଷ୍ୟ ଜୀବନର ରୂପକାର ଓ ପାରିପାର୍ଶ୍ୱିକ ଜଗତର ନିପୁଣ ଚିତ୍ରକରଙ୍କ ସୃଜନ ବ୍ୟାପାରରେ ନଅଙ୍କ ଓ 'ଭୂୟାଁବିଦ୍ରୋହ'ରେ ଉପନ୍ୟାସର ଉପକରଣ କାହିଁ ? ଏହା ଇତିହାସର କ୍ଷଣସ୍ଥାୟୀ ବସ୍ତୁ—ତେଣୁ ଫକୀରମୋହନ 'ନଅଙ୍କ'ର ମର୍ମନ୍ତୁଦ ଓ ବୀଭତ୍ସ ସଂହାରଲୀଳା ଦେଖି ତାଙ୍କ ଆତ୍ମଚରିତରେ ଏହାର ଯେଉଁ ବିସ୍ତୃତ ଓ ସୂକ୍ଷ୍ମ ବର୍ଣ୍ଣନା କଳ୍ପନାରେ ଅନୁରଞ୍ଜିତ ନକରି ବର୍ଣ୍ଣନା କରିଅଛନ୍ତି, ତାହା ତାଙ୍କର ସତ୍ୟନିଷ୍ଠାର ଯେପରି ଚୂଡ଼ାନ୍ତ ନିଦର୍ଶନ, ଓ ତାଙ୍କର ଜାତୀୟ ଚେତନାର ଯେପରି ଜ୍ୱଳନ୍ତ ସ୍ୱାକ୍ଷର, ସେହିପରି କରୁଣରସରେ ମହିମାନ୍ୱିତ । 'ପ୍ରଜାମେଳି'ରେ ତାଙ୍କର ବୀରତ୍ୱ, ପୌରୁଷ ଓ କୂଟନୀତିକୁଶଳତା ସେହିପରି ଅଭିବ୍ୟକ୍ତ । ଫକୀରମୋହନ ଏହି ଦୁଇଟି ଘଟଣାରେ ଯେଉଁ ଅନୁଭୂତି ଓ ଅଭିଜ୍ଞତା ଅର୍ଜନ କରିଥିଲେ, ସେଥିରେ ତାଙ୍କ ଆତ୍ମଚରିତର ଦୁଇଟି ଅଧ୍ୟାୟ ଐତିହାସିକ ସାମଗ୍ରୀରେ ଜୀବନ୍ତ । ଏହାକୁ ଭିତ୍ତି କରି କଳ୍ପନାନୁଲିପ୍ତ ଉପନ୍ୟାସ

ଲେଖିଥିଲେ, ଏହାର ଐତିହାସିକ ମହତ୍ତ୍ୱ ହୁଏତ କ୍ଷୁଣ୍ଣ ହୋଇଥାନ୍ତା । ଫକୀରମୋହନଙ୍କର ସୃଜନୀଶକ୍ତି ଓ ଲୋକଚରିତ୍ରର ସୂକ୍ଷ୍ମ ଅନୁଧାବନ ଅପେକ୍ଷା କରୁଥିଲା—ଓଡ଼ିଆ ଜାତିର ମର୍ମ ଭିତରେ ପ୍ରବେଶ କରି ଏ ଜାତିର ଭାଷାଗତ, ବ୍ୟକ୍ତିଗତ, ପାରିବାରିକ, ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଅବସ୍ଥାର ଅବକ୍ଷୟ ଓ ଅଧୋଗତିର ଚିତ୍ର ଅଙ୍କନ କରି ସକଳ ଦିଗରୁ ଏ ଜାତିର ଉନ୍ନୟନ ସାଧନ କରିବାକୁ । ଯୁଗରୁଚି, ଯୁଗଚରିତ୍ର ଓ ଯୁଗସମସ୍ୟା ତାଙ୍କର ସଂବେଦନଶୀଳ ପ୍ରାଣରେ ଯେଉଁ ପରିସ୍ପନ୍ଦ ଓ ଆଲୋଡ଼ନ ସୃଷ୍ଟି କରିଥିଲା, ସେ ସେହି ରୁଚିପ୍ରବଣତାର ବଶବର୍ତ୍ତୀ ହୋଇ ଜାତିର ଚିତ୍ତଶୁଦ୍ଧି ନିମନ୍ତେ ଯେପରି ନିରଳସ ସାଧନାରେ ନିଜକୁ ନିୟୋଜିତ କରିଥିଲେ, ସେହିପରି ଅକୃତ୍ରିମ, ଅନାଡ଼ମ୍ବର, ସାବଲୀଳ ଓ ଦୈନନ୍ଦିନ ଜୀବନଯାତ୍ରାର ଭାଷାରେ ଯୁଗ-ଚରିତ୍ରର ବହିର୍ମୁଖୀ ସମସ୍ୟା ରୂପାୟିତ କରିଥିଲେ । ଏହି ଅନବଦ୍ୟ ରୂପାୟନ ସଙ୍ଗେ ଅପୂର୍ବ ବାକ୍‌ଭଙ୍ଗୀ ଓ ପ୍ରକାଶ-ପଦ୍ଧତିରେ ଗଢ଼ି ଉଠିଲା ଓଡ଼ିଆ ଗଦ୍ୟ-ସାହିତ୍ୟ । 'ଛ ମାଣ ଆଠ ଗୁଣ୍ଠ'ର ଶବ୍ଦବିନ୍ୟାସ-ଭଙ୍ଗୀ, ବର୍ଣ୍ଣନାର ମନୋହାରୀ ଢଙ୍ଗ, ମନୋଜ୍ଞ ଚରିତ୍ରସୃଷ୍ଟି, ଜୀବନ୍ତ ସଂଳାପ, ନାଟକୀୟ ଛଟା ଏବଂ ପଲ୍ଲୀଜୀବନର ପାରଲୌକିକ ଅଣୁ ପରମାଣୁ ବର୍ଣ୍ଣନା ତାଙ୍କୁ ତାଙ୍କର ସମସାମୟିକ ରାମଶଙ୍କର, ଗୋପାଳବଲ୍ଲଭ, ରାଧାନାଥ, ମଧୁସୂଦନ ଓ ନନ୍ଦକିଶୋରଙ୍କ ଠାରୁ ପୃଥକ୍ ରୂପେ ଚିହ୍ନିତ କରି ରଖିଛି ।

କଲ୍ପିତବେଣୁ କଥାଠାରୁ ଆରମ୍ଭ କରି ମାଦଳାପାଞ୍ଜି, ସୋମନାଥ ବ୍ରତକଥା, ବ୍ରଜନାଥଙ୍କ ଚତୁର ବିନୋଦ, ଶିବଦାସଙ୍କ 'ବତିଶ ସିଂହାସନ'ରେ ଯେଉଁ ଗଦ୍ୟଶୈଳୀର ପରମ୍ପରା ଲକ୍ଷିତ ହୁଏ, ଫକୀରମୋହନଙ୍କ 'ଛ ମାଣ ଆଠ ଗୁଣ୍ଠ'ର ଗଦ୍ୟଶୈଳୀରେ

ସେ ପରମ୍ପରାର ସମ୍ପୂର୍ଣ୍ଣ ବିବର୍ତ୍ତନ ଦେଖିବାକୁ ମିଳେ । କେବଳ ଭାଷା-ବିନ୍ୟାସ କିମ୍ବା ରଚନା-ଶିଳ୍ପ ନୁହେଁ, ମନୁଷ୍ୟ-ଜୀବନର ରୂପାୟନରେ ମଧ୍ୟ ସେ ପରମ୍ପରାର ସୂତ୍ର ଲୁକ୍କାୟିତ ହୋଇଛି । 'କଳ୍ପଗ୍ଣ-ବେଣ୍ଟ କଥା'ର ଯେଉଁ ହୁଣ୍ଡା, ଦୁଷ୍ଟ ଓ ପେଟୁ ରାଣ୍ଡୀପୁଅ ଅନନ୍ତା ଖାଲି ଖାଇପିଇ ଘରେ ଶୋଉଛି ବୋଲି ମା ଗାଳିଦେବାରୁ ଗୋବର ଭିତରେ ପାଇତା ହୋଇ ରଖାଯାଇଥିବା କଳବ ମଞ୍ଜି ଅଣି, କ୍ଷଣକରେ ସେ ମଞ୍ଜିଟି ପୋତି ତାକୁ ଭୟ ଦେଖାଇ କହୁଥିଲା, 'ଯେବେ କାଲିକି ଗଛ ନ ହୋଇଥିବୁ, ତେବେ ମାମୁଘର କଟୁରୀ ଅଣି ସାତଖଣ୍ଡ କରି କାଟିଦେବି'—ସେହି ହୁଣ୍ଡା ଅନନ୍ତାର ବିବର୍ତ୍ତିତ ରୂପ ଦେଖୁ ଆମ୍ଭେମାନେ ଫକୀରମୋହନଙ୍କ 'ରାଣ୍ଡୀପୁଅ ଅନନ୍ତା' ଗଳ୍ପରେ,—ଯେଉଁଠାରେ କଳ୍ପଗ୍ଣବେଣ୍ଟ ନାହିଁ କି ମାମୁ-ଘର କଟୁରୀ ନାହିଁ, କୁଅର ଅଣ୍ଟ ନାହିଁ କି କମାରଶାଳର ନିଆଁ ନାହିଁ—ଅନନ୍ତା ସେହିପରି ରାଣ୍ଡୀପୁଅ ଅଛି—କିନ୍ତୁ ତା ଜୀବନରେ କୌଣସି ଅଲୌକିକ କି ଅସମ୍ଭାବ୍ୟ ଘଟଣାର ଆରୋପ ନାହିଁ । ସେ ହୁଣ୍ଡା ଓ ମୂର୍ଖ ସତ, କିନ୍ତୁ ପରୋପକାର କରିବାର ସହଜାତ ପ୍ରବୃତ୍ତି ତାଠାରେ ପ୍ରଚ୍ଛନ୍ନ—ଗାଁକୁ ନଈବଢ଼ି ମାଡ଼ି ଆସିଲାବେଳେ ସେ ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ଅକୁଣ୍ଠିତ ।

ସମସାମୟିକ ଉପନ୍ୟାସଲେଖକମାନଙ୍କ ମଧ୍ୟରେ ଫକୀର-ମୋହନଙ୍କ ସ୍ଥିତି ଓ ଗତି କେଉଁଠାରେ, ସେ ଯେ ଉପନ୍ୟାସ କ୍ଷେତ୍ରରେ, ବିଶେଷତଃ 'ଛ ମାଣ ଅଠ ଗୁଣ୍ଠ' ରଚନାରେ, କାହାର ପ୍ରଭାବପ୍ରଣୋଦିତ ନୁହନ୍ତି, ଏ ସୃଷ୍ଟି ରାଜ୍ୟରେ ସେ ଯେ ନିଃସଙ୍ଗ, ଏକାକୀ, ଅନନ୍ୟନିର୍ଭର ଏବଂ ଓଡ଼ିଆ ସାହିତ୍ୟରେ ଏପରି ସୃଷ୍ଟି ଯେ ଆକସ୍ମିକ ଓ କେବଳ ପ୍ରତିଭାସାପେକ୍ଷ, ଏହାର ପରିଚୟ

ଦେବା ନିମନ୍ତେ 'ବିବାସିନୀ' ଓ 'ଗ୍ରାମାଭୂମ୍ୱୀ' ଉପନ୍ୟାସରୁ କେତେକ ଅପାତସାଦୃଶ୍ୟବ୍ୟଞ୍ଜକ ଅନୁଚ୍ଛେଦ ଉଦ୍ଧାର କରାଯାଇପାରେ ।

ଷଣ୍ ରାଜାଙ୍କ ଦୁର୍ଗ ବର୍ଣ୍ଣନା ପ୍ରସଙ୍ଗରେ ରାମଶଙ୍କର 'ବିବାସିନୀ'ରେ ଲେଖିଅଛନ୍ତି, "ଗଡ଼କୁ ଯିବା ନିମିତ୍ତ ଗୋଟିଏ ମାତ୍ର ଦ୍ୱାର ଏବଂ ତାହା ଦୁର୍ଦ୍ଧର୍ଷ ବଳଶାଳୀ ପ୍ରହରୀମାନଙ୍କ ଦ୍ୱାରା ସତତ ସଂରକ୍ଷିତ । ସେହି ଦ୍ୱାରଦେଶରେ ବିଶାଳ ଘଣ୍ଟା ବନ୍ଧା ହୋଇ ନାନାପ୍ରକାର ସମୟ ସାରଦ୍ୱୀପ ଗର୍ଜ୍ଜରେ ଘୋଷିତ କରୁଥିଲା । ଦୁର୍ଗ ମଧ୍ୟରେ ଷଣ୍ଙ୍କର ପ୍ରାସାଦ ଅତୁଳନୀୟ ଶ୍ରୀ ଧାରଣ କରି ବିରାଜିତ ଥିଲା । ସେ ପ୍ରାସାଦ ଦେଖିଲେ ପୌରାଣିକ ପ୍ରାସାଦମାନ ମନେ ପଡ଼ଇ । ବାସ୍ତବରେ ଯେ ଏଡ଼େ ବିଶାଳ ଅମ୍ବୁଧର ଭୂମି-ଖଣ୍ଡର ଅଧୀଶ୍ୱର, ଏବଂ ଯାହାଙ୍କୁ ପାରାବାର ପୟଃପ୍ରଣାଳୀ ପ୍ରେରଣ-ପୂର୍ବକ ଜଳରାଜି ପ୍ରଦାନ କରୁଅଛି, ତାହାଙ୍କର ପ୍ରାସାଦ ଯେ ବରୁଣ ଦେବଙ୍କ ପ୍ରାସାଦପରି ହେବ, ଏଥିରେ କି ସନ୍ଦେହ ଅଛି ? ସେ ପ୍ରାସାଦରେ ପରିବାର ଘେନି ଷଣ୍ଡରାଜା ବାସ କରନ୍ତି । ସେ ପରିବାର ଗୋଟିଏ ରମଣୀରେ ଉଜ୍ଜ୍ୱଳ ହୋଇ ନାହିଁ । ଯେମନ୍ତ ବିଶାଳ ରାଜ୍ୟ, ତେମନ୍ତ ବିଶାଳ ପରିବାର । ତହିଁରେ ଷଣ୍ଡରାଜଭୋଗ୍ୟା ଶତଶତ ରମଣୀ ବାସ କରି ଅପୂର୍ବ ଲୀଳା ଭିଆଉଅଛନ୍ତି ।"

ଫକୀରମୋହନ 'ଲଛମା' ଉପନ୍ୟାସରେ ରାଇବଣିଆ ଦୁର୍ଗେ-ଶ୍ୱର ଶ୍ରୀ ଶ୍ରୀ ଶ୍ରୀ ମାନଧାତାଙ୍କ ଦୁର୍ଗର ବର୍ଣ୍ଣନା ଦେଇ ଲେଖିଅଛନ୍ତି, "ଦୁର୍ଗପ୍ରାଚୀର ଦେହରେ ଅନେକ ସ୍ଥାନରେ ଧାଡ଼ି ଅଛି । ପାଳିଆ ପାଇକମାନେ ଦିବାରାତ୍ର ପହରା ଦେଇଥାନ୍ତି । ସେମାନଙ୍କ ଦୃଷ୍ଟି ଭିତରକୁ ପଡ଼େ ନାହିଁ । ସିଂହଦ୍ୱାରକୁ ଲାଗି ଭିତରକୁ ଉଆସଟି

ଭଳପ୍ରସ୍ତ । ସିଂହଦ୍ୱାର ପ୍ରାଚୀରକୁ ଲାଗି ଦୁଇଗୋଟା ବଡ଼ ବଡ଼ ଘର । ଏହି ଦୁଇ ଘର ନାନା ରୂପ ଅସ୍ତ୍ରରେ ପରିପୂର୍ଣ୍ଣ । ଏହାହିଁ ଦୁର୍ଗର ଅସ୍ତ୍ରାଗାର । ସେହି ଘର ଉତ୍ତରରେ ଅଗଣା—ଅଗଣା ଚାରିପାଖରେ ଘର । ଦକ୍ଷିଣ ପାଖ ବଡ଼ ମେଲା ଘରେ ମାନଧାତାଙ୍କର ବାହାର ବିଜେ ଦରବାର । ଦ୍ୱିତୀୟ ପ୍ରସ୍ତକୁ ଯିବା ଦ୍ୱାରରେ ପାଇକ ପହରା । ଦ୍ୱିତୀୟ ପ୍ରସ୍ତ ମଝି ଅଗଣା ଚତୁର୍ଦ୍ଦିଗରେ ଘର—ଅଧିକାଂଶ ସରଘର । ସ୍ୱାମୀ ପାଞ୍ଜିଆ, ଉଆସ ପାଞ୍ଜିଆମାନଙ୍କ କଚେରୀ ଘର ଏବଂ ପ୍ରଶସ୍ତ ଘରଟି ମାନଧାତାଙ୍କର ନିରୋଳା ଦରବାର ଘର । ଏହିଠାରେ ଶ୍ରୀସ୍ୱାମୀ ସର୍ବଦା ବିଜେ ଥାନ୍ତି । ବିଶେଷ ବିଶେଷ ଦିନ, ବିଶେଷ ବିଶେଷ ଘଟଣାରେ ଶ୍ରୀସ୍ୱାମୀ ବାହାର ଦରବାରକୁ ବିଜେ କରନ୍ତି । ତୃତୀୟ ପ୍ରସ୍ତ ରାଣୀହଂସପୁର । ଏହି ପ୍ରସ୍ତକୁ ଯିବାକୁ ଦୁଇ ଗୋଟା ଦ୍ୱାର । ପ୍ରଥମ ଦ୍ୱାରରେ ବୁଢ଼ା ପଡ଼ିଆରୀ, ଦ୍ୱିତୀୟ ଦ୍ୱାରରେ ଯୋଇଲା ପହରା । ରାଣୀହଂସପୁର ମଧ୍ୟରେ ଅନେକ ଘର । ସେଥି ମଧ୍ୟରୁ ଅଗଦଲଣିଆ ବଡ଼ବଡ଼ ତିନିଗୋଟା ଘରେ ଶ୍ରୀସ୍ୱାମୀଙ୍କ ପହଡ଼, ଠା ବିଜେ, ଭିତର ବିଜେ ସମସ୍ତ କାର୍ଯ୍ୟ ଚଳେ ।”

ରାମଶଙ୍କରଙ୍କ ‘ଖଣ୍ଡ-ଦୁର୍ଗ’ର ବର୍ଣ୍ଣନାରେ କୌଣସି ବୈଶିଷ୍ଟ୍ୟ ନାହିଁ—ଏହା ଗତାନୁଗତିକ ପ୍ରାଚୀନ ସଂସ୍କୃତ କବି ଓ ମଧ୍ୟଯୁଗୀୟ ଓଡ଼ିଆ ରୀତି-ଯୁଗର କବିମାନଙ୍କ ନଗର ଓ ପ୍ରାସାଦ ବର୍ଣ୍ଣନାର ଅନୁରୂପ । ଏଥିରେ ଅଛି କଳ୍ପନାର ଅତିଶଯ୍ୟ—ବାଗାଡ଼ମ୍ବରର ଚମକ ଓ ପ୍ରହେଳିକା । ଏଥିରେ ବାସ୍ତବ ନିଷ୍ଠା ନାହିଁ କି ବିଶେଷ କିଛି ଐତିହାସିକ ସତ୍ୟ ନାହିଁ । ଭାଷା ତତ୍ସମ ଶବ୍ଦବାହୁଲ୍ୟ ଯୋଗୁଁ ଗମ୍ଭୀରତାର ପରିଚୟ ଦେଲେ ସୁଦ୍ଧା ଏହାର ଅସ୍ଫାଳନ ବୃଥା—ଏହା ପାଠକର ପ୍ରାଣକୁ ସ୍ପର୍ଶ କରେ ନାହିଁ—ପାଠକର ମାନସ-

ପଟ୍ଟରେ କୌଣସି ସ୍ପଷ୍ଟ ରୂପରେଖା ଅଙ୍କିତ କରେ ନାହିଁ । ଏ ଦୁର୍ଗ କାଳିଦାସଙ୍କ ବର୍ଣ୍ଣିତ ଦଲୀପଙ୍କର ହୋଇପାରେ କିମ୍ବା ଉପେନ୍ଦ୍ର ଭଞ୍ଜଙ୍କ ବର୍ଣ୍ଣିତ ସିଂହଳ ରାଜାଙ୍କର ହୋଇପାରେ । କିନ୍ତୁ ଫକୀର-ମୋହନଙ୍କ ବର୍ଣ୍ଣନା ଏପରି ଗତାନୁଗତିକ କିମ୍ବା ନିର୍ବିଶେଷ ନୁହଁ । ଏହା ତାଙ୍କର ଅଭିଜ୍ଞତାର ପ୍ରତିଫଳନ । ଗଡ଼ଜାତ ରାଜାମହାରାଜା-ମାନଙ୍କର ଦୁର୍ଗ ଓ ଉଆସ ଦେଖି ତାଙ୍କ ମନରେ ଯେଉଁ ବାସ୍ତବ ଧାରଣା ଜାତ ହୋଇଅଛି, କିମ୍ବା ଇତିହାସରୁ ବାରବାଟୀ ପ୍ରଭୃତି ଦୁର୍ଗମାନଙ୍କର ଧ୍ୱଂସାବଶେଷ ଦେଖି ତାଙ୍କର ଅନୁସନ୍ଧିତ୍ସୁ ମନ ଯାହା କଳ୍ପନାରେ ଅହରଣ କରି ପାରିଛି, ସେ ତାହାକୁ ଜଣେ ପରିଦର୍ଶକ ରୂପେ ବର୍ଣ୍ଣନା କରିଅଛନ୍ତି । ତେଣୁ ରାଇବଣିଆ ଦୁର୍ଗ ବର୍ଣ୍ଣନାରେ ଅତିରଞ୍ଜନ ଥିଲେ ମଧ୍ୟ ଏହା ସମ୍ଭାବ୍ୟତାର ସୀମାରେ ଆବଦ୍ଧ । ଏ ବର୍ଣ୍ଣନା ପୁଣି କେଡ଼େ ପ୍ରାଞ୍ଜଳ—କେଡ଼େ ପୁଙ୍ଖାନୁପୁଙ୍ଖ ! ସତେ ଯେପରି ଜଣେ ନିପୁଣ ଚିତ୍ରଶିଳ୍ପୀ ତୂଳିକା ଧରି ଆମ ଆଗି ଆଗରେ ଦୁର୍ଗର ବାହାର ଓ ଭିତର ସବୁ ସ୍ପଷ୍ଟରୂପେ ଅଙ୍କନ କରି ଯାଉଅଛନ୍ତି । ଏହାର ପ୍ରତ୍ୟେକଟି ରେଖା ଯେପରି ସୁସ୍ପଷ୍ଟ ଓ ଜୀବନ୍ତ !

ସେହିପରି ଗୋପାଳବଲ୍ଲଭଙ୍କ ରାଜି ବର୍ଣ୍ଣନା ସହିତ ଫକୀର-ମୋହନଙ୍କ ନିଶୀଥ ବର୍ଣ୍ଣନା ତୁଳନା କରାଯାଉ—'ଛମାଣ ଆଠଗୁଣ୍ଠ'ର ସପ୍ତମ ପରିଚ୍ଛେଦରେ ଅଛି, "ରାତିକାଳ ବୋଲି ବୋଲି ଯାଇଥାଏ । ଏଥିରୁ ଯାହା ପ୍ରକାଶ ପାଉ ଏ ସମୟରେ ମାନବଡ଼ ସମସ୍ତେ ଘରେ ବାହାରେ ଅଶ୍ରୟାବଲମ୍ବୀ, ନାନାଦିଗରୁ ଆଗତ ପକ୍ଷିକୁଳ ଏକବୃକ୍ଷ-ସମବେତ, ପରସ୍ପର ସାହାଯ୍ୟ ପାଇଁ ଏକତ୍ରିତ; ଗୋରୁ, ଅଶ୍ୱ, ଛେଳି, ମେଣ୍ଢା ଗୋଠବଦ୍ଧ । ପର୍ଣ୍ଣକୁଟୀରଠାରୁ ସୌଧମାଳା ପର୍ଯ୍ୟନ୍ତ

ଲୁଇଦ୍ୱାର, ପୁଣି କୋକିଳର କୂଜନ ନାହିଁ କି ଭ୍ରମରର ଗୁଞ୍ଜନ ନାହିଁ; ଧରଣୀ ନୀରବ ନିସ୍ତବ୍ଧ । ନିଶାଚରଙ୍କ ବିଭୀଷିକାରେ ଚତୁର୍ଦ୍ଦିଗ ପରିପୂର୍ଣ୍ଣ । ଏହି କାଳରେ ଭୂତପ୍ରେତ ଡାକିନୀଯୋଗିନୀ-ମାନଙ୍କର ଲୀଳାଖେଳା ବୋଲି ଜଣାଶୁଣା । ବ୍ୟାଘ୍ର ଭଲ୍ଲୁକ ପ୍ରଭୃତିଙ୍କ ବିକଟ ନାଦରେ ଗାତ୍ରକମ୍ପ ଉପସ୍ଥିତ..... ଚୋରମାନଙ୍କ ବାଟପାରି ପାଇଁ ଏ ପ୍ରଶସ୍ତ କାଳ, ଅସହାୟା କୁମାରୀର ସତୀତ୍ୱରତ୍ନ ଅପହୃତ, ଧନୀ ସର୍ବସ୍ୱାନ୍ତ, ଏପରି ବିଭୀଷିକାପୂର୍ଣ୍ଣ ହେଲେହେଁ ରାତିରେ ସମସ୍ତେ ନିଦ୍ରିତ ।"

ଯେଉଁ ରାତରେ ସଂହାର-ରୂପିଣୀ ଚମ୍ପା ବାଘ ସିଂହ ପରିବାରର ସର୍ବନାଶ ସାଧନ କରିବା ନିମନ୍ତେ ରାମଚନ୍ଦ୍ର ମଙ୍ଗରାଜ ସହିତ କୁମନ୍ତ୍ରଣାରେ ବ୍ୟାପୃତ ଥିଲି, ସେହି କାଳରାତିର ବର୍ଣ୍ଣନା ଦେବାକୁ ଯାଇ ଫକୀରମୋହନ ଲେଖିଅଛନ୍ତି,—" 'ହୁକେ-ହୁକେ-ହୋ । ହୁକେ-ହୁକେ-ହୋ । ହୁକେ-ହୋ' ବିଲୁଆ ଡାକିଲେ, ଠିକ୍ ଅଧ ରାତ; ମଫସଲ ଗାଁରେ ଘଡ଼ିଘଣ୍ଟା ନାହିଁ, ବିଲୁଆ ଡାକ ଶୁଣି ରାତ ଠିକ୍ କଲୁ । ଏହି ପ୍ରାଣୀଗୁଡ଼ିକ ଗ୍ରାମର ଭାରି ଉପକାରୀ । କ୍ଷୁଦ୍ର ଗ୍ରାମରେ ମ୍ୟୁନିସିପାଲିଟି କମିସନର ନାହାନ୍ତି । ଗ୍ରାମରୁ ମଲା କୁକୁରଟି, ମଲା ମୂଷାଟି, ମଲା ବିରାଡ଼ିଟି, ଆଉ ଆଉ ମଇଳା ଦ୍ରବ୍ୟ ଉଠାଇବା କାର୍ଯ୍ୟ ଏମାନଙ୍କ ଜିମା । ଅଧରାତ, ଗୋବିନ୍ଦପୁର ଗ୍ରାମ ନିସ୍ତବ୍ଧ—ଟେଁ-ଟେଁ ଶବ୍ଦଟି ନାହିଁ । ତେଲି ସାହିରେ ଗୋଟିଏ ଛୋଟପିଲା କୁଅଁ କୁଅଁ କୁଅଁ କରି କାନ୍ଦୁଥିଲା, ତାହାର ମା ନିଦ ଅଳସରେ ପିଲାକୁ ଥାପୁଡ଼ା ଥାପୁଡ଼ି କରି ଭାରି ଭାରି ମୂଲ୍ୟବାନ ଏବଂ ଦୁଷ୍ପ୍ରାପ୍ୟ ଜିନିସମାନ ଯାଚି ଏବଂ ଚୋର, ଚୌକିଆ, ବାଘ ପ୍ରଭୃତି ଭୟଙ୍କର ପ୍ରାଣୀମାନେ ଆସୁଥିବାର ଭୟ ଦେଖାଇ ଏବଂ ପିଲାଟି

ଯେ ଖୁବ୍ ଭଲ, ସେ କାନ୍ଦିବ ନାହିଁ, ତୁନି ହୋଇ ଶୋଇ ପଡ଼ିବ ଇତ୍ୟାଦି ପ୍ରଶଂସାବାଦ କରି ଶୁଆଇ ପକାଇଲଣି । ମଙ୍ଗରାଜଙ୍କ କଚେରି ଅଗଣାରେ ଅମ୍ଭମାନଙ୍କ ଗୋବରା ଜେନା ଆଉ ସଭତ୍ରୁଣୀଆ ମୌଜାର ଚୌକିଆ ଦାସ ଜେନା, ଦୁଇଜଣ ଚଟାଏ ଲେଖାଏଁ ଲମ୍ବ ବାଉଁଶବାଡ଼ି ଦୁଇଖଣ୍ଡ, ବଏଁ ବଏଁ ଲମ୍ବ ଦୁଇଟା ନିଆଁ ବରଅ ପାଖରେ ପକାଇ ନିଶ୍ଚିନ୍ତ ଭାବରେ ଶୋଇଛନ୍ତି, ବାହାରର ଲୋକେ ମନେ କରିବେ, ମଙ୍ଗରାଜଙ୍କ କଚେରିରେ ଦୁଇଟା ଧୁପୁରି ଚଳୁଛନ୍ତି ଅବା । ଅମ୍ଭେମାନେ ସର୍ବଦା ସବୁ ବିଷୟରେ ସାବଧାନ ଥାଉଁ, ସବୁ ବିଷୟ ଅନୁସନ୍ଧାନ କରି ବୁଝୁଁ; ତଥାପି ପ୍ରଥମେ ଅମ୍ଭମାନଙ୍କର ମଧ୍ୟ ଭ୍ରମ ହୋଇଥିଲା । ମାତ୍ର ଭଲ କରି କାନ ଡେରି ଶୁଣିବାରୁ ଶୁଣାଗଲା, ଚୌକିଦାର ଦୁଇଜଣଙ୍କ ନାକର ଘୁଙ୍ଗୁଡ଼ି ଡାକ ଭ୍ରମ ପ୍ରମାଦର କାରଣ ଅଟେ ।"

ଫକୀରମୋହନଙ୍କ ଏ ରାତ୍ରିବର୍ଣ୍ଣନା ଅମର ଚିରପରିଚିତ । ଏହା ପଲ୍ଲୀ ନିଶୀଥର ବାସ୍ତବ ଆଲେଖ୍ୟ । ଏ ବର୍ଣ୍ଣନାରେ କୃତ୍ରିମ ଭାଷା-ପ୍ରସାଧନର ପରିପାଟୀ ନାହିଁ । 'ଭୀମାଭୂୟାଁ'ର ରାତ୍ରି ବର୍ଣ୍ଣନା କେବଳ ଆଦିବାସୀ ଭୂୟାଁ ବସତିର ନୈଶ ବିଭୀଷିକାର ଚିତ୍ର ନୁହେଁ । ଏ ବର୍ଣ୍ଣନା ଆଦିବାସୀ—'ଆଧୁନିକବାସୀ' ଏପରି କି ଭାରତର ଯେ କୌଣସି ଅଞ୍ଚଳର ରାତ୍ରିର ବର୍ଣ୍ଣନା । ଏ ବର୍ଣ୍ଣନାର କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ । ଏଥିରେ ଲେଖକଙ୍କର ଭାଷା ବିଳାସ କିମ୍ବା ବର୍ଣ୍ଣନାର ମଧ୍ୟଯୁଗୀୟ ଛଟା ଥାଇପାରେ, କିନ୍ତୁ କୌଣସି ଅଭିନବତ୍ୱ ନାହିଁ । ଏ ବର୍ଣ୍ଣନା ଆମ ପ୍ରାଣକୁ ସ୍ପର୍ଶ କରେ ନାହିଁ—କାରଣ ଏହା ଆମର ସାନ୍ନିଧ୍ୟ ଓ ଅନୁଭୂତିରୁ ବହୁ ଦୂରରେ । ଫକୀରମୋହନଙ୍କ ବର୍ଣ୍ଣନା ପଢ଼ିଲେ ପଲ୍ଲୀ ଗାଢ଼ ପହରରେ

ବାସ କରୁଥିବା ଯେ କୌଣସି ବ୍ୟକ୍ତିର ବାଲ୍ୟସ୍ମୃତି ଜାଗି ଉଠିବ—ଯେ କୌଣସି ପଲ୍ଲୀ ପାଠକ ଫକୀରମୋହନଙ୍କୁ ଆପଣାର ଆତ୍ମୀୟ କରିନେବ । ସତେ ଯେପରି ଏହା ପଲ୍ଲୀ ଜୀବନର ଫଟୋଗ୍ରାଫି—ଅବିକଳ ଛବି । କିନ୍ତୁ ଏହା କେବଳ ଫଟୋଗ୍ରାଫି କିମ୍ବା ବାସ୍ତବ ଛବି ନୁହେଁ, ଏଥିରେ ଅଛି ମ୍ୟୁନିସିପାଲିଟିର ମଇଳାବୁହା ଗାଡ଼ିକୁ ଲକ୍ଷ୍ୟ କରି କବିଙ୍କର ମୃଦୁ ମଧୁର ଆକ୍ଷେପ ଓ ନଈବଢ଼ିପରି ମାଡ଼ି ଆସୁଥିବା ବିଦେଶୀ ସଭ୍ୟତାର ପ୍ରଭାବ ପ୍ରତି ବିଦ୍ରୂପଦୃଷ୍ଟି ଓ ଅଭି-ବ୍ୟକ୍ତିର ତିର୍ଯ୍ୟକ୍ ଭଙ୍ଗୀ । ହାସ୍ୟରସର ମଧୁର ପରିବେଷଣ ମଧ୍ୟରେ ଅଛି ଲେଖକଙ୍କର ଅପୂର୍ବ ଗ୍ରାମ୍ୟ ରୂପକଳ୍ପ ଓ ସାଦୃଶ୍ୟ ଯୋଜନା । ତେଣୁ ଯେଉଁମାନେ ଏପର୍ଯ୍ୟନ୍ତ ଫକୀରମୋହନଙ୍କୁ ନିଛକ ବାସ୍ତବବାଦୀ ଔପନ୍ୟାସିକ ରୂପେ ଚିହ୍ନିତ କରୁଅଛନ୍ତି, ସେମାନେ ଫକୀରମୋହନଙ୍କର ଶିଳ୍ପଶ୍ରୀ ଓ ଶିଳ୍ପବୋଧ ପ୍ରତି ମର୍ଯ୍ୟାଦା ଦେଖାଉ ଅଛନ୍ତି, କି ଅମର୍ଯ୍ୟାଦା ଦେଖାଉ ଅଛନ୍ତି, ତାହା ପ୍ରଣିଧାନର ବିଷୟ ହେବା ଉଚିତ । ଜଡ଼ ବିଷୟବସ୍ତୁ କିମ୍ବା ମାନବ ଜୀବନ, ଲେଖକର ରସଦୃଷ୍ଟିରେ ରସାପ୍ଳୁତ ନହେଲେ, କେବଳ ଯଥାସ୍ଥିତିବାଦ ଦ୍ୱାରା କୌଣସି ରସୋତ୍ତୀର୍ଣ୍ଣ ଉଚ୍ଚାଙ୍ଗ ସାହିତ୍ୟର ସୃଷ୍ଟି ସମ୍ଭବ ନୁହେଁ ।

ତେଣୁ ଜଣେ ସମାଲୋଚକ ଓ ରସବିଗ୍ରାହକ ଯଥାର୍ଥ ଲେଖି-ଅଛନ୍ତି, ଉନ୍ନତ ଓ ପାଶ୍ଚାତ୍ୟ ସାହିତ୍ୟର ମୂଲ୍ୟାୟନ କରିବାକୁ ଗଲେ ଦେଖିବାକୁ ହେବ, କେଉଁ ଗ୍ରନ୍ଥ, କିମ୍ବା କେଉଁ ଗ୍ରନ୍ଥର ଅଂଶବିଶେଷକୁ କେବଳ ଥରେ ନୁହଁ, ଦୁଇଥର ନୁହଁ, ପାଠକ-ମାନେ ବାରମ୍ବାର ପଢ଼ି ମୁଗ୍ଧ ଓ ଚକିତ ହୁଅନ୍ତି—ସ୍ମୃତିପଟରେ ଅମୂଲ୍ୟ ସମ୍ପଦରୂପେ ସଞ୍ଚି ରଖନ୍ତି । ସାହିତ୍ୟର ମହତ୍ତ୍ୱ କିମ୍ବା ଉତ୍କର୍ଷ ଥାଏ, ପାଠକର ଚିତ୍ତକୁ ବାରମ୍ବାର ସମ୍ମୋହିତ କରି ତା ପ୍ରାଣରେ

ଅଲଗ୍ରା ଗାର ଝାଣିବାରେ । **"In general we may consider that passages which always please, and please all readers, contain the beauty and truth of the sublime."** ✻

ଏ ଦୃଷ୍ଟିରୁ ବିଗ୍ୱର କଲେ 'ଛ ମାଣ ଅଠ ଗୁଣ୍ଠ' **'Sublime'** ଉଚ୍ଚ ଓ ମହିମାମ୍ବାନ୍, କାରଣ ଯୌନ ସଙ୍କେତପୂର୍ଣ୍ଣ ଓ ମନ ଗହନର ଗୋପନ ରହସ୍ୟର ବିଶ୍ଳେଷଣରେ ସମାକୁଳ ଆଧୁନିକ ଔପନ୍ୟାସିକମାନଙ୍କର ଗ୍ଦଣି ଗ୍ଦଣି ଉପନ୍ୟାସ ମୁଦ୍ରାଯନ୍ତ୍ରର ପ୍ରସାଦରୁ ଆତ୍ମପ୍ରକାଶ କରି 'ପ୍ରଗତିଶାଳୀ' ଓଡ଼ିଆ ସାହିତ୍ୟର କଳେବର ବୃଦ୍ଧି କରୁଥିଲେହେଁ, ଆଜି ପାଠକ ୬୦ ବର୍ଷ ତଳକୁ ନିଜକୁ ଅପସାରିତ କରିନେଇ ଫକୀରମୋହନଙ୍କ 'ଛ ମାଣ ଅଠ ଗୁଣ୍ଠ' ଓ 'ମାମୁଁ' ଉପନ୍ୟାସ ପଢ଼ି ବସେ । 'ଛ ମାଣ ଅଠ ଗୁଣ୍ଠ' ବିଭିନ୍ନ ଭାଷାରେ ରୂପାନ୍ତରିତ ହୋଇ ପ୍ରତିବେଶୀ ପାଠକ ଓ ସାହିତ୍ୟିକମାନଙ୍କର ମନ ମୁଗ୍ଧ କରେ । ଓଡ଼ିଆ ପାଠକ ପ୍ରାଣରେ ଆଜି ସନ୍ଦେହ, କୌତୁହଳ ଓ ଜିଜ୍ଞାସାର ଅନ୍ତ ନାହିଁ—'ଛ ମାଣ ଅଠ ଗୁଣ୍ଠ' ପଢ଼ିବା, ନା 'ମାଟିର ମଣିଷ' କିମ୍ବା 'ଶାସ୍ତି-ବା' ପଢ଼ିବା ? କିଏ ଭଲ ? କାହିଁରେ ଅଛି ପଲ୍ଲୀମୟ ଓଡ଼ିଶାର ଆତ୍ମ-ପରିଚୟ—ପ୍ରାଣର ବାଣୀ—ହୃଦୟର ଅବ୍ୟକ୍ତ ବେଦନା ? ମୁକ୍ତ ପ୍ରାଣର ସ୍ୱଚ୍ଛନ୍ଦ ଲୀଳା—କାତର ଆଶା ଆକାଂକ୍ଷାର ପ୍ରତିଧ୍ୱନି ? ତେଣୁ ଆଜି 'ବିବାସିନୀ' କିମ୍ବା 'ଭାମାଭୂୟାଁ' ସେପରି ଆଦରର ସହିତ କେହି

---

✻ Scott-James—The leaking of Literature—(Page 93).

ପଡ଼ି ନାହାନ୍ତି । ଏହା ଏମ୍. ଏ. ଶ୍ରେଣୀର ପାଠ୍ୟପୁସ୍ତକରୂପେ ନିର୍ବାଚିତ କିମ୍ବା ପଣ୍ଡିତମାନଙ୍କର ଗବେଷଣାର ସାମଗ୍ରୀରୂପେ ବ୍ୟବହୃତ ।

ତେବେ 'ଛ ମାଣ ଅଠ ଗୁଣ୍ଠ'ର ପ୍ରେରଣା ଓ ପ୍ରଭାବର ଉତ୍ସ କିଏ ?

୧୮୮୮ରେ ପ୍ରଥମେ ପ୍ରକାଶ ପାଇଥିବା ଐତିହାସିକ ଉପନ୍ୟାସ 'ପଦ୍ମମାଳୀ' ଯେ 'ଛ ମାଣ ଅଠ ଗୁଣ୍ଠ'ର ରଚନାଶୈଳୀ ଓ ବର୍ଣ୍ଣନାବିନ୍ୟାସ ଉପରେ କିମ୍ବା ତାଙ୍କର ଐତିହାସିକ ଉପନ୍ୟାସ 'ଲଛମା' ଉପରେ କୌଣସି ପ୍ରଭାବ ପକାଇ ନାହିଁ, ତାହା ମଧ୍ୟ ଦିବାଲୋକପରି ସ୍ପଷ୍ଟ ।

'ପଦ୍ମମାଳୀ'ର ପ୍ରଥମ ସଂସ୍କରଣର ଭୂମିକାରେ ଲେଖକ ଉମେଶଚନ୍ଦ୍ର ସରକାର ଲେଖିଥିଲେ, "ଉତ୍କଳ-ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱକପୋଳକଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଆମ୍ଭେ ଏ ଅସୀମ ସାହସିକତାର କାର୍ଯ୍ୟ ଅନୁଷ୍ଠାନ କରିଅଛୁ । ଉତ୍କଳଭାଷାନଭିଜ୍ଞ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣି ସୁଦ୍ଧା ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁ । ବ୍ରତ ସଫଳ ହେଉ ବା ନିଷ୍ଫଳ ହେଉ ଆମ୍ଭେ ଆଉ ପଶ୍ଚାତ୍‌ପଦ ହୋଇ ନପାରୁ । ଜନ-ସମାଜର ପ୍ରୀତି ସମ୍ପାଦନ ଓ ଉତ୍କଳ-ସାହିତ୍ୟର ଗୌରବ ବର୍ଦ୍ଧନକୁ ଲକ୍ଷ୍ୟ କରି ଅକୃତକାର୍ଯ୍ୟ ହେଲେହେଁ ଏପରି ମହତ୍ କାର୍ଯ୍ୟର ଅନୁଷ୍ଠାନ କରିଥିଲୁଁ, ଏହା ଆମ୍ଭର ନୈରାଶ୍ୟର ସମୟରେ ଶାନ୍ତି ପ୍ରଦାନ କରିବ ।"

କିନ୍ତୁ ୧୯୧୨ରେ ଏହାର ଦ୍ୱିତୀୟ ସଂସ୍କରଣରେ ଲେଖାଅଛି, " 'ପଦ୍ମମାଳୀ' ଉତ୍କଳ ଭାଷାର ଏକମାତ୍ର ଐତିହାସିକ

ଉପନ୍ୟାସ । × × × ଦୁଇଗୋଟି ସମସାମୟିକ ଐତିହାସିକ ଘଟନାର ସମନ୍ୱୟରେ 'ପଦ୍ମମାଳୀ' ରଚିତ ହୋଇଅଛି ।" ତାଙ୍କର କଥାରେ ଏହା ଯଦି 'ଐତିହାସିକ ଉପନ୍ୟାସ' ହୁଏ, ତେବେ ଏହା 'କପୋଳକଳ୍ପିତ' ଗ୍ରନ୍ଥ ହେଲା ବା କିପରି ? କପୋଳକଳ୍ପନାର ସ୍ଥାନ ଐତିହାସିକ ଉପନ୍ୟାସରେ ଥିଲେ ମଧ୍ୟ ଏହାର କୈନ୍ଦ୍ରିକ ପ୍ରାଣ-ଶକ୍ତି ଇତିହାସ—ସମସାମୟିକ ଘଟନା, ସାମାଜିକ ଆଚାର ବ୍ୟବହାର, ଲୋକରୁଚି ଓ ଜୀବନ-ପ୍ରବାହ । ଏପରି କପୋଳକଳ୍ପିତ ଗ୍ରନ୍ଥ ଲେଖି ଯଦି କେଏ 'ଅସୀମ ସାହସିକତା'ର ଅପୂର୍ବ ପରିଚୟ ଦେଇଥାଏ, ସେ 'ଛ ମାଣ ଆଠ ଗୁଣ୍ଠ'ର ଲେଖକ ଫକୀରମୋହନ । ପୁଣି 'ଲଛମା' ଓ 'ପଦ୍ମମାଳୀ' ମଧ୍ୟରେ ଆକାଶ ପାତାଳ ପ୍ରଭେଦ । 'ଲଛମା'ର ବିଷୟ-ବିନ୍ୟାସ ଓ ପାତ୍ରପାତ୍ରୀଙ୍କ ଚଳାପଥରେ ଫକୀରମୋହନ ଯେଉଁ ସ୍ୱଚ୍ଛନ୍ଦ ସାବଲୀଳତାର ପରାକାଷ୍ଠା ଦେଖାଇ ଅଛନ୍ତି, ତାହା 'ପଦ୍ମମାଳୀ'ରେ ନାହିଁ । 'ପଦ୍ମମାଳୀ'ର କଳ୍ପନା ଅତ୍ୟନ୍ତ ମଧ୍ୟଯୁଗୀୟ ଏବଂ ଊନବିଂଶ ଶତାବ୍ଦୀର ପାଠକର ରୁଚିବୋଧ ଉପରେ ଏକ ନିର୍ମମ ଅତ୍ୟାଚାର । ଏଥିରେ କାଳିଦାସଙ୍କ 'ଶକୁନ୍ତଳା' ନାଟକର ଅପଟୁ ଓ ଅଧମ ଅନୁକରଣ ପରିସ୍ଫୁଟ । ପଦ୍ମମାଳୀର ପ୍ରେମବ୍ୟାଧି ଓ ଏହାର ଉପଚାର ଦୀର୍ଘ ବର୍ଣ୍ଣନା ଅତ୍ୟନ୍ତ ହାସ୍ୟାସ୍ପଦ । ପ୍ରଣୟର ଚିତ୍ରଣରେ ଲେଖକଙ୍କର ଶାଳୀନତା ଓ ସଂଯମର ଘୋର ଅଭାବ । ଭାଷାର ସାଡ଼ମ୍ବର କ୍ଲିଷ୍ଟତା ଓ କୃତ୍ରିମତାରେ ଏହା ଆମୂଳଚୂଳ କେବଳ ଭାରାକ୍ରାନ୍ତ ନୁହେଁ—ବ୍ୟାଧିଗ୍ରସ୍ତ । ଏହାର ଭାଷା ଯଦି ତତ୍ସମ ଶବ୍ଦ-ବହୁଳ ହୋଇଥାନ୍ତା, ତେବେ କହିବାର କିଛି ନଥିଲା । ଫକୀର-ମୋହନଙ୍କ 'ଲଛମା'ରେ ମଧ୍ୟ ତତ୍ସମ ଶବ୍ଦବହୁଳ ଓ ଦୀର୍ଘ ସମାସ-ଯୁକ୍ତ ପଦ-ବିନ୍ୟାସ ଦେଖାଯାଏ । କିନ୍ତୁ ସେଥିରେ ସୁଷମା ଅଛି, ଗାମ୍ଭୀର୍ଯ୍ୟ ଅଛି, ଭାଷାର ଓଜ ଓ ତେଜ ଅଛି । ସେ ଭାଷା ସ୍ଥଳ-

ବିଶେଷରେ ସେପରି ହେବା ଉଚିତ । ଅତ୍ୟାଗ୍ରହୀ ଓ ନାୟିରଙ୍କ ଦୁର୍ଯ୍ୟୋଧନ ପଦ୍ମମାଳୀଠାରେ ପ୍ରେମ ନିବେଦନ କରି କହୁଛି, "ସୁନ୍ଦରି, ବୁଭୁକ୍ଷିତ ବ୍ୟକ୍ତି ସୁଭକ୍ଷ୍ୟ ଓ ପିପାସିତ ଜଳପେୟ ନିକଟରେ ଦେଖି, କିନ୍ତୁ ଭକ୍ଷଣ ବା ପାନ କରିବାକୁ ନ ପାରିଲେ, ଯେପରି କଷ୍ଟ ସହ୍ୟ କରେ, ମୋର ମଧ୍ୟ ସେହିପରି କଷ୍ଟ ହେଉଅଛି ।" ଏ ଯେପରି, 'ଭୋ ଭୋ ଧୀବର କନ୍ୟକେ ମତ୍ସ୍ୟଟିର ମୂଲ୍ୟ ନିରୂପଣ କର' କିମ୍ବା 'ଶିକାଙ୍କ ଉପରେ ମାଠିଅଙ୍କ ମଧ୍ୟରେ ଘୃତ ଅଛନ୍ତି' କହି ଜଣେ ପଣ୍ଡିତ ହାସ୍ୟାସ୍ପଦ ହୋଇଥିଲେ, ଠିକ୍ ସେହିପରି । 'ଛ ମାଣ ଆଠ ଗୁଣ୍ଠ'ର ଐଶ୍ୱର୍ଯ୍ୟ ହେଉଛି ଏହାର ହାସ୍ୟରସ; ସମାଜ ଓ ଲୋକଚରିତ୍ରର ଅବର୍ଜନା ଓ ଦୋଷ ଦୁର୍ବଳତା ପ୍ରତି ଫକୀରମୋହନଙ୍କର ଶାଳୀନତାପୂର୍ଣ୍ଣ ସୁନ୍ଦର ବ୍ୟଙ୍ଗ ଓ ଆକ୍ଷେପ । କିନ୍ତୁ ହାସ୍ୟରସ ପରିବେଷଣ କରିବାକୁ ଯାଇ 'ଉତ୍କଳଭାଷାନଭିଜ୍ଞ' 'ପଦ୍ମମାଳୀ'ର ରଚୟିତା ଜଣେ ନାୟୀ ମୁହଁରେ କହିଅଛନ୍ତି, "ତୁମ୍ଭେ କହିଲ, ଟୋକୀର ଇଚ୍ଛା ନ ଥିଲେ କି ଦୁର୍ଯ୍ୟୋଧନ ତାହାକୁ ନେଇ ପାରନ୍ତା ? ଆଜିକାଲି ତ ଟୋକୀମାନେ ମିଣିପଙ୍କ ଉପରେ ପଡ଼ିବେ; ମିଣିପଙ୍କର ଦୋଷ କଣ ?" ତେବେ 'ପଦ୍ମମାଳୀ'ର ଦ୍ୱିତୀୟ ସଂସ୍କରଣରେ ଲେଖକ ଯେଉଁ ଅଭିମାନ ବ୍ୟକ୍ତ କରି ଲେଖିଅଛନ୍ତି, "ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବରେ ପ୍ରଥମେ ପ୍ରକାଶିତ ହୋଇଥିଲେହେଁ 'ପଦ୍ମମାଳୀ'ର ପ୍ରତିଦ୍ୱନ୍ଦ୍ୱୀ କେହି ଉତ୍କଳ ଭାଷାର ଅଙ୍ଗପୁଷ୍ଟି କରିଥିବାର ଅମ୍ଭଙ୍କୁ ଜଣା ନାହିଁ" । ସେହି ଦୁଃଖ ପ୍ରକାଶ କରିବାର ଦୁଇବର୍ଷ ପରେ ୧୯୧୪ରେ 'ଲଛମା' ମୁଦ୍ରିତ ଓ ପ୍ରକାଶିତ ହେଲା— 'ପଦ୍ମମାଳୀ'ର 'ପ୍ରତିଦ୍ୱନ୍ଦ୍ୱୀ' ରୂପେ ନୁହଁ, କି 'ବିବାସିନୀ'ର ପଦାନୁସାରିଣୀ ରୂପେ ନୁହଁ, ଫକୀରମୋହନଙ୍କର ଏକାନ୍ତ ମୌଳିକ ସୃଷ୍ଟିକର୍ମ ରୂପେ ।

ସମସାମୟିକ ବଙ୍ଗ-ସାହିତ୍ୟ ଯେ ଉପନ୍ୟାସ-ସାହିତ୍ୟ ସୃଷ୍ଟି କରିବାକୁ ଫକୀରମୋହନଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଛି, ଏଥିରେ ସନ୍ଦେହ ନାହିଁ । ଫକୀରମୋହନ ବନ୍ଧୁବାନ୍ଧବମାନଙ୍କ ସହିତ ସାହିତ୍ୟିକ ଆଳାପ ଆଲୋଚନା ବେଳେ, ଏବଂ ସାହିତ୍ୟ-ସମ୍ବନ୍ଧରେ ତାଙ୍କର ଭାଷଣରେ ବଙ୍ଗସାହିତ୍ୟର ସମୃଦ୍ଧି ଓ ପ୍ରଗତିର କଥା ବଡ଼ ଉତ୍ସାହ ଓ ବେଦନାର ସହିତ କହିଥାନ୍ତି । ଉତ୍କଳ-ସାହିତ୍ୟ-ସମାଜର ସ୍ଥାୟୀ ସଭାପତି ରୂପେ ସେ ତାଙ୍କର ଅଭିଭାଷଣରେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଥରେ କହିଥିଲେ, "ବଙ୍ଗ ଭାଷାରେ ପ୍ରାୟ ୩୦୦ ଖଣ୍ଡ ମାସିକ ପତ୍ରିକାର ପ୍ରଚାର ଦେଖାଯାଏ । ଉପନ୍ୟାସହୀନ କୌଣସି ପତ୍ରିକା ନାହିଁ । ସେହି ଉପନ୍ୟାସ ପ୍ରଲୋଭନରୁ ମାସିକ ପତ୍ରିକା ସଂଖ୍ୟା ଏତେ ବଢ଼ି ଯାଇଛି । ସମୟ ସମୟରେ ଲୋକସାଧାରଣଙ୍କର ନାଟକ ବା ଉପନ୍ୟାସ ଅସୀମ ଶକ୍ତି ପ୍ରକାଶ କରିଥାଏ । ବଙ୍ଗଦେଶର 'ନୀଳ ଦର୍ପଣ' ନାଟକ ଏବଂ 'କୁଳୀନ କୁଳସର୍ବସ୍ୱ' ନାଟକ ଦେଶ ମଧ୍ୟରେ କି ଅସୀମ ଉପକାର ସାଧନ କରି ଯାଇଅଛି, ତାହା ଶିକ୍ଷିତ ଲୋକ ମାନେ ଅବଗତ ଅଛନ୍ତି ।" ପଣ୍ଡିତ ନୀଳକଣ୍ଠ ଦାସ ଫକୀରମୋହନ ଗ୍ରନ୍ଥାବଳୀର ଉପୋଦ୍‌ଘାତରେ ଲେଖିଅଛନ୍ତି, "ଫକୀରମୋହନ ଥରେ ତାଙ୍କୁ କହିଥିଲେ, ଯେତେବେଳେ ବଙ୍ଗଳାରେ ବିଶେଷରେ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ସବୁ ବାହାରେ, ସେତେବେଳେ ସେଥିରୁ ଖଣ୍ଡିଏ ଦେଖିଲେ ତାଙ୍କୁ ବଡ଼ ଅମୁଣ୍ଡେଇ ଲାଗେ ।"*

ତେଣୁ କେହି କେହି ମନେ କରିପାରନ୍ତି—ଏହି ବଙ୍ଗ ଉପନ୍ୟାସବାଟେ ଇଂରେଜ ଔପନ୍ୟାସିକ ଡିକେନ୍‌ସଙ୍କ ପ୍ରଭାବ

* ଫକୀରମୋହନ ଗ୍ରନ୍ଥାବଳୀ (ପୃ ୧୧୦୮-୯) ।

ତାଙ୍କ ଉପରେ ମଜ୍ଜିଛି, କିମ୍ବା ବ୍ୟଙ୍ଗବିଦ୍ରୂପରସାଣିତ 'ଛ ମାଣ ଅଠ ଗୁଣ୍ଠ' ପୂର୍ବରୁ ରଚିତ କୌଣସି ବଙ୍ଗୀୟ ସାମାଜିକ ଉପନ୍ୟାସର ପ୍ରଭାବ ଏହି ଉପନ୍ୟାସ ଉପରେ ପଡ଼ିଛି ।

ବଙ୍ଗଳାର ପ୍ରଥମ ବାସ୍ତବ ରସସମୃଦ୍ଧ ଉପନ୍ୟାସ ହେଉଛି ପ୍ୟାରୀଚାନ୍ଦ ମିତ୍ରଙ୍କର 'ଅଲାଲେର ଘରେର ଦୁଲାଲ' (୧୮୫୭) । ଜଣେ ବଙ୍ଗୀୟ ସମାଲୋଚକଙ୍କ ମତରେ, 'ଅଲାଲେର ଘରେର ଦୁଲାଲ' ମଧ୍ୟରେ କାହାଣୀ ଅଛି, ସାମାଜିକ ଚିତ୍ର ଅଛି, ବାସ୍ତବତା ଅଛି, କିନ୍ତୁ ଏହା ମଧ୍ୟରେ ଉପନ୍ୟାସର ମୌଳିକ ଉପାଦାନ ନାହିଁ—ମାନବ ହୃଦୟର ଗୋପନତମ ପ୍ରଦେଶର ଚିତ୍ର ନାହିଁ । ଏହା ଲେଖା ହୋଇଥିଲା କଥିତ ଭାଷାକୁ ସାହିତ୍ୟର ବାହନ କରିବା ନିମନ୍ତେ, ଏବଂ ଏହାର ବିଷୟ ହେଉଛି ନୀତିଶିକ୍ଷା, ବ୍ୟଙ୍ଗ ଓ ବିଦ୍ରୂପ । ଏହା ମଧ୍ୟରେ କୌଣସି ଗୋଟିଏ ସୁବିନ୍ୟସ୍ତ କାହାଣୀ ଗଢ଼ି ଉଠି ନାହିଁ, କେତେଗୁଡ଼ିଏ ବିଚ୍ଛିନ୍ନ ଚିତ୍ର ଏକତ୍ର ଗ୍ରଥିତ ହୋଇଛି ମାତ୍ର । ସେମାନଙ୍କ ମଧ୍ୟରେ ଯେଉଁ ଯୋଗସୂତ୍ର ଅଛି ତାହା ଅକିଞ୍ଚିତ୍କର ।*

ବିଭିନ୍ନ ଘଟନାର ଏ ଯେଉଁ ଐକ୍ୟବିଧାନ ଏବଂ ସୁକୁମାର ଓ ସୂକ୍ଷ୍ମ ଗ୍ରଥନ-ଶିଳ୍ପ ତାହାହିଁ ତ ଉପନ୍ୟାସର ଚମତ୍କାରିତ୍ୱ । 'ଅଲାଲେର ଘରେର ଦୁଲାଲ'ରେ ତା ନାହିଁ । ତେବେ 'ଛ ମାଣ ଅଠ ଗୁଣ୍ଠ'ର ରଚୟିତା ସେଥିରୁ କି ପ୍ରେରଣା ପାଇଥିବେ ? ପ୍ରତିବେଶ ଚିତ୍ରଣ ଓ ବ୍ୟଙ୍ଗ ବିଦ୍ରୂପର ଅବତାରଣାରେ ଯଦି କିଛି ଉପକରଣ ସେ ଏଥିରୁ ପାଇଥିବେ, ତାହା ଅକିଞ୍ଚିତ୍କର, କାରଣ 'ଛ ମାଣ ଅଠ ଗୁଣ୍ଠ'ର ସାମାଜିକ ପରିସ୍ଥିତି କେବଳ ଓଡ଼ିଶାରେ ସମ୍ଭବ । ଫକୀରମୋହନଙ୍କ ମାନସ ଗୋଷ୍ଠି ଓଡ଼ିଆ

* ଶରତ୍‌ଚନ୍ଦ୍ର—ଶ୍ରୀ ସୁବୋଧଚନ୍ଦ୍ର ସେନଗୁପ୍ତ—୨ୟ ସଂସ୍କରଣ (ପୃ-୨) ।

ମାନସ । ତାଙ୍କର ଶିଳ୍ପବୋଧ ଓଡ଼ିଆ-ସାହିତ୍ୟର ଉନ୍ନତି କଲେ ଅଜ୍ଞାତ ଓ ଅଲକ୍ଷିତ ଭାବରେ ପ୍ରଭାବ-ପ୍ରଣୋଦିତ ହୋଇଥାଇ ପାରେ । ଏ ପ୍ରଭାବରୁ ବାଲ୍ମୀକି, କାଳିଦାସ, ରବୀନ୍ଦ୍ରନାଥ, ସେକ୍‌ସପିଅର, ଗେଟେ କେହି ମୁକ୍ତ ନୁହନ୍ତି । କିନ୍ତୁ 'ଛ ମାଣ ଅଠ ଗୁଣ୍ଠ'ରେ ଫକୀରମୋହନଙ୍କର ଯେଉଁ କବିସୁଲଭ ଅନ୍ତର୍ଦୃଷ୍ଟି ଓ ବାସ୍ତବାଭିମୁଖିତା ମଧ୍ୟରେ ଯେଉଁ ଗଭୀର ଜୀବନବୋଧର 'ପରିସ୍ପନ୍ଦ'—ତାହାହିଁ ତାହାଙ୍କୁ ଏ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟରେ ମହିମାନ୍ୱିତ କରିଅଛି । ପ୍ରତୀକଧର୍ମୀ ଜଣେ ଫରାସୀ କବିଙ୍କ ସମ୍ବନ୍ଧରେ ବିଜ୍ଞ ସମାଲୋଚକ ଯେଉଁ ମତ ବ୍ୟକ୍ତ କରିଅଛନ୍ତି, ଫକୀରମୋହନଙ୍କ କଥା-ସାହିତ୍ୟ ଓ କାବ୍ୟିକତା ପ୍ରତି ତାହା ପ୍ରଯୋଜ୍ୟ ନୁହେଁ କି ?—"Each poet has his unique personality, each of his moments has its special tone, its special combination of elements. And it is the poet's task to find, to invent the special language which will alone be capable of expressing his personality and feelings."* ଏହି personality (ବ୍ୟକ୍ତିତ୍ୱ) ଏବଂ invention (ଉଦ୍ଭାବନ)ହିଁ ଫକୀରମୋହନଙ୍କ ସୃଷ୍ଟିପ୍ରେରଣାର ଉତ୍ସ ।

---

* The Psychological Novel—L. Edel, P. 31.

# ଫକୀରମୋହନଙ୍କ କଥା-ସାହିତ୍ୟର ଭୂମିକା

ଫକୀରମୋହନଙ୍କୁ ସମାଲୋଚକ ଓ ପାଠକମାନେ ବହୁ ବିଶେଷଣରେ ନାମିତ କରିବାର ଦେଖାଯାଏ । କିଏ କହେ, ସେ 'ସଂସ୍କାରବାଦୀ', କିଏ କହେ, 'ସେ ପୂର୍ଣ୍ଣ ଆଦର୍ଶବାଦୀ— ଏପରିକି ଅସହ୍ୟ ଭାବରେ ନୀତିବାଦୀ', ଏବଂ କେହି କେହି କହନ୍ତି, ସେ 'ବାସ୍ତବବାଦୀ' । ଫକୀରମୋହନଙ୍କ କଥା-ସାହିତ୍ୟ ପାଠକଲେ ଏଥିମଧ୍ୟରୁ କେଉଁ ବିଶେଷଣଟି ଅଭ୍ରାନ୍ତ, ଏବଂ ଔପନ୍ୟାସିକ ଓ ଗାଳ୍ପିକ ଫକୀରମୋହନଙ୍କର ପ୍ରାପ୍ୟ ତାହା ଅବଧାରଣ କରି ହୁଏ ନାହିଁ । ଉପନ୍ୟାସର ଯଥାଯଥ ସଂଜ୍ଞା ଏପର୍ଯ୍ୟନ୍ତ ନିରୂପିତ ହୋଇପାରି ନାହିଁ । ଉପନ୍ୟାସକୁ ଶିଳ୍ପ କିମ୍ବା କଳାର ପର୍ଯ୍ୟାୟଭୁକ୍ତ କରିବାକୁ କୌଣସି କୌଣସି ପାଶ୍ଚାତ୍ୟ ସମାଲୋଚକ ନିତାନ୍ତ ଅନିଚ୍ଛୁକ । ସେମାନଙ୍କ ମତରେ ଉପନ୍ୟାସର ପରିଧି ଓ ପରିସର ଏପରି ବିସ୍ତୃତ, ଏବଂ ଏହାର ଅପ୍ରକୃତନ ସମୟେ ସମୟେ ଏପରି ବିରାଟତ୍ୱ ଧାରଣ କରିଛି ଯେ, ଏହାକୁ କାବ୍ୟ, କବିତା କିମ୍ବା ନାଟକପରି କୌଣସି କଳାତ୍ମକ କାର୍ଯ୍ୟ ବୋଲି କୁହାଯାଇ ନପାରେ । ତେଣୁ କୌଣସି କୌଣସି ପାଶ୍ଚାତ୍ୟ ସମାଲୋଚକ ଉପନ୍ୟାସର ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ କହିଅଛନ୍ତି, **"A fiction in prose of certain extent."** ଯେ କୌଣସି ଆକାରବିଶିଷ୍ଟ ଗଦ୍ୟରଚିତ କାଳ୍ପନିକ ଗଳ୍ପ । ଭର୍ଜିନିଆ ଉଲ୍‌ଫ (୧୮୮୨—୧୯୪୧) (ଇଂଲଣ୍ଡର ଜଣେ ପ୍ରଖ୍ୟାତା

ଔପନ୍ୟାସିକା) ଥରେ ଲେଖିଥିଲେ, "A novel in particular has roused a thousand ordinary human feelings in its progress. To drag in art in such a connection seems priggish and cold-hearted. There is not a critic alive now who will say that a novel is a work of art and that as such he will judge it." ଉପନ୍ୟାସରେ ମାନବିକ ଅନୁଭୂତି ଓ ଅଭିଜ୍ଞତାର ଏତେ ସମାବେଶ ଯେ, ଏହାକୁ ଶିଳ୍ପକର୍ମରୂପେ କୌଣସି ସମାଲୋଚକ ବିଚାର କରିବେ ନାହିଁ। କିନ୍ତୁ ସମାଲୋଚକ ଲବାକ୍ (Lubbock) ତାଙ୍କର "The craft of fiction" ବହିରେ କହନ୍ତି, ଉପନ୍ୟାସର ଶୈଳ୍ପିକ ସୁଷମା ଓ ନିର୍ମାଣକୌଶଳ ଅଛି, ଏହା ଆଦ୍ୟ-ଅନ୍ତ-ମଧ୍ୟ ସମନ୍ୱିତ ଏକ ସ୍ୱତନ୍ତ୍ର କାରୁକର୍ମ। ଉପନ୍ୟାସରେ କେବଳ ଆମ୍ଭେମାନେ ମନୁଷ୍ୟ ଜୀବନର ବାସ୍ତବ ପ୍ରତିଛବି ଦେଖୁନାହୁଁ। ଏହି ପ୍ରତିଛବି ସହିତ ଜଡ଼ିତ ହୋଇ ରହିଥାଏ ଲେଖକର ଭାବ-ଭାବନା, ଧ୍ୟାନ-କଳ୍ପନା, ଏବଂ ସଂସାର ପ୍ରତି ତାର ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ଓ ତାର ଜୀବନ-ବେଦ। ତେଣୁ ଲବାକଙ୍କ ମତରେ "An art it must be since a literal transcript of life is plainly impossible."

ଫଷ୍ଟର (E. M. Forster) ନାମକ ଜଣେ ଉପନ୍ୟାସ-ସମାଲୋଚକ ଉପନ୍ୟାସ-ଶିଳ୍ପ ସମ୍ବନ୍ଧରେ ଗୋଟିଏ ଅତି କୌତୂହଳ-ପୂର୍ଣ୍ଣ, ଅଥଚ ଚିନ୍ତାଗର୍ଭକ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି। ସେ ଅବଶ୍ୟ ଉପନ୍ୟାସର ନାନା ବିଭାବ, ଯଥା—କାହାଣୀ, ଚରିତ୍ର, ଘଟନା-ବିନ୍ୟାସ, କଳ୍ପନା, ଆଦର୍ଶବାଦ ଏବଂ ରୂପକଳା ଉପରେ ଯଥେଷ୍ଟ ଆଲୋକପାତ କରିଅଛନ୍ତି। ତଥାପି ସେ କହନ୍ତି, "It is most

distinctly one of the moister areas of literature irrigated by a hundred mills and occasionally degenerating into a swamp." *
ଉପନ୍ୟାସ ସାହିତ୍ୟର ସର୍ବାଧିକ ଜଳସିକ୍ତ ଭୂମି । ଏ ଭୂମି ବହୁ କ୍ଷୁଦ୍ର କ୍ଷୁଦ୍ର ନଦୀଦ୍ୱାରା ପ୍ଲାବିତ—ସମୟେ ସମୟେ ଏ ଭୂମିରେ ଏତେ ପାଣି ଜମିରହେ ଯେ ଏହା 'ସନ୍ତସନ୍ତିଆ ଭୂମି'ରେ ପରିଣତ ହୁଏ । ଅର୍ଥାତ୍ ଏପରି ଗଳ୍ପ, ଘଟଣା, ଚରିତ, ପରିବେଶ କିମ୍ବା ମନସ୍ତାତ୍ତ୍ୱିକ ବିଶ୍ଳେଷଣ ନାହିଁ, ଯାହା ଉପନ୍ୟାସର ଅଙ୍ଗୀଭୂତ ହୋଇନପାରେ । ଏପରି ବ୍ୟାପିକା ଓ ଗ୍ରାହିକା ଶକ୍ତି ଉପନ୍ୟାସ ବ୍ୟତୀତ ସାହିତ୍ୟର ଅନ୍ୟ କୌଣସି ବିଭାଗରେ ଦେଖିବାକୁ ମିଳେ ନାହିଁ ।

ଅନ୍ୟ ମଧ୍ୟ କେହି କେହି ଉପନ୍ୟାସର ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ କହନ୍ତି, "ବାସ୍ତବ ଜୀବନର ଖଣ୍ଡ ଖଣ୍ଡ ଛବିଗୁଡ଼ିକ ଐକ୍ୟ ସୂତ୍ରରେ ଗ୍ରଥିତ ହୋଇ ଏବଂ ଘଟଣାର ଧାରାବାହିକତା ଓ ଶିଳ୍ପୀ ମନର ସଚେତନ ଉଦ୍ଦେଶ୍ୟ ସହିତ ଯୁକ୍ତ ହୋଇ ଏକ ସମ୍ପୂର୍ଣ୍ଣ ଅନ୍ତଃ-ସଙ୍ଗତିବିଶିଷ୍ଟ କାଳ୍ପନିକ ଶରୀରରେ ସଂହତ ହୁଏ । ଏହା ସଜ୍ଞାନ ଉପନ୍ୟାସ-ସୃଷ୍ଟିର ପ୍ରଥମ ଅଙ୍କୁର ।" † ଅନ୍ୟ କେହି କେହି କହନ୍ତି, "ଉପନ୍ୟାସର ପ୍ରାଥମିକ ଯାତ୍ରାରମ୍ଭ ବାସ୍ତବ ଜଗତରୁ । ବାସ୍ତବ ଜଗତ ହିଁ ଉପନ୍ୟାସର ବିଷୟୀଭୂତ ଅନୁଭବ (Subjective Associations)ର ଉତ୍ସ । ସେଥିପାଇଁ ଉପନ୍ୟାସ

* E. M. Forster—Aspects of the Novel, Introductory. P. 9.

† ବଙ୍ଗଳା ଉପନ୍ୟାସ—ଶ୍ରୀ କୁମାର ବନ୍ଦୋପାଧ୍ୟାୟ (ପୃ-୧୫) ।

ବା ଆଖ୍ୟାୟିକା ମଧ୍ୟରେ ଅମ୍ଭେମାନେ ଲେଖକର ଅହଂ କିମ୍ବା ବ୍ୟକ୍ତିତ୍ୱର ସନ୍ଧାନ ପାଉ ନାହିଁ, ଉପନ୍ୟାସ ବର୍ଣ୍ଣିତ ବିଷୟବସ୍ତୁ ସହିତ କାବ୍ୟ କବିତାପରି ଆମେ ଏକାତ୍ମ ହୋଇ ପାରୁ ନାହିଁ, ଉପନ୍ୟାସସୃଷ୍ଟ ଜଗତରେ ଠିଆ ହୋଇ ବାହାରକୁ ପର୍ଯ୍ୟବେକ୍ଷଣ କରୁ ।" *

ବାସ୍ତବବାଦୀ ସମାଲୋଚକମାନେ କହନ୍ତି, 'ଗତିଶୀଳ ପ୍ରତ୍ୟକ୍ଷ ବାସ୍ତବ ହିଁ ଉପନ୍ୟାସରେ ପ୍ରତିଫଳିତ ହୁଏ ।' ଏହି ଦୃଷ୍ଟିରୁ ବିଗ୍ଭର କଲେ ମନେହୁଏ, ଫକୀରମୋହନଙ୍କ ଉପନ୍ୟାସ ବାସ୍ତବାଶ୍ରୟୀ, କାରଣ ପାଶ୍ଚାତ୍ୟ ସଭ୍ୟତାର ସଂସ୍ପର୍ଶରେ ଦେଖା ଯାଉଥିବା ଆମ ସମାଜର ପରିବର୍ତ୍ତନ ଦେଖି ତାଙ୍କର ଚିତ୍ତ ଆଲୋଡ଼ିତ ହୋଇଅଛି । ଆମର ପ୍ରାଚୀନ ପରମ୍ପରା ଓ ଦୈନନ୍ଦିନ ଜୀବନ-ଯାତ୍ରାରେ ଇଂରେଜୀ ଶିକ୍ଷା ଓ ସଭ୍ୟତା ବିପର୍ଯ୍ୟୟ ସୃଷ୍ଟି କରି ସେତେବେଳେ ଲୋକଙ୍କୁ ଯେପରି ପାଶ୍ଚାତ୍ୟ ଭାବ ପ୍ରଣୋଦିତ କରିଥିଲା, ସେଥିରେ ତାଙ୍କର ଯେଉଁ ଅନୁଭୂତି ଓ ଅଭିଜ୍ଞତା ଜାତ ହୋଇଥିଲା, ସେହି ଅଭିଜ୍ଞତା ମଧ୍ୟରେ ରହିଛି ତତ୍କାଳୀନ ସାମାଜିକ ପରିସ୍ଥିତି ସହିତ ତାଙ୍କ ସନ୍ଧାନୀ ଓ ସଂସ୍କାରପ୍ରବଣ ମନର ସଂଘର୍ଷ । ସେ କ୍ରମବର୍ଦ୍ଧିଷ୍ଣୁ ପାଶ୍ଚାତ୍ୟ ବଣିକ-ସଭ୍ୟତାକୁ ବହୁଭାବରେ ବ୍ୟଙ୍ଗ, ବିଦ୍ରୂପ ଓ କଟୁ ସମାଲୋଚନାରେ ଜର୍ଜରିତ କରିଅଛନ୍ତି । ଯେଉଁ ଜାତି ନିଜ ଭାଷା ବର୍ଜନ କରି ପରର ଭାଷା ଅନୁସରଣ କରିବାକୁ ସଚେଷ୍ଟ, ତାକୁ 'ବର୍ବର' ଆଖ୍ୟା ଦେଇ ଅଛନ୍ତି । 'କେଉଁ ଜାତି ବର୍ବର' କବିତାରେ ସେ ଚେତାବନୀ ଶୁଣାଇ ଲେଖିଅଛନ୍ତି—

* ଶିଳ୍ପ, ସଂସ୍କୃତି ଓ ସମାଜ—ବିନୟ ଘୋଷ-ଉପନ୍ୟାସ (ପୃ-୭୪) ।

ପୁରୁଷ ଶ୍ରୀ ଅଟେ ବୀର୍ଯ୍ୟ, ଜାତି ଶ୍ରୀ ଭାଷା,
ଯାହା ଯେନ ଜାତି କରେ ଉନ୍ନତି ପ୍ରତ୍ୟାଶା ।

ଭାଷା ହିଁ ଜୀବନୀଶକ୍ତି ଜାତିମାନଙ୍କର
ଯେଉଁ ଜାତି ଭାଷାହୀନ ସେ ଜାତି ବର୍ବର ।

ଏତିକି ନୁହଁ, ଇଂରେଜୀ ଲେଖା ଓ ସମ୍ବାଦପତ୍ରର ବହୁଳ ପ୍ରଚାର ଓ ଆଦର ଦେଖି ଏବଂ ଓଡ଼ିଆ ବହୁପ୍ରିତ ଲେଖକଙ୍କର ନିର୍ମମ ଉଦାସୀନତା ଲକ୍ଷ୍ୟ କରି ସେ ସେହି ସମୟର ବାସ୍ତବ ପରିସ୍ଥିତିକୁ ବ୍ୟଙ୍ଗ କରି ଲେଖିଅଛନ୍ତି—

ଦେଖି ଲାଗିଲାଣି ତାଟଙ୍ଗା ମୋତେ
ଦେଶୀ ବିଲାତରେ ପ୍ରଭେଦ ଏତେ ।

ଫକୀରମୋହନଙ୍କ ଉପନ୍ୟାସର ପ୍ରକୃତ ଜନୟିତା ଆଧୁନିକ ରୁଷ କଥାସାହିତ୍ୟ ପରି 'ଧନତାନ୍ତ୍ରିକ ସମାଜ' (**Capitalist Society**) ନ ହେଲେ ମଧ୍ୟ, ସେ ତାଙ୍କ ଗଳ୍ପ ଉପନ୍ୟାସରେ ଅର୍ଥପିଶାଚ ଓ ଧାପାଗୃଧ୍ର ଧନିକ ବ୍ୟକ୍ତିମାନଙ୍କର ଅସଂଯତ ଓ ଦୁର୍ଦ୍ଦମ ଅର୍ଥଲାଳସାକୁ ବାରମ୍ବାର କଶାଘାତ କରିଅଛନ୍ତି, ଏହି ଦୁର୍ବୃତ୍ତମାନଙ୍କୁ ସମୁଚିତ ଶାସ୍ତି ଦେଇଅଛନ୍ତି ।

ତେଣୁ ଫକୀରମୋହନ କ ସଂସ୍କାରବାଦୀ ଓ ବାସ୍ତବଧର୍ମୀ ଔପନ୍ୟାସିକ ଓ ଗାଳ୍ପିକ ? ତାଙ୍କର ନୀତିବାଦିତା, ଜୀବନର ମୂଲ୍ୟବୋଧ ଏବଂ ସଙ୍କାନ ଆଦର୍ଶନିଷ୍ଠା ତ ତାଙ୍କର ପ୍ରତ୍ୟେକ ଉପନ୍ୟାସ ଓ ଗଳ୍ପରେ ଅନ୍ତର୍ନିହିତ, ତେବେ ସେ କଣ ଆଦର୍ଶ-ବାଦୀ ? ଏ ଗୋଲ୍‌କଧନ୍ଦାର ସମାଧାନ କାହିଁ ?

ଆଦର୍ଶବାଦ ଓ ବାସ୍ତବବାଦର ଦ୍ୱନ୍ଦ୍ୱ ଯେପରି ମନୁଷ୍ୟ ଜୀବନରେ ଦେଖାଯାଏ, ସେହିପରି ଏ ଦ୍ୱନ୍ଦ୍ୱ ଓ ତର୍କବିତର୍କ ବି ଆଧୁନିକ କଥା-ଶିଳ୍ପର ସମାଲୋଚକମାନଙ୍କ ମଧ୍ୟରେ ଦେଖିବାକୁ ମିଳେ । ଏ ତର୍କବିତର୍କର ମୀମାଂସା ନାହିଁ । ଆଧୁନିକ ଗଳ୍ପ, ଉପନ୍ୟାସ ଓ କବିତାରେ ବାସ୍ତବାଭିମୁଖିତା ପ୍ରତି ଲେଖକ-ମାନଙ୍କର ଯେଉଁ ମମତା, ଅନୁରକ୍ତି କିମ୍ବା ଆକର୍ଷଣ, ଏବଂ ଯାହା ଉପରେ ସମାଲୋଚକମାନେ ଏତେ ଗୁରୁତ୍ୱ ଆରୋପ କରନ୍ତି, ସେ ସମ୍ବନ୍ଧରେ ଜଣେ ବଙ୍ଗ ସମାଲୋଚକ ଯଥାର୍ଥ କହିଅଛନ୍ତି, "ମଜାର କଥା ଏହି,—ଏଣେ ଆମ୍ଭେମାନେ ସାହିତ୍ୟ ମାଧ୍ୟମରେ ନିପୀଡ଼ିତ ଓ ଦୁର୍ବଳ ବ୍ୟକ୍ତିର ପ୍ରାଣର ଅସ୍ଫୁଟ ବେଦନାକୁ ଭାଷା ଦେଉଅଛୁ—ମନୁଷ୍ୟର ମନ ଗହନର ଦୁର୍ଜ୍ଞେୟତା ଭିତରେ ଆଲୋକପାତ କରୁଅଛୁ, କଳ କାରଖାନାର ଶ୍ରମିକ ମଜଦୁର ଓ କୁଲିମାନଙ୍କ ଅନ୍ତରରେ ଥିବା କ୍ଷୁଧିତ ଭଗବାନଙ୍କର ଜୟଗାନ କରୁଅଛୁ, ଏବଂ ଏହାକୁ ନେଇ ବର୍ତ୍ତମାନ ଯୁଗର ସାହିତ୍ୟର ଶ୍ରେଷ୍ଠତ୍ୱ ଦାବୀ କରୁଅଛୁ । ତେଣେ ପ୍ରମାଣ କରିବାରେ ଲାଗିଯାଉଛୁ ଯେ, ସାହିତ୍ୟର ରସବୋଧ ସହିତ ଆମ୍ଭମାନଙ୍କ ଶ୍ରେୟବୋଧର କୌଣସି ସମ୍ପର୍କ ନାହିଁ ।"*

ଏଠାରେ ସମାଲୋଚକଙ୍କର କହିବାର ତାତ୍ପର୍ଯ୍ୟ, ଯେଉଁ ଲେଖକମାନେ କହନ୍ତି, ସେମାନେ କେବଳ ସାହିତ୍ୟର ମାଧ୍ୟମରେ ରସସୃଷ୍ଟି ଓ ସୌନ୍ଦର୍ଯ୍ୟ ସୃଷ୍ଟି କରି ଚାଲିଛନ୍ତି, ସାହିତ୍ୟର ବାସ୍ତବ ଓ ବ୍ୟାବହାରିକ ପ୍ରୟୋଜନ ଓ ଅପ୍ରୟୋଜନ ସହିତ ଯେଉଁ-

---

* ସାହିତ୍ୟ ଓ ଆଲୋଚନା—ଶାନ୍ତିକୁମାର ଦାସଗୁପ୍ତ—ବାସ୍ତବ-ବାଦ ଓ ଆଦର୍ଶବାଦ (ପୃ-୨୭) ।

ମାନଙ୍କର କିଛି ସମ୍ପର୍କ ନାହିଁ, ସେମାନେ ବି ଅଦର୍ଶବାଦୀ, କାରଣ ପୁଞ୍ଜିପତି ଓ ଶ୍ରମିକମାନଙ୍କ ମଧ୍ୟରେ ଥିବା ବିରାଟ ଲୌହ ପ୍ରାଚୀର ଦେଖି ସେମାନଙ୍କ ଅନ୍ତର ଅହତ ଓ କ୍ଷୁବ୍ଧ, ଏବଂ ସେମାନେ ବି ଶ୍ରମିକ ଓ ମଜଦୂରମାନଙ୍କ ଆଗରେ ଏକ ବଳିଷ୍ଠ ଆଦର୍ଶ ଉପସ୍ଥାପିତ କରି ସେମାନଙ୍କୁ ମାନବୀୟ ମହତ୍ତ୍ୱରେ ମହିମାନ୍ୱିତ କରିବାକୁ ଚାହାନ୍ତି, ସେମାନଙ୍କୁ ମାନବିକ ମର୍ଯ୍ୟାଦା ଦେବାକୁ ପ୍ରୟାସ କରନ୍ତି, ଏବଂ ବିଶୁଦ୍ଧ ସୌନ୍ଦର୍ଯ୍ୟବାଦୀ ହୋଇ ମଧ୍ୟ କୁଳି, ଶ୍ରମିକ ଓ ନିପୀଡ଼ିତ ଦୀନ ଦୁଃଖୀଙ୍କର ଅତ୍ୟାଚାରର ଜୀବନ୍ତ ଚିତ୍ର ଅଙ୍କନ କରି ବାସ୍ତବଧର୍ମିତାର ପରିଚୟ ଦିଅନ୍ତି । ତେଣୁ ଆଦର୍ଶବାଦ ଓ ବାସ୍ତବବାଦ ମଧ୍ୟରେ ସୁସ୍ପଷ୍ଟ ସୀମାରେଖା କେଉଁଠାରେ ?

ବଙ୍ଗ ସାହିତ୍ୟର ସର୍ବଶ୍ରେଷ୍ଠ ଔପନ୍ୟାସିକ ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କୁ ତାଙ୍କ ଜୀବଦ୍ଦଶାରେ ବାସ୍ତବବାଦୀ ରୂପେ ପାଠକ ଓ ସମାଲୋଚକମାନେ ପ୍ରମାଣ କରିବାକୁ ଚେଷ୍ଟା କରୁଥିବାରୁ ସେ ସେଥିରେ ମର୍ମାହତ ହୋଇ ଲେଖିଥିଲେ, "ଦୁଇଟି ଶବ୍ଦ ବର୍ତ୍ତମାନ ସଚରାଚର ଶୁଣିବାକୁ ମିଳେ, **'Idealistic and realistic'**. ମୁଁ କେଉଁଟି ଏହି ଶେଷ ସମ୍ପ୍ରଦାୟର ଲେଖକ, ଏହି ଦୁର୍ନାମ ହିଁ ସବୁଠାରୁ ବେଶୀ, ଅଥଚ କିପରି ଏହି ଦୁଇଟିକୁ ଭାଗ ଭାଗ କରି ଲେଖାଯାଏ, ତାହା ମୋର ଅଜ୍ଞାତ । **Art** ଜନିସଟା ମନୁଷ୍ୟର ସୃଷ୍ଟି, ସେ **Nature** ନୁହଁ । ସଂସାରରେ ଯାହା କିଛି ଘଟୁଛି—ଏବଂ ଅନେକ କଦର୍ଯ୍ୟ ଓ କୁତ୍ସିତ କଥା ବି ଘଟୁଛି—ତାହା କୌଣସି ରୂପେ ସାହିତ୍ୟର ଉପାଦାନ ନୁହଁ । ପ୍ରକୃତିର ବା ସ୍ୱଭାବର ଅବିକଳ ନକଲ କରିବା **Photography** ହୋଇପାରେ, କିନ୍ତୁ ସେ କଣ ହେବ ଛବି ? ଦୈନିକ ଖବରକାଗଜରେ ଅନେକ

କିଛି ଲୋମହର୍ଷଣ ଭୟାନକ ଘଟନା ଛପା ହୋଇଥାଏ, ସେ କଣ ସାହିତ୍ୟ ? ଚରିତ୍ର-ସୃଷ୍ଟି କଣ ଏତେ ସହଜ ? ମୋତେ ଅନେକେ ଦୟା କରି କହନ୍ତି, "ମହାଶୟ, ମୁଁ ଏପରି ଘଟନା ଜାଣେ ଯେ, ତା ଯଦି ଆପଣଙ୍କୁ କହେ, ସେଥିରେ ଆପଣ ଗୋଟେ ଚମତ୍କାର ବହି ଲେଖିଦେଇ ପାରିବେ।" ମୁଁ କହେ, "ତା ହେଲେ ଆପଣ ସେ ବହିଟା ଲେଖି ପକାନ୍ତୁ।" ସେ କହନ୍ତି, "ତା ହେଲେ ଆଉ ଭାବନା କଣ ? ସେଇଟା ଯେ ଆମ ହାତରେ ହେଉ ନାହିଁ।" ଏମାନେ ଜାଣନ୍ତି ନାହିଁ, କିପରି ମୋର ଚରିତ୍ରଗୁଡ଼ିକ ଗଢ଼ି ଉଠେ। ବାସ୍ତବ ଅଭିଜ୍ଞତାକୁ ମୁଁ ଉପେକ୍ଷା କରୁନାହିଁ, କିନ୍ତୁ ବାସ୍ତବ ଓ ଅବାସ୍ତବର ସମ୍ମିଶ୍ରଣରେ କେତେ ବ୍ୟଥା, କେତେ ସହାନୁଭୂତି, କେତେ ହୃଦୟର ରକ୍ତ ଦେଇ ଏମାନେ ଧୀରେ ଧୀରେ ବଡ଼ ହୋଇ ଫୁଟନ୍ତି, ସେ କଥା ଆଉ କେହି ନ ଜାଣିଲେ ମୁଁ ତ ଜାଣେ। × × × ଇଂରେଜିରେ **Idealistic and realistic** ବୋଲି ଦୁଇଟି ପଦ ଅଛି। ସମ୍ପ୍ରତି କେହି କେହି ଅଭିଯୋଗ ଉତ୍ଥାପିତ କରନ୍ତି ଯେ—"ବଙ୍ଗ ସାହିତ୍ୟ ଅତିରିକ୍ତ ଭାବରେ **Realistic** ହୋଇ ପଡ଼ୁଛି। ଗୋଟାକୁ ବାଦ ଦେଇ ଅନ୍ୟଟା ତିଷ୍ଠି ପାରେ ନାହିଁ, ଅନ୍ତତଃ ଯାହାକୁ ଉପନ୍ୟାସ କୁହାଯାଏ ତାହା ହୋଇପାରେ ନାହିଁ। ତେବେ କିଏ କେତେ ଏ ଦୁଇଟି ମଧ୍ୟରୁ ଗୋଟିକ ପ୍ରତି ଅନୁରକ୍ତ ଦେଖାଇଛି, ତା ନିର୍ଭର କରେ ସାହିତ୍ୟିକର ଶକ୍ତି ଓ ରୁଚି ଉପରେ। କିନ୍ତୁ ଦେଖିବାକୁ ହେବ, ଉପନ୍ୟାସ ଯେପରି ପ୍ରକୃତ ସାହିତ୍ୟ ହୁଏ। କେବଳ ପୁଣ୍ୟର ଜୟ ଓ ପାପର କ୍ଷୟ ଔପନ୍ୟାସିକର ଉଦ୍ଦେଶ୍ୟ ଓ ଉପଜୀବ୍ୟ ହେଲେ ଏହା କେବଳ ନୀତି-ପୁସ୍ତକ ହେବ, କିନ୍ତୁ ରସପୂର୍ଣ୍ଣ କାବ୍ୟସୃଷ୍ଟି ହେବ ନାହିଁ। ନରନାରୀ ହୃଦୟର

ଗୋପନତମ ରହସ୍ୟର ସନ୍ଧାନ ଉପନ୍ୟାସରେ ଦେବାକୁ ହେବ । ଦେଖିବାକୁ ହେବ, ଲେଖକର କବିଚିତ୍ତ ଯେପରି ସାମାଜିକ ଓ ନୈତିକ ବୁଦ୍ଧିର ପଦତଳେ ଆତ୍ମହତ୍ୟା କରି ମରି ନାହିଁ ।"*

ବର୍ତ୍ତମାନ ବିଗ୍ଭର କରିବାର କଥା, ଫକୀରମୋହନଙ୍କର କବିଚିତ୍ତ ଯଦି ନୀତିବୋଧ ଓ ପାପପୁଣ୍ୟର ଜୟଗାନରେ ଭାରାକ୍ରାନ୍ତ ହୋଇ ଆତ୍ମହତ୍ୟା କରିଥାଏ, ତେବେ ସେ ନୀତିବାଦୀ ଓ ଅସହ୍ୟ ଭାବରେ ଆଦର୍ଶବାଦୀ । ସେ ଯଦି କେବଳ ସମାଜକୁ ସଂସ୍କୃତ ଓ ସଂଶୋଧିତ କରିବା ଉଦ୍ଦେଶ୍ୟରେ କଥା-ଶିଳ୍ପରେ ହାତ ଦେଇଥାନ୍ତି, ତେବେ ସେ ସମାଜ-ସଂସ୍କାରକ । କିନ୍ତୁ ସେ କଣ କେବଳ ସମାଜ-ସଂସ୍କାର ପ୍ରବଣତାରେ ଅନୁପ୍ରାଣିତ ହୋଇ ତାଙ୍କ ଉପନ୍ୟାସ ଓ ଗଳ୍ପ ଲେଖିଅଛନ୍ତି ? ଏ ସଂସ୍କାର ପ୍ରବଣତାର ଅନ୍ତରାଳରେ କଣ ତାଙ୍କ ଅନ୍ତରର ପରିସ୍ପନ୍ଦ ନାହିଁ ? ତାଙ୍କ କଥା-ଶିଳ୍ପରେ କଣ ତାଙ୍କର କବି-ମାନସ ଓ ଉଦାର ମାନବୀୟ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇ ନାହିଁ ? ମନୁଷ୍ୟ ଜୀବନର ନିଗୂଢ଼ ଅନୁଭୂତି କଣ ତାଙ୍କ କଥା-ସାହିତ୍ୟରେ ରୂପାୟିତ ହୋଇ ନାହିଁ ? ଏ ସକଳ ପ୍ରଶ୍ନର ଉତ୍ତର ଯଦି ତାଙ୍କ କଥା-ସାହିତ୍ୟରୁ ମିଳେ, ତେବେ ସେ ବାସ୍ତବବାଦୀ ନୁହନ୍ତି, କି ସଂସ୍କାରପ୍ରୟାସୀ ନୁହନ୍ତି, ଏବଂ ନୀତିବୋଧର ସ୍ୱାକ୍ଷର ବହନ କରିଥିଲେହେଁ ସେ ଆଦର୍ଶ-ବାଦୀ ନୁହନ୍ତି । କାରଣ ତାଙ୍କର ଏ ନୀତିବୋଧ ଓ ଆଦର୍ଶନିଷ୍ଠା ଶୈଳିକ ସୁଷମା ଓ ରସୋତ୍ତୀର୍ଣ୍ଣତା ଲାଭ କରିଛି ତାଙ୍କର କଥା-ବସ୍ତୁର ପରିବେଷଣ-ଶୃଙ୍ଖଳାରେ ଏବଂ ନିର୍ମଳ ହାସ୍ୟରସର ମଧୁମୟ

---

* ସ୍ୱଦେଶ ଓ ସାହିତ୍ୟ—ଶ୍ରୀ ଶରଚ୍ଚନ୍ଦ୍ର ଚଟ୍ଟୋପାଧ୍ୟାୟ—ସାହିତ୍ୟ ଓ ନୀତି (ପୃ-୭୦) ।

ସମାବେଶରେ । ଜଣେ ପାଶ୍ଚାତ୍ୟ ସମାଲୋଚକ ଲେଖିଅଛନ୍ତି, **'Our greatest thoughts come from the heart.'** ହୃଦୟର ଏ ଗଭୀର ଅନୁଭୂତି ନଥିଲେ ସାହିତ୍ୟ-ସୃଷ୍ଟି ଅସମ୍ଭବ । ହୃଦୟକୁ ଫକୀରମୋହନ ଗୁରୁତ୍ୱରୂପେ ମାନି ନେଇଥିଲେ ବୋଲି ସାହିତ୍ୟ-ରଚନାରେ ସେ ଥିଲେ କର୍ମଯୋଗୀ । ମନୁଷ୍ୟତ୍ୱର ଆଦର୍ଶ ସନ୍ଧାନ ଥିଲା ତାଙ୍କ ଜୀବନର ମୂଳମନ୍ତ୍ର । ଦେଶବାସୀଙ୍କର ହୃଦୟ ପରିବର୍ତ୍ତନ ଓ ଚିତ୍ତଶୁଦ୍ଧି ସମ୍ପାଦନ ଥିଲା ତାଙ୍କର ମନ୍ତ୍ର । ଏ ଚିତ୍ତଶୁଦ୍ଧି ବିଧାନର ପରିକଳ୍ପନା ନୀତିଶାସ୍ତ୍ରର ଶୁଷ୍କ ଉପଦେଶ ପରି ନୁହଁ । ଏହା ରସାଳ, ସରସ ଓ ମନୋହର । ତାଙ୍କର ନୀତି କିମ୍ବା ରୁଚିବୋଧ କୌଣସି ସଙ୍କୀର୍ଣ୍ଣ ଗଣ୍ଡିରେ ସୀମାବଦ୍ଧ ନଥିଲା । ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମମତ, ରାଜନୈତିକ ମତବାଦ, କିମ୍ବା ଗୋଷ୍ଠୀଗତ ଓ ଜାତିଗତ ଆଦର୍ଶର ମହତ୍ତ୍ୱ ପ୍ରକଟନ କରିନାହାନ୍ତି । ତାଙ୍କର ଜୀବନ-ଦର୍ଶନ ସର୍ବଧର୍ମ ସମନ୍ୱୟ, ଏବଂ ଉଦାର ମାନବିକତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ତାହାଙ୍କୁ ଏ ସାହିତ୍ୟସୃଷ୍ଟି କରିବାକୁ ପ୍ରେରଣା ଯୋଗାଇଥିଲା ତାଙ୍କର ଗଭୀର ସ୍ୱଦେଶପ୍ରୀତି । ତେଣୁ କବି କୀଟ୍‌ସଙ୍କ **(Keats)** ଭାଷାରେ କହିବାକୁ ଗଲେ ଫକୀରମୋହନ ଥିଲେ ଜଣେ ଖାଣ୍ଟି ମଣିଷ । ସେ ଯାହା ରଚନା କରିଯାଇ ଅଛନ୍ତି ତାହାର ମୌଳିକ କାରଣ ହେଲା ତାଙ୍କ ଚିତ୍ତର ସ୍ପନ୍ଦନ, ହୃଦୟର ଅନୁଭୂତି, ମନର ଜାଗରଣ ଏବଂ ପ୍ରତିଭାର ସ୍ଫୁରଣ । କୀଟ୍‌ସ କହିଥିଲେ, **'I am convinced more and more everyday that a fine writer is the most genuine being in the world'.** ଫକୀରମୋହନ ଏହିପରି ଜଣେ ମହାନ୍ ପୁରୁଷ ଥିଲେ ।

ଯେଉଁମାନେ ଆଦର୍ଶବାଦୀ କିମ୍ବା ନୀତିବାଦୀ ବୋଲି ଫକୀରମୋହନଙ୍କୁ ଚିହ୍ନିତ କରନ୍ତି, ଏବଂ ଏହାଦ୍ୱାରା କଥା ସାହିତ୍ୟର

କଳାତ୍ମକ ସୌନ୍ଦର୍ଯ୍ୟ ବ୍ୟାହତ ହୋଇଛି ବୋଲି ମନେ କରନ୍ତି, ସେମାନଙ୍କର ଜଣେ ପାଶ୍ଚାତ୍ୟ ସମାଲୋଚକଙ୍କର ଏହି ଉକ୍ତିଟି ପ୍ରତି ପ୍ରଣିଧାନ ଦେବା ଉଚିତ । ମନୁଷ୍ୟ-ସୃଷ୍ଟିର ଏ ପ୍ରବାହଧାରାକୁ ଅକ୍ଷୁଣ୍ଣ ରଖିବାକୁ ହେଲେ ସାହିତ୍ୟରେ ନୀତିକୁ ସ୍ଥାନ ଦେବାକୁ ହେବ । ତାହା ନହେଲେ ସମାଜରେ ଘୋର ଅଶାନ୍ତି, ବିପ୍ଳବ ଓ ଉପଦ୍ରବର ବହ୍ନିଶିଖା ଦେଖାଯିବ, ଉଚ୍ଛୃଙ୍ଖଳତା, ଅସଂଯମ, ଅନ୍ୟାୟ ଓ ଅପଚାରରେ ସମାଜର ଅସ୍ତିତ୍ୱ ଲୋପ ପାଇବ । ତେଣୁ ସେହି ସମାଲୋଚକ କହନ୍ତି— "All art to be truly great must be moralised. × × × This does not mean that the artist must be consciously didactic or obtrusively ethical. The objects of ethics and art are distinct. The one analyses and instructs, the other embodies and delights." * ଫକୀରମୋହନ ତାଙ୍କର ଅନୁଭୂତି ଓ ଅଭିଜ୍ଞତାକୁ ରୂପ ଦେଇଅଛନ୍ତି । ତେଣୁ ସେ ଜୀବନର ରୂପକାର । ତାଙ୍କର ଉପନ୍ୟାସ ପାଠକ ଚିତ୍ତକୁ ଆନନ୍ଦରେ ଯେପରି ସମ୍ମୋହିତ ଓ ଅଭିଭୂତ କରେ, ସେପରି କମ୍ ଔପନ୍ୟାସିକ କରି ପାରନ୍ତି । ତେଣୁ ସେ ପ୍ରକାଶ୍ୟ କିମ୍ବା ଅସହ୍ୟ ଭାବରେ ଆଦର୍ଶବାଦୀ ନୁହନ୍ତି ।

ଉଚ୍ଚାଙ୍ଗ ଉପନ୍ୟାସ କାହାକୁ କୁହାଯିବ ? ପ୍ରକୃଷ୍ଟ କଥା-ସାହିତ୍ୟ-ଶିଳ୍ପୀ କିଏ ? ଏ ପ୍ରଶ୍ନଗୁଡ଼ିକର ଉତ୍ତର ମିଳେ ମପାସାଙ୍କର ନିମ୍ନଲିଖିତ ଉକ୍ତିରୁ:—"The realist if he is

---

* Hudson—An Introduction to Literature—(P. 170).

**an artist will seek to give us not a banal photographic representation of life, but a vision of it that is fuller, more vivid and more compellingly truthful than even reality itself."** *

ତେବେ ବଙ୍କିମ ଓ ଅନ୍ୟମାନଙ୍କ ବାସ୍ତବବାଦୀ କଥାଶିଳ୍ପୀର ଅସ୍ତିତ୍ୱ କେଉଁଠାରେ ? ଯେଉଁ ଅନ୍ତର୍ଦୃଷ୍ଟି ଓ କଳ୍ପନାଶକ୍ତି ଥିଲେ ସଂସାରର ରୂଢ଼ ଓ ଅସଂଲଗ୍ନ ବାସ୍ତବ ଘଟଣାଠାରୁ ମନୁଷ୍ୟ ଜୀବନର ଅଧିକ ସୁନ୍ଦର, ସୁଗଠିତ ଓ ସୁସଙ୍ଗତ ଆଲେଖ୍ୟ ଲେଖକ ଆମ ଆଗରେ ଉପସ୍ଥାପିତ କରିପାରେ, ସେଇ ତ ଉଚ୍ଚକୋଟୀର ଶିଳ୍ପୀ । କେବଳ ବାସ୍ତବତା ନୁହେଁ, ବାସ୍ତବତାର ବିଭ୍ରାନ୍ତି **"Illusion of reality"** ହିଁ ଉଚ୍ଚାଙ୍ଗ ଶିଳ୍ପର ଲକ୍ଷଣ ।

ତେଣୁ ଫକୀରମୋହନଙ୍କ ଯେଉଁମାନେ ବାସ୍ତବଧର୍ମୀ ଔପନ୍ୟାସିକ କମ୍ୱା ଗାଲ୍ପିକର 'ସିଲମୋହର' ଦିଅନ୍ତି, ସେମାନଙ୍କର ଭିତ୍ତିଭୂମି କେଉଁଠାରେ ?

ଆଜି ଜଣେ ସମାଲୋଚକ ଉପନ୍ୟାସର ସ୍ୱରୂପ ନିର୍ଦ୍ଦେଶ କରିବାକୁ ଯାଇ ଲେଖିଅଛନ୍ତି—"ସାଂସାରିକ ଘଟଣାର ଘାତ-ପ୍ରତିଘାତ ଦ୍ୱାରା ମନୁଷ୍ୟ ହୃଦୟରେ ଅହରହ ଗୋଟିଏ ଆକର୍ଷଣ ବିକର୍ଷଣର ଦ୍ୱନ୍ଦ୍ୱ ଚାଲିଛି । ଏହି ଦ୍ୱନ୍ଦ୍ୱର ସୂକ୍ଷ୍ମ ଆଲୋଚନା ଓ ଏହାର ସଂଘାତ ମାଧ୍ୟମରେ ମନୁଷ୍ୟ ଜୀବନର ଗୋଟିଏ ବୃହତ୍ତର, ବ୍ୟାପକତର ଓ ଶାଶ୍ୱତ ସତ୍ୟ ପ୍ରକାଶ କରିବା—ଏହାକୁହିଁ

---

* ଉପନ୍ୟାସେର କଥା—ଦେବୀପଦ ଭଟ୍ଟାଚାର୍ଯ୍ୟ (ପୃ ୧୫୪) ।

ଉତ୍କୃଷ୍ଟ ଉପନ୍ୟାସ କୁହାଯାଇପାରେ ।" ଏପରି ଯେଉଁ ଉପନ୍ୟାସ ତାହା ବାସ୍ତବବାଦୀ ନା ଆଦର୍ଶବାଦୀ ? ସୂକ୍ଷ୍ମ ଆଲୋଚନା ଅପେକ୍ଷା କରେ ତୀକ୍ଷ୍ଣ ବୁଦ୍ଧିବୃତ୍ତି, ନିରପେକ୍ଷ ବିଚାର ଶକ୍ତି ଓ ମନନ-ଶୀଳତା । ଫକୀରମୋହନ ତାଙ୍କ ଉପନ୍ୟାସରେ ଚରିତ୍ରମାନଙ୍କର ପାରିପାର୍ଶ୍ୱିକ ଅବସ୍ଥାର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଦେଇଅଛନ୍ତି । ଚରିତ୍ର ବିଶ୍ଳେଷଣରେ ସେ ମଧ୍ୟ ପଟୁ । ତୁଚ୍ଛାତିତୁଚ୍ଛ ଘଟନା ତାଙ୍କ ଉପନ୍ୟାସ ଓ ଗଳ୍ପରୁ ବାଦ ଯାଇନାହିଁ । ଏ ଦିଗରୁ ତାଙ୍କୁ ହୁଏତ ବାସ୍ତବବାଦୀ କୁହାଯାଇପାରେ । କିନ୍ତୁ ସେ ଯେଉଁଠାରେ ସମ୍ବେଦନ-ଶୀଳତା ଓ ବେଦନାବୋଧର ପ୍ରାଚୁର୍ଯ୍ୟରେ ଉଦ୍‌ବେଳିତ ହୋଇ ନରନାରୀର ନିଗୂଢ଼ ଅନୁଭୂତିର ବିବରଣ ପ୍ରକାଶ କରିଅଛନ୍ତି, ଯଥା—'ମାମୁଁ' ରେ ଗୃହମଣିର ବୈଧବ୍ୟଜନିତ ଦୁଃଖ, 'ପ୍ରାୟଶ୍ଚିତ୍ତ' ରେ କୁଅଁର ଗୋବିନ୍ଦଚନ୍ଦ୍ର ଶ୍ୱଶୁରାଳୟରେ ନିର୍ମମ ଭାବରେ ପ୍ରହୃତ ହୋଇ କଟକ ଡାକ୍ତରଖାନାକୁ ଗଲାପରେ ଇନ୍ଦୁମତୀର ତୀବ୍ର ଓ ମର୍ମଘାତୀ ଅନୁଶୋଚନା, 'ଛ ମାଣ ଆଠ ଗୁଣ୍ଠ'ରେ ସତୀ ସାଧ୍ୱୀ ସାଆନ୍ତାଣୀଙ୍କର ମନୋବେଦନା, ଏବଂ ଏପରିକି 'ରେବତୀ' ଗଳ୍ପରେ ବାସୁର ଅକାଳ ମୃତ୍ୟୁରେ ରେବତୀର ଦୁଃଖାନୁଭୂତି ଓ ଅବସାଦ, ସେଠାରେ ମନଗହନର ଅକୁହା କାହାଣୀ କହିବାକୁ ଯାଇ ସେ ବସ୍ତୁତାନ୍ତ୍ରିକତାକୁ ଅତିକ୍ରମ କରିଅଛନ୍ତି ।

ବଙ୍ଗଳାର ଉପନ୍ୟାସ-ସମ୍ରାଟ ଶରତ୍‌ଚନ୍ଦ୍ରଙ୍କର ସାହିତ୍ୟ-ବିଚାର ଓ ସାହିତ୍ୟାଦର୍ଶ ସମ୍ବନ୍ଧରେ ଏହି ଆଦର୍ଶବାଦ ଓ ବାସ୍ତବବାଦର ଦ୍ୱନ୍ଦ୍ୱକୁ ଲକ୍ଷ୍ୟ କରି ସୁସମାଲୋଚକ ଶ୍ରୀ ସୁବୋଧଚନ୍ଦ୍ର ସେନଗୁପ୍ତ ଲେଖିଅଛନ୍ତି—"ଆଦର୍ଶ ଖେଚର ପଦାର୍ଥ ନୁହେଁ, ତାହାକୁ ପାର୍ଥିବ ଜୀବନରେ ଅନ୍ତତଃ ଆଂଶିକଭାବରେ ସତ୍ୟ ହେବାକୁ ପଡ଼ିବ ।

ତାହାହିଁ ଆଦର୍ଶ, ଯାହା ଆମ୍ଭେମାନେ ଅନୁସରଣ କରୁ, ଅଥବା ଅନୁସରଣ କରିବା ଉଚିତ ବୋଲି ମନେକରୁ । ବାସ୍ତବପନ୍ଥୀ-ମାନେ ନିଛକ ବାସ୍ତବତା ନେଇ ବ୍ୟସ୍ତ ରହନ୍ତି ନାହିଁ । ସେମାନେ ମୂଲ୍ୟ ବିଗ୍ଭର କରନ୍ତି । ଆମର ଆଦର୍ଶ ନଥିଲେ ଆମ ନିକଟରେ କୌଣସି ପଦାର୍ଥର କୌଣସି ମୂଲ୍ୟ ରହିବ ନାହିଁ । ବାସ୍ତବପନ୍ଥୀ-ମାନେ କହନ୍ତି—"ଏହି ସକଳ ଘଟଣା ଘଟିଛି ଅଥବା ପ୍ରାୟ ଘଟିଥାଏ । ଏହାର ବର୍ଣ୍ଣନା ଦେବା ସାହିତ୍ୟିକର ଉଚିତ । ଏହି ଔଚିତ୍ୟବୋଧ ବାସ୍ତବ ଘଟଣା ମଧ୍ୟରେ ନାହିଁ । ଏହା ବାସ୍ତବପନ୍ଥୀର ଅବାସ୍ତବ ଆଦର୍ଶ ।"

ଏ ଦିଗରୁ ବିଗ୍ଭର କଲେ ଆଦର୍ଶବାଦ ଓ ବସ୍ତୁତାନ୍ତ୍ରିକତା କେହି କାହାଠାରୁ ପୃଥକ ନୁହନ୍ତି ।

ସାହିତ୍ୟଦର୍ପଣକାର ବିଶ୍ୱନାଥଙ୍କର ମତ—"ବସ୍ତୁକୁ ସୁନ୍ଦର ହେବାକୁ ହେଲେ ସେଥିରେ ରସ ଥିବା ଆବଶ୍ୟକ । ରସହିଁ ସୌନ୍ଦର୍ଯ୍ୟର ଜୀବନ । ଯେଉଁ ପରିମାଣରେ ବସ୍ତୁ ଆମ୍ଭମାନଙ୍କ ମନରେ ରସୋଦୟ କରିଦିଏ, ସେହି ପରିମାଣରେ ସେ ସୁନ୍ଦର । ସୁତରାଂ ମନର ରଙ୍ଗରେ ନ ରଙ୍ଗେଇଲେ ବସ୍ତୁ ସୁନ୍ଦର ହୁଏ ନାହିଁ ।" ଦାର୍ଶନିକ ହେଗେଲ୍ ମଧ୍ୟ କହିଛନ୍ତି—"ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ମଧ୍ୟରେ ଯେତେବେଳେ ଭାବର ଦ୍ୟୁତି ଦେଖାଯାଏ, ସେତେବେଳେ ଯାଇ ସେ ସୁନ୍ଦର ହୋଇ ଉଠେ ।" ଫକୀରମୋହନଙ୍କ କଥା-ଶିଳ୍ପରେ ଏ "ଭାବର ଦ୍ୟୁତି" ଅପ୍ରଚୁର ନୁହଁ, ତେଣୁ ସେ ନିଛକ ବାସ୍ତବ-ଧର୍ମୀ ନୁହନ୍ତି ।

ତଥାପି ବାସ୍ତବତା ଯେ ତାଙ୍କ କଥା-ସାହିତ୍ୟରେ ନାହିଁ, ଏ କଥା କୁହାଯାଇ ନପାରେ । କିନ୍ତୁ ଏ ବାସ୍ତବତାକୁ ବ୍ୟାପକ

ଦୃଷ୍ଟିକୋଣରୁ ବିଗୃହ କରିବାକୁ ହେବ । ଏ ବାସ୍ତବତାର ଅନ୍ୟ ନାମ ଯଥାସ୍ଥିତିବାଦ ନୁହେଁ । "ଗଲି, ଅଇଲି, ଯାହା ଦେଖିଲି ତା କହିଲି"—ଏ ବାସ୍ତବତାର ଲକ୍ଷଣ ନୁହେଁ । ତାହା ହୋଇଥିଲେ ଫକୀରମୋହନଙ୍କ ଉପନ୍ୟାସ ଅଜ ହୋଇଥାନ୍ତା ସାମ୍ବାଦିକର ବିବୃତ କିମ୍ବା ଘଟନାର ଅନୁଲିପି ମାତ୍ର । 'ଛ ମାଣ ଅଠ ଗୁଣ୍ଠ'ରେ ପୁତ୍ରଲାଭ କରିବା ନିମନ୍ତେ ଧୂର୍ତ୍ତ ଚମ୍ପାର କୁପ୍ରରୋଚନାରେ ସାରିଆର ଦେଉଳ ତିଆରି କରିବା ପ୍ରସଙ୍ଗ, 'ମାମୁ'ରେ ନାଜର ନଟବର ଦାସଙ୍କର ବିଧବା ଭଉଣୀର ଧନ ସମ୍ପତ୍ତି ଲୁଣ୍ଠନ କରିବା, ଏବଂ 'ପ୍ରାୟଶ୍ଚିତ୍ତ'ରେ ସରଳବିଶ୍ୱାସୀ ଗୋବିନ୍ଦଚନ୍ଦ୍ର ସମାଜ-ସଂସ୍କାରକ ହେବାକୁ ଯାଇ କପଟୀ ଓ କୁଚକ୍ରୀ କଲେଜ ବନ୍ଧୁଙ୍କର ଶିକାର ହେବା,—ଏ ସକଳ କେବଳ ଘଟନାର ଅନୁଲେଖ କିମ୍ବା ବିବୃତ ନୁହେଁ । ଏଥିରେ ଫକୀରମୋହନଙ୍କର କଳ୍ପନା, ଚିନ୍ତା ଓ ଦୂର-ଦୃଷ୍ଟିର ଅନୁପ୍ରବେଶ ଦିବାଲୋକ ପରି ସ୍ପଷ୍ଟ । ତେଣୁ ଫକୀର-ମୋହନଙ୍କୁ ଯଦି ବାସ୍ତବବାଦୀ କଥା-ଶିଳ୍ପୀ ରୂପେ ଗ୍ରହଣ କରିବାକୁ ହେବ, ତେବେ (**Realism**) କିମ୍ବା ବାସ୍ତବବାଦର ଏହି ସୁଚିନ୍ତିତ ସଂଜ୍ଞାଟି ପ୍ରତି ସଚେତନ ହେବାକୁ ପଡ଼ିବ ।

ସେ ସଂଜ୍ଞାଟି ହେଉଛି, ଇଂରେଜୀ '**Real**' କଥାଟିର ବାସ୍ତବ ଭାଷାନ୍ତର 'ଅତିମାତ୍ରାରେ ସ୍ଥୂଳ' । '**Real**' କଥାଟାର ଅସଲ ଅର୍ଥ 'ସତ୍ୟ' । ଯାହା ସମଗ୍ର ଯୁଗ ଜୀବନ ସହିତ ଗଭୀର ସଙ୍ଗତି ରକ୍ଷା କରି ବୃହତ୍ତର ଯୁଗ-ମାନସରେ ସତ୍ୟରୂପେ ପ୍ରତିଭାତ ଓ ବିକଶିତ ହୋଇ ଉଠିଅଛି, ତାହା 'ରିୟଲ୍'— ସେ ନାଟକ ବର୍ଣ୍ଣନା ହେଉ, ରଙ୍ଗୀନ କଳ୍ପନା ହେଉ ବା ଗଭୀର ଆଦର୍ଶ ନିଷ୍ଠା ହେଉ । × × × କୌଣସି ଗୋଟିଏ ବିଶେଷ ଯୁଗର ଓ ବିଶେଷ ସମାଜର ସତ୍ୟ ଆଦର୍ଶ ଗ୍ରହଣ କରି ଏବଂ ସର୍ବତୋ-

ଭାବରେ ସେହି ଆଦର୍ଶ ପ୍ରଚାର କରେ, ଏବଂ ସେହି ଆଦର୍ଶରେ ଜାତିକୁ ଉଦ୍‌ବୁଦ୍ଧ କରେ ଯେଉଁ ସାହିତ୍ୟ ବା ଶିଳ୍ପସୃଷ୍ଟି, ତାହାହିଁ 'ରିୟାଲିଷ୍ଟିକ', ଏବଂ ଯେଉଁ ସାହିତ୍ୟ ବା ଶିଳ୍ପ ଯୁଗବିରୋଧୀ, ଅର୍ଥାତ୍ ତତ୍‌କାଳୀନ ସମାଜର ସତ୍ୟ-ଜୀବନର ପରିପନ୍ଥୀ, ତାହାହିଁ ତଥାକଥିତ 'ଆଇଡ଼ିୟାଲିଜମ୍' ବୋଲି ଧିକ୍କୃତ । *

ଫକୀରମୋହନଙ୍କ ବାସ୍ତବବାଦ ଯୁଗ-ଜୀବନର ସମସ୍ୟା ଓ ସତ୍ୟ ଉପରେ ପ୍ରତିଷ୍ଠିତ । ସେଠାରେ ଆଦର୍ଶନିଷ୍ଠା ସହିତ ବାସ୍ତବ-ବାଦତାର କୌଣସି ବିରୋଧର ପ୍ରଶ୍ନ ନାହିଁ; ବରଂ ଗଭୀର ଆଦର୍ଶ-ନିଷ୍ଠାହିଁ ସେଠାରେ ବାସ୍ତବବାଦତାର ପ୍ରାଣ ।

ତେବେ କଣ ହିନ୍ଦୀ ସାହିତ୍ୟର ଉପନ୍ୟାସ-ସମ୍ରାଟ ପ୍ରେମ-ଚନ୍ଦଙ୍କ ପରି ଫକୀରମୋହନ ଆଦର୍ଶୋନ୍ମୁଖୀ ଯଥାର୍ଥବାଦୀ ? ଯଥା ସ୍ଥାନରେ ଏହାର ବିସ୍ତୃତ ଆଲୋଚନା କରାଯିବ ।



* ଶଶିଭୂଷଣ ଦାସ ଗୁପ୍ତ—'ଶିଳ୍ପଲିପି'—'ରିୟାଲିଜମ୍' ।

# କଥାବସ୍ତୁ

ଉପନ୍ୟାସର କଥାବସ୍ତୁ କିମ୍ବା ଅଖ୍ୟାନଭାଗ (Plot) ଓ ସାଧାରଣ ଗଳ୍ପ ମଧ୍ୟରେ ପାର୍ଥକ୍ୟ ଅଛି । ଗଳ୍ପର ଉଦ୍ଦେଶ୍ୟ ଶ୍ରୋତା କିମ୍ବା ପାଠକର ଚିତ୍ତରଞ୍ଜନ କରିବା ଓ ତାର ଶିଶୁସୁଲଭ କୌତୂହଳ ଉଦ୍ଦୀପିତ କରିବା । କିନ୍ତୁ ଉପନ୍ୟାସର ଗଳ୍ପାଂଶରେ ପାଠକ ଖୋଜେ କାର୍ଯ୍ୟକାରଣ ସମ୍ବନ୍ଧ, ବିଷୟବସ୍ତୁର ସୁଦୃଢ଼ ବନ୍ଧନ ଏବଂ ସେଥିରେ ଔପନ୍ୟାସିକର ଦୃଷ୍ଟିଭଙ୍ଗୀର ଅଭିବ୍ୟକ୍ତି । ଯେଉଁ ଗଳ୍ପର ଉଦ୍ଦେଶ୍ୟ କେବଳ ଚିତ୍ତରଞ୍ଜନ କରିବାରେ ସୀମାବଦ୍ଧ, ତାହା ଏ ଯୁଗର ସଂସ୍କୃତିସମ୍ପନ୍ନ ପାଠକ ପ୍ରତି ଅନୁପଯୋଗୀ । ତାହା ଉଚ୍ଚାଙ୍ଗ କଥା-ସାହିତ୍ୟ ନୁହଁ । ଜଣେ ପାଶ୍ଚାତ୍ୟ ସମାଲୋଚକ ଗଳ୍ପର ସ୍ୱରୂପ ନିର୍ଦ୍ଦେଶ କରିବାକୁ ଯାଇ ଲେଖିଅଛନ୍ତି—'ରଜା ମଲେ ଏବଂ ତା ପରେ ରାଣୀ ମଲେ'— ଘଟନାର ଏହି ଯେଉଁ କାଳକ୍ରମିକ ବର୍ଣ୍ଣନା, ଏହାକୁ କୁହାଯାଏ ଗଳ୍ପ । କିନ୍ତୁ ଯଦି କୁହାଯାଏ, 'ରଜା ମଲେ ଏବଂ ତା ପରେ ରାଣୀ ଦୁଃଖରେ ମରିଗଲେ', ତେବେ ଏଥିରେ କେବଳ କାଳକ୍ରମିକ ବର୍ଣ୍ଣନା ନାହିଁ, ଅଛି କାର୍ଯ୍ୟକାରଣ ସମ୍ବନ୍ଧ । ଏହା ଉପନ୍ୟାସର ଗଳ୍ପାଂଶ କିମ୍ବା କଥାବସ୍ତୁ । ଗଳ୍ପ ହୋଇଥିଲେ ଶ୍ରୋତା ପଚାରେ— 'ତା ପରେ କଣ ହେଲା ?' କିନ୍ତୁ ଉପନ୍ୟାସର କଥାବସ୍ତୁ ହୋଇଥିଲେ ପାଠକ କିମ୍ବା ଶ୍ରୋତା ପଚାରେ—"ଏହା କାହିଁକି ଘଟିଲା ? ଏପରି ଘଟିବା ତ ସଚରାଚର ଦେଖାଯାଏ ନାହିଁ ? ଏ ତ ସମ୍ଭବ

ନୁହଁ ?” ଉପନ୍ୟାସର କଥାବସ୍ତୁକୁ ଭଲଭାବରେ ବୁଝିବା ନିମନ୍ତେ ଲୋଡ଼ା ପାଠକର ବୁଦ୍ଧି, ସ୍ମୃତିଶକ୍ତି, ନ୍ୟାୟଶାସ୍ତ୍ରରେ ସମଧିକ ପ୍ରବେଶ ଏବଂ ଭାବୁକତା । ତେଣୁ ସଭ୍ୟତା ଓ ସଂସ୍କୃତିର ଅଗ୍ରଗତି ଓ ପ୍ରସାର ସଙ୍ଗେ ସଙ୍ଗେ ମନୁଷ୍ୟ ଆଜି କେବଳ ତାର ଚିତ୍ତରଞ୍ଜନ କରିବାରେ ତୃପ୍ତ ନୁହଁ, ସେ ମନୁଷ୍ୟ ଜୀବନ ସମ୍ବନ୍ଧରେ ଅନେକ କଥା ଜାଣିବାକୁ ଚାହେଁ । ତାର ଚିନ୍ତାଶୀଳତାକୁ ସେ ଉନ୍ନତ ଓ ମାର୍ଜିତ କରିବାକୁ ଚାହେଁ । ସେ ଚାହେଁ, ଖାଣ୍ଟି ଉପନ୍ୟାସ-ରଚୟିତା କେବଳ ଗଳ୍ପ ପରେ ଗଳ୍ପ କିମ୍ବା ଘଟନା ପରେ ଘଟନା ବର୍ଣ୍ଣନା କରି ତାର ଚିତ୍ତ ହରଣ କରୁନାହିଁ, ଯେ ଉପନ୍ୟାସରେ ବାସ୍ତବ ମାନବ-ଜୀବନକୁ ପ୍ରତ୍ୟକ୍ଷ କରୁଛି, ମନୁଷ୍ୟ ଜୀବନର ବିଚିତ୍ର ଲୀଳାର ରସ ଆସ୍ୱାଦନ କରୁଛି ଏବଂ ନିଜ ଆଖି ଆଗରେ ବିଚିତ୍ର ମନୁଷ୍ୟ ଜୀବନର ଏକ ସୁନ୍ଦର ଆଲେଖ୍ୟ ଦେଖିପାରୁଛି । ଔପନ୍ୟାସିକ କେବଳ ପାଠକ-ଚିତ୍ତରେ ସାରସ୍ୱତ ଆନନ୍ଦ ନୁହଁ, ଏକ ଜାତୀୟ ସାରସ୍ୱତ ବିଶ୍ୱାସ ଜାଗରିତ କରେ—ଯେଉଁ ବିଶ୍ୱାସ କିମ୍ବା ବିଭ୍ରାନ୍ତି ଫଳରେ ଉପନ୍ୟାସବର୍ଣ୍ଣିତ ଘଟନା ଓ ଚରିତ୍ରାବଳୀ ପ୍ରତ୍ୟକ୍ଷ ସତ୍ୟପରି ପାଠକ ସମ୍ମୁଖରେ ଜୀବନ୍ତ ଏବଂ ବାସ୍ତବ ହୋଇ ଉଠେ । ଏହି ଆନନ୍ଦମିଶ୍ରିତ ବିଶ୍ୱାସ ଓ ବାସ୍ତବବୋଧର ପ୍ରଭାବରେ ପାଠକ ନିଜ ଜୀବନର ସୁଖ ଦୁଃଖକୁ ଯୁକ୍ତ କରି ଉପନ୍ୟାସର କାଳ୍ପନିକ ଚରିତ୍ରାବଳୀର ସୁଖ, ଦୁଃଖ, ଆଶା, ନୈରାଶ୍ୟ, ହସ ଓ କାନ୍ଦ ସହିତ ନିଜକୁ ଅଲକ୍ଷିତଭାବରେ ମିଶାଇଦେଇ ସେମାନଙ୍କ ପ୍ରତି ସହାନୁଭୂତିସମ୍ପନ୍ନ ହୋଇଉଠେ । କାବ୍ୟପାଠର ଆନନ୍ଦ ନିର୍ଲିପ୍ତ । କିନ୍ତୁ ଉପନ୍ୟାସ ପାଠରେ ଚରିତ୍ରମାନଙ୍କ ଜୀବନାନୁଭୂତି ସହିତ ପାଠକମାନଙ୍କର ଏ ଯେଉଁ ଆତ୍ମୀୟତା ଓ ସଂବେଦନଶୀଳତା, ସେମାନଙ୍କ ସୁଖଦୁଃଖରେ ପ୍ରାଣକୁ ଭସାଇ ଦେବାର

ଏ ଯେଉଁ ସାରସ୍ୱତ ତୃପ୍ତିର ବିଳାସ, ତାହା କାବ୍ୟ ପାଠରେ ନାହିଁ । କାରଣ କାବ୍ୟ କବିତା କବିର ଭାବାବେଗ ଓ ଉଚ୍ଛ୍ୱାସର ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତି । ଏଥିରେ ରକ୍ତମାଂସଧାରୀ ଶରୀରୀ ମନୁଷ୍ୟର ପ୍ରତ୍ୟକ୍ଷ ପରିଚୟ ପାଠକକୁ ସେତେ ମିଳେ ନାହିଁ । ଉପନ୍ୟାସ ସାହିତ୍ୟର ବାସ୍ତବଧର୍ମ କାବ୍ୟ ସାହିତ୍ୟରେ ନାହିଁ । ଆଧୁନିକ ଉପନ୍ୟାସକୁ କେହି କେହି ବର୍ତ୍ତମାନ 'ମହାକାବ୍ୟ' ଆଖ୍ୟା ଦେଲେଣି । କିନ୍ତୁ ଔପନ୍ୟାସିକର ବିଶ୍ଳେଷଣୀ ପ୍ରତିଭା, ପୁଙ୍ଖାନୁପୁଙ୍ଖ ଓ ବାସ୍ତବନିଷ୍ଠ ବର୍ଣ୍ଣନା-ପରିପାଟୀର ପରାକାଷ୍ଠା ମହାକାବ୍ୟରେ ଖୋଜିବାକୁ ଚେଷ୍ଟା କରିବା ବୃଥା । ଉପନ୍ୟାସରେ ଘଟନା-ବିନ୍ୟାସ ଓ ଚରିତ୍ରାଙ୍କନ ଯେପରି ବାସ୍ତବମୁଖୀ ଏବଂ ସ୍ୱାଭାବିକ ହେବ, ଔପନ୍ୟାସିକକୁ ସେଥିପ୍ରତି ସତର୍କ ଦୃଷ୍ଟି ଦେବାକୁ ପଡ଼େ । କଥାବାର୍ତ୍ତା, ଭାବଭଙ୍ଗୀ, ହାବଭାବ, ଗତିବିଧି, ଆଚାରବିଚାର ଓ ଗୁଲ୍‌ଚଳନରେ ଉପନ୍ୟାସବର୍ଣ୍ଣିତ ଚରିତ୍ରମାନେ ଯେତିକି ସ୍ୱାଭାବିକ ହେବେ, ଔପନ୍ୟାସିକ ପାଠକମନରେ ଗଭୀର ସାରସ୍ୱତ ଆନନ୍ଦ ଓ ବିଶ୍ୱାସ ଉଦ୍ରେକ କରିବାରେ ସେତିକି ସମର୍ଥ ହେବ । ତେଣୁ ରୂପକଥା ଶିଶୁମାନଙ୍କର, କିନ୍ତୁ ଉପନ୍ୟାସ ବୁଦ୍ଧିଯୁକ୍ତ ମନର ।

ବର୍ତ୍ତମାନ ପ୍ରଶ୍ନ ଉଠିପାରେ ଏହି ଚରିତ୍ରଚିତ୍ରଣ ସହିତ ଗଳ୍ପାଂଶ କିମ୍ବା ଘଟନା ସମାବେଶର ସମ୍ବନ୍ଧ କଣ ? ଅତ୍ୟାଧୁନିକ ଉପନ୍ୟାସରେ ଗଳ୍ପାଂଶ ନାହିଁ କି ଚରିତ୍ରଚିତ୍ରଣ ନାହିଁ । ଏହା ପ୍ରଧାନତଃ ମନସ୍ତାତ୍ତ୍ୱିକ । ମନୁଷ୍ୟର ଚେତନା-ପ୍ରବାହ କିମ୍ବା ଅବଚେତନ ମନର ଦୁର୍ଜ୍ଞେୟ ରହସ୍ୟ ଉଦ୍‌ଘାଟନ କରିବାରେ ବର୍ତ୍ତମାନ ଔପନ୍ୟାସିକମାନେ ସଚେଷ୍ଟ । କିନ୍ତୁ ଉପନ୍ୟାସ-ଶିଳ୍ପରେ ମନସ୍ତତ୍ତ୍ୱର ଏହି ଦୁର୍ନିବାର ପ୍ରଭାବ ପଡ଼ିବା ପୂର୍ବରୁ ବିଷ୍ଣୁ

ସାହିତ୍ୟରେ ଯେଉଁ ସବୁ ଉପନ୍ୟାସ ରଚିତ ହୋଇଥିଲି ତାହା ମୁଖ୍ୟତଃ ଚରିତ୍ରପ୍ରଧାନ । ତେବେ କୌଣସି କୌଣସି ସାହିତ୍ୟ ସମାଲୋଚକ ଉପନ୍ୟାସକୁ ଦୁଇଭାଗରେ ବିଭକ୍ତ କରନ୍ତି; ଯଥା— ଗଳ୍ପ କିମ୍ବା ଘଟଣାପ୍ରଧାନ ଏବଂ ଚରିତ୍ରପ୍ରଧାନ । ଯେଉଁ ଉପନ୍ୟାସରେ କେବଳ କେତେକ ଦୁଃସାହସିକ କାର୍ଯ୍ୟକଳାପର ବର୍ଣ୍ଣନା ଥାଏ, ଡକାୟତ ଓ ହତ୍ୟା ବିଭୀଷିକାର ବିବରଣୀ ଲିପିବଦ୍ଧ ହୋଇଥାଏ, କିମ୍ବା ଲେଖକର ବ୍ୟକ୍ତିଗତ ଅନୁଭୂତି ଗଳ୍ପାକାରରେ ପ୍ରକାଶ ପାଇଥାଏ, ତାକୁ ଘଟଣାପ୍ରଧାନ ଉପନ୍ୟାସ କୁହାଯାଇପାରେ । କିନ୍ତୁ ଯେଉଁଠାରେ ଲକ୍ଷ୍ୟ ହେଉଛି ନର-ନାରୀଙ୍କର ଚରିତ୍ରଚିତ୍ରଣ କରିବା, ତାହା ଚରିତ୍ରପ୍ରଧାନ ଉପନ୍ୟାସ । କେହି କେହି ମଧ୍ୟ ଉପନ୍ୟାସକୁ ନିମ୍ନଲିଖିତ ଶ୍ରେଣୀ-ମାନଙ୍କରେ ବିଭକ୍ତ କରନ୍ତି । ଯଥା— **(1) Novels of action and character**—ଘଟଣା ଏବଂ ଚରିତ୍ରପ୍ରଧାନ ଉପନ୍ୟାସ, **(2) The Dramatic novel**—ନାଟକୀୟ ଉପନ୍ୟାସ, **(3) Period novel**—ସାମୟିକ ଉପନ୍ୟାସ ଏବଂ **(4) Regional novel**—ଆଞ୍ଚଳିକ ଉପନ୍ୟାସ ପ୍ରଭୃତି । ଏହା ସହିତ ସଂଯୋଜନା କରାଯାଇପାରେ ଆତ୍ମଜୀବନୀମୂଳକ ଉପନ୍ୟାସ, ମନସ୍ତାତ୍ତ୍ୱିକ ଉପନ୍ୟାସ, ଐତିହାସିକ ଉପନ୍ୟାସ, ରାଜନୈତିକ ଉପନ୍ୟାସ ଏବଂ ସମସ୍ୟାମୂଳକ ଉପନ୍ୟାସ ।

କିନ୍ତୁ ଘଟଣାପ୍ରଧାନ ଓ ଚରିତ୍ରପ୍ରଧାନ ଉପନ୍ୟାସ ମଧ୍ୟରେ ସେତେ ପାର୍ଥକ୍ୟ ନାହିଁ । ଘଟଣାର ସଂସ୍ଥାନ କରାଯାଇଥାଏ ଚରିତ୍ରଚିତ୍ରଣ ନିମନ୍ତେ ଏବଂ ଚରିତ୍ରର ବିକାଶ, ଗତିଶୀଳତା ଏବଂ ପରିବର୍ତ୍ତନ ନିମନ୍ତେ ଅବଶ୍ୟକ ନାନା ଘଟଣାର ସମାବେଶ, ପାରିପାର୍ଶ୍ୱିକ ଅବସ୍ଥାର ଉପସ୍ଥାପନ ଏବଂ ନାନା ଗୌଣ ଚରିତ୍ରର

ଅବତାରଣା । ତେଣୁ କଥାବସ୍ତୁ ଏବଂ ଚରିତ୍ରଚିତ୍ରଣ ଉଭୟେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ।

ଉପନ୍ୟାସର ନିମ୍ନଲିଖିତ ବିଭିନ୍ନ ସଂଜ୍ଞାମାନଙ୍କ ପ୍ରତି ପ୍ରଣିଧାନ ଦେଲେ ଉପନ୍ୟାସରେ କଥାବସ୍ତୁର ସ୍ଥାନ କେଉଁଠାରେ, ଏବଂ ମନୁଷ୍ୟ ଜୀବନର ଗୋଟିଏ ବୃହତ୍ତର, ବ୍ୟାପକତର ଓ ଶାଶ୍ୱତ ସତ୍ୟକୁ ପ୍ରକାଶ କରିବାକୁ ହେଲେ ସାଂସାରିକ ଘଟଣାର ଘାତ ପ୍ରତିଘାତର ବିଶ୍ଳେଷଣ ଓ ଆଲୋଚନା ଔପନ୍ୟାସିକର କପର ଏକ ଅନିବାର୍ଯ୍ୟ ଶିଳ୍ପକର୍ମ, ତାହାର ଏକ ସ୍ପଷ୍ଟ ଆଭାସ ମିଳେ । ଜଣେ ସମାଲୋଚକଙ୍କ ମତରେ ଉପନ୍ୟାସର ପ୍ରକୃତି ଏହିପରି:—

(୧) ଲେଖକର ବ୍ୟକ୍ତିଗତ ଜୀବନଦର୍ଶନ ଓ ଅନୁଭୂତି କୌଣସି କାହାଣୀକୁ ଅବଲମ୍ବନ କରି ଶିଳ୍ପରେ ରୂପାୟିତ ହେଲେ ତାହାକୁ ଉପନ୍ୟାସ କୁହାଯାଇପାରେ ।

(୨) ଉପନ୍ୟାସର କାହାଣୀ ବା ପ୍ଲଟ ହେଲା ତାହାର ପ୍ରଧାନ ଅଙ୍ଗ । ଏହି କାହାଣୀକୁ କାର୍ଯ୍ୟ କାରଣ ସୂତ୍ରରେ ଆବଦ୍ଧ କରି ଏବଂ ସରସ ସୁନ୍ଦର କରି ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ସାର୍ଥକ ଔପନ୍ୟାସିକର ପ୍ରଧାନ କର୍ତ୍ତବ୍ୟ । ଅସଲଗ୍ନ ଏବଂ ଶିଥିଳ ଆଖ୍ୟାନଭାଗ ଉପନ୍ୟାସ ପକ୍ଷରେ ଗୋଟିଏ ମାରାତ୍ମକ ତ୍ରୁଟି ।

(୩) ଏହି କାହାଣୀ ତାହାକୁ ଆଶ୍ରୟ କରି ଗଢ଼ି ଉଠିବ, ତାର କୌଣସି ଧରାବନ୍ଧା ନିୟମ ନାହିଁ । କିନ୍ତୁ ଦେଖିବାକୁ ହେବ ତାହା ଯେପରି ସୁସମ୍ବଦ୍ଧ ହୁଏ ।

(୪) କାହାଣୀର ଅସଲ ଉଦ୍ଦେଶ୍ୟ ହେଲା ଚରିତ୍ର ସୃଷ୍ଟି କରିବା ଏବଂ ଏହି ଚରିତ୍ରାବଳୀ ମଧ୍ୟରେ ଲେଖକର ଜୀବନ ଦର୍ଶନ ଏବଂ ଜୀବନାନୁଭୂତି ପ୍ରକାଶିତ ହେବା ।

(୫) ବାଣୀଭଙ୍ଗୀ ଉପରେ ଔପନ୍ୟାସିକଙ୍କୁ ପ୍ରଖର ଦୃଷ୍ଟି ଦେବାକୁ ହେବ । ଲେଖକର ଭାଷା ଓ ରଚନାଶୈଳୀ ଦୁର୍ବଳ ହେଲେ ଭଲ କଥାବସ୍ତୁର ବି ଅପମୃତ୍ୟୁ ଘଟେ ।

ତାହାହେଲେ ଦେଖାଯାଉଛି, କଥାବସ୍ତୁ କିମ୍ବା ଆଖ୍ୟାନ-ଭାଗର ସ୍ଥାନ ଉପନ୍ୟାସରେ କେତେ ଉପରେ । କେବଳ ଘଟନା କିପରି ଘଟିଲା ସେତକ ଦେଖାଇ ଦେଇ ଔପନ୍ୟାସିକ ନିଶ୍ଚିନ୍ତ ରହେ ନାହିଁ । କିପରି ପରିସ୍ଥିତି ଓ ପରିବେଶ ମଧ୍ୟରେ ତାହା ଘଟିଲା ତାହା ମଧ୍ୟ ତାକୁ ଦେଖାଇବାକୁ ହେବ । କାରଣ ଅନେକ ସମୟରେ ମନୁଷ୍ୟ ଅବସ୍ଥାର ଦାସ । ଅବସ୍ଥା ଚକ୍ରରେ ପଡ଼ି ମନୁଷ୍ୟ ଅନେକ ସମୟରେ ପଥଭ୍ରଷ୍ଟ ହୁଏ । ଏହି ପରିସ୍ଥିତିକୁ କୁହାଯାଏ 'ପଟ୍ଟଭୂମି' । 'ଲଛମା'କୁ ଛାଡ଼ିଦେଲେ ଫକୀରମୋହନଙ୍କ ଉପନ୍ୟାସ ସବୁ ସାମାଜିକ ଓ ପାରିବାରିକ ପଟ୍ଟଭୂମି ଉପରେ ପ୍ରତିଷ୍ଠିତ ।

"ଟଙ୍କା ଏବ ମନୁଷ୍ୟାନାଂ ଚତୁର୍ବର୍ଗ ଫଳପ୍ରଦା" 'ଛ ମାଣ ଅଠ ଗୁଣ୍ଠ' ଉପନ୍ୟାସର ନାୟକ ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନର ଏହା ଥିଲା ପରମ ମନ୍ତ୍ର । ସ୍ନେହ, ମାୟା, ମମତା, ଚକ୍ଷୁଲଜ୍ଜା, ଧର୍ମ କର୍ମ ମଙ୍ଗରାଜଙ୍କ ମନକୁ ସ୍ପର୍ଶ କରିନଥିଲା । ଏକମାତ୍ର ଟଙ୍କା ଥିଲା ତାଙ୍କର ଧ୍ୟାନ । ଟଙ୍କା ଥିଲା ତାଙ୍କର ଜ୍ଞାନ । ଟଙ୍କା ସହିତ କ୍ଷମତା ଓ ପ୍ରତିପତ୍ତି ବିସ୍ତାର କରିବାର ବାସନା ମଧ୍ୟ ଥିଲା ବଳବତୀ । ପ୍ରତାରଣା, ପ୍ରବଞ୍ଚନା ଓ କୂଟନୀତି ବଳରେ ତାଙ୍କ ନିଜ ଅର୍ଥନୀତିର ମର୍ଯ୍ୟାଦା ବୁଝି ସେ ଅତି ଦରିଦ୍ର ଅବସ୍ଥାରୁ ମସ୍ତବଡ଼ ଧନୀଟିଏ

ହୋଇପାରିଥିଲେ । ଏପରି କି ଫତେପୁର ସରସଣ୍ଡର ଜମିଦାର ହୋଇପାରିଥିଲେ । ଏହି ଅର୍ଥ ପିଶାଚ ମଙ୍ଗରାଜଙ୍କ ଚରିତ୍ର ଚିତ୍ରଣ କରିବା 'ଛ ମାଣ ଆଠ ଗୁଣ୍ଠ'ରେ ଫକୀରମୋହନଙ୍କ ପ୍ରଧାନ ଲକ୍ଷ୍ୟ । ଏହି ଅର୍ଥ ଲିପ୍ସା ମଙ୍ଗରାଜଙ୍କ ଜୀବନରେ କିପରି ବିଷମୟ ହୋଇ ଉଠିଲା, ଏବଂ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଯେଉଁ ଅସହାୟା ଓ ସରଳ ବିଶ୍ୱାସିନୀ ତନ୍ତିଅଣୀ ସାରିଆଠାରୁ ଧୂର୍ତ୍ତା ଚମ୍ପାର କୁଚକ୍ରରେ ସେ ତାର ଛ ମାଣ ଆଠ ଗୁଣ୍ଠ ଜମି ଅପହରଣ କରି ନେଇଥିଲେ, ଏବଂ ଯାହା ଫଳରେ ତନ୍ତୀ ଭଗିଆ ପାଗଳ ହୋଇଗଲା, ଏବଂ ସାରିଆ ମଙ୍ଗରାଜଙ୍କ ଦ୍ୱାରମୁହଁରେ ନ ଖାଇ ନ ପିଇ ମୃତ୍ୟୁବରଣ କଲା, ସେହି ମୃତା ସାରିଆ ଭୟଙ୍କର ବିକଟାଳ ରୂପ ଧାରଣ କରି ତାଙ୍କୁ କିପରି ବିକୃତସ୍ୱରରେ କହୁଥିଲା, 'ମୋ ଛ ମାଣ ଆଠ ଗୁଣ୍ଠ ଜମି ଦେ', ଏହାର ପୁଙ୍ଖାନୁପୁଙ୍ଖ ଓ ଜୀବନ୍ତ ଚିତ୍ର ଅଙ୍କନ କରି ଫକୀରମୋହନ ମଙ୍ଗରାଜଙ୍କ ଚରିତ୍ରକୁ ପରିସ୍ଫୁଟ କରିବା ସଙ୍ଗେ ସଙ୍ଗେ ଶେଷରେ ଏହି ଅକ୍ଷମଣୀୟ ଓ ଅମାନୁଷିକ କୁକର୍ମ ସକାଶେ ସେ କିପରି ଭୟଭୀତ ଓ ଅନୁତପ୍ତ ହୋଇ ଏ ପାପରୁ କ୍ଷାନ୍ତ ପାଇବା ନିମନ୍ତେ ପତିତପାବନ ଭଗବାନଙ୍କ ପବିତ୍ର ନାମ ଧ୍ୟାନ କଲେ, କଳଙ୍କମୟ ଚରିତ୍ରର ଏ ପରିବର୍ତ୍ତନର ଚିତ୍ର ମଧ୍ୟ ସେ ଅଙ୍କନ କରି ଅଛନ୍ତି । 'ଲୋଭରୁ ମୃତ୍ୟୁ' ଏହି ସତ୍ୟ ମଙ୍ଗରାଜଙ୍କ ଜୀବନରେ ପ୍ରମାଣିତ ହୋଇଅଛି । ଏହାହିଁ ମୋଟାମୋଟି 'ଛ ମାଣ ଆଠ ଗୁଣ୍ଠ'ର କଥାବସ୍ତୁ । କିନ୍ତୁ ଏ ପୈଶାଚିକ ପ୍ରବୃତ୍ତି ତାଙ୍କ ମନରେ କିପରି ନିର୍ଲଜ୍ଜଭାବରେ ଲାଗି ଉଠିଲା ତାହାର ବାସ୍ତବ ଓ ବିଶ୍ୱାସ-ଯୋଗ୍ୟ ପ୍ରତିଛବି ଅଙ୍କନ କରିବା ନିମନ୍ତେ ଫକୀରମୋହନ ଉପନ୍ୟାସର ନାୟିକା ଚମ୍ପା ଚରିତ୍ରର ସମାବେଶ କରିଅଛନ୍ତି । ଚମ୍ପାର କୁଚକ୍ରରେ ପ୍ରଭାବିତ ହୋଇ ନଥିଲେ ହୁଏତ ମଙ୍ଗରାଜଙ୍କ

ଏତେ କଦର୍ଯ୍ୟ କର୍ମରେ ଲିପ୍ତ ହେବାକୁ ପଡ଼ିନଥାନ୍ତା । ବାଘ ସିଂହ ବଂଶର ସର୍ବନାଶ ଘଟି ନଥାନ୍ତା । ସାରିଆ ଶ୍ରେକ ଉପାସରେ ପଡ଼ି ମରି ନଥାନ୍ତା । ସତୀ ଓ ସାଧ୍ୱୀ ସାଆନ୍ତାଣୀ ଦୁଃଖରେ ଢାହା କରି ମରିନଥାନ୍ତେ । ତେଣୁ ଚମ୍ପାର କୁକାର୍ଯ୍ୟ ସବୁ ହେଲା ଏ ଉପନ୍ୟାସର ଗୌଣ ଘଟଣା । କିନ୍ତୁ ମଙ୍ଗରାଜଙ୍କ ଜୀବନର ନାନା ଘଟଣା ସହିତ ଏହା ଅଚ୍ଛେଦ୍ୟ ଭାବରେ ସମ୍ପୃକ୍ତ । ମଙ୍ଗରାଜଙ୍କ ପୈଶାଚିକ ପ୍ରବୃତ୍ତିର ଚରିତାର୍ଥତା ନିମନ୍ତେ ରାତି ଦିପହରେ ସାଆନ୍ତଙ୍କ ଶୋଇଲା ଘରେ ଚମ୍ପାର ଗୁପ୍ତ ମନ୍ତଣା, ତନ୍ତ୍ରୀ ଭୁଠ ନିକଟରେ ଥିବା ଜାଉଁଳି ବର-ଅଶ୍ୱତ୍ଥ ଗଛ ମୂଳେ ଚମ୍ପାର ସାରିଆକୁ ବନ୍ଧ୍ୟାଦୋଷରୁ ମୁକ୍ତ କରିବା ନିମନ୍ତେ ନାନା ଦୁରଭିସନ୍ଧିପୂର୍ଣ୍ଣ ଉପଦେଶ, ଗ୍ରାମର ବୁଢ଼ୀ-ମଙ୍ଗଳାଙ୍କ ନିମନ୍ତେ ମନ୍ଦିର ତିଆରି କରିବା ପାଇଁ ଛ ମାଣ ଅଠ ଗୁଣ୍ଠ ଜମି କିଣି ଲେଖି ଦେଇ ଚମ୍ପାର ସାରିଆକୁ ମଙ୍ଗରାଜଙ୍କଠାରୁ ଟଙ୍କା ଅଣିବାର ପରାମର୍ଶଦାନ, ଏବଂ ସାଆନ୍ତାଣୀଙ୍କ ମୃତ୍ୟୁରେ ମଙ୍ଗରାଜଙ୍କ ମାନସିକ ଅବସ୍ଥାର ବର୍ଣ୍ଣନା—ଉପନ୍ୟାସରେ ଏ ସକଳର ସମାବେଶ ନିଷ୍ପ୍ରୟୋଜନ କିମ୍ବା ନିରର୍ଥକ ନୁହେଁ । ଏପରି ନାନା ବିଚିତ୍ର ଘଟନାର ସମାବେଶ କଥାବସ୍ତୁକୁ ସୁଖପାଠ୍ୟ କରିବା ସଙ୍ଗେ ସଙ୍ଗେ ମଙ୍ଗରାଜ ଏବଂ ଚମ୍ପା ଚରିତ୍ରକୁ ଗତିଶୀଳ କରିଅଛି । ସେମାନଙ୍କ ଅମନୁଷ୍ୟତାର ଚିତ୍ର ଅଧିକ ସ୍ୱାଭାବିକ ଓ ଜୀବନ୍ତ ହୋଇଅଛି । ଫକୀରମୋହନ ଅନେକ ସମୟରେ ଘଟନାକୁ ଅତି-ରଞ୍ଜିତ ଭାବରେ ଚିତ୍ର କରିଥାନ୍ତି । କିନ୍ତୁ ଏ ଅତିରଞ୍ଜନରେ ସେପରି କିଛି ଅବାସ୍ତବ କଥା ନଥାଏ । ଏଥିପାଇଁ ଦାୟୀ ତାଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତି, ଏବଂ ତୀକ୍ଷ୍ଣ ବିଶ୍ଳେଷଣୀ ପ୍ରତିଭା । କିନ୍ତୁ ମୂଳ ବିଷୟବସ୍ତୁ ସହିତ ଫକୀରମୋହନ କେଉଁଠାରେ ସେହି ଗୌଣ ଘଟଣାମାନଙ୍କର ଯୋଗସୂତ୍ର ଛିନ୍ନ କରି ନାହାନ୍ତି । ଗୋବିନ୍ଦପୁର

ଗ୍ରାମର ସାମାଜିକ ଚିତ୍ର ଅଙ୍କନ କରିବା ନିମନ୍ତେ ଅସୁରଦୀଘି ପୋଖରୀର ବର୍ଣ୍ଣନା ଆବଶ୍ୟକ । ଗ୍ରାମର ହାଲଚାଲ ଏହି ପୋଖରୀ ତୁଠରେ ଜମା ହୋଇଥିବା ଲୋକଙ୍କଠାରୁ ବେଶ୍ ଜଣାଯାଏ । ତେଣୁ ଏହି ପୋଖରୀର ବିସ୍ତାରିତ ବର୍ଣ୍ଣନା । ଏହି ପୋଖରୀ ତୁଠରେ ସାରିଆର ସର୍ବନାଶ କରିବାକୁ ଚମ୍ପା ତା ସହିତ ଫୁସ୍‌ଫାସ୍ କଥାବାର୍ତ୍ତା ହେଉଥିଲି । ଏହିଠାରେ ହେଲା ନିର୍ବୋଧା ମେଣ୍ଢି ସାରିଆ ଧୂର୍ତ୍ତା ଶୃଗାଳୀ ଚମ୍ପାର ଗ୍ରାସର ପ୍ରବୃତ୍ତିର ଶିକାର । ତେଣୁ ପୋଖରୀ ଓ ତନ୍ତ୍ରୀ ତୁଠର ବର୍ଣ୍ଣନାର ଅବଶ୍ୟକତା ନାହିଁ, ଏ କଥା କହି ହେବ ନାହିଁ । ବର୍ଣ୍ଣନାର ଏହି ଅସଂଯମ କାମ୍ୟ ଅତିରଞ୍ଜନ ପ୍ରତି ନିକେ ଫକୀରମୋହନ ଅତ୍ୟନ୍ତ ସଚେତନ ଥିଲେ, ଏବଂ ନାନା ବିଚିତ୍ର ଘଟନାର ଅବତାରଣା କଲେ ମଧ୍ୟ, ମୁଖ୍ୟ ବିଷୟବସ୍ତୁ ଏବଂ ଚରିତ୍ରଚିତ୍ରଣ ସହିତ ସେ ଘଟନାର ସମ୍ପର୍କ କିପରି ଅବ୍ୟାହତ ରହିବ, ଏ ଦିଗପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ତେଣୁ 'ଛ ମାଣ ଅଠ ଗୁଣ୍ଠ'ର 'ହିତୋପଦେଶ' ପରିଚ୍ଛେଦରେ ଚମ୍ପା ସାରିଆକୁ 'ହିତୋପଦେଶ' ଦେବା ପୂର୍ବରୁ ସେ ଯେଉଁ ଦୀର୍ଘ ଭୂମିକାର ଅବତାରଣା କରିଛନ୍ତି, ତାହା ପାଠକ-ମାନଙ୍କ ପ୍ରତି ବିରକ୍ତିକର ହୋଇପାରେ ଏବଂ ଏଥିରେ ଉପନ୍ୟାସର ଶିଳ୍ପସୌନ୍ଦର୍ଯ୍ୟ କ୍ଷୁଣ୍ଣ ହୋଇପାରେ । ଏହି ଉଦ୍ଦେଶ୍ୟରେ ସେ ଲେଖି ଅଛନ୍ତି, "ଆମ୍ଭେମାନେ କଣ ଲେଖିବାକୁ ଯାଇ କଣ ଲେଖି ପକାଉଅଛୁଁ । ଯେତେବେଳେ ଅତୁଲ ଭଉଁ, ପାଣିସୁଅଟା ନାଆକୁ ଲକ୍ଷ୍ୟ ସ୍ଥାନରୁ ଦୂରକୁ ଟାଣିନିଏ । ମାତ୍ର ଟାଣୁଆ ନାଉରି ମଙ୍ଗ ଛାଡ଼େ ନାହିଁ । ଆମ୍ଭମାନଙ୍କ କଲମ ଏଣେ ତେଣେ ଯାଉଅଛି ସତ୍ୟ, ମାତ୍ର ମୂଳକଥାଟା ହଲଚଲ୍ ହୋଇପାରିବ ନାହିଁ, କଥାଟା ଦାଣ୍ଡେ ଦାଣ୍ଡେ ଗୁଳିଥିବ ।"

'ମାମୁଁ' ମଧ୍ୟ 'ଛ ମାଣ ଆଠ ଗୁଣ୍ଠ' ପରି ଗୋଟିଏ ସାମାଜିକ ଉପନ୍ୟାସ । 'ଛ ମାଣ ଆଠ ଗୁଣ୍ଠ'ରେ ଗ୍ରାମ୍ୟ-ସମାଜର ଚିତ୍ର—ଜଣେ ଗାଁଉଲି ଅର୍ଥସର୍ବସ୍ୱ ଜମିଦାରର ଚରିତ୍ରଚିତ୍ରଣ, କିନ୍ତୁ 'ମାମୁଁ'ରେ କଟକ ସହରର ଚିତ୍ର, ଏବଂ ଜଣେ ଶିକ୍ଷିତ ସରକାରୀ କର୍ମଚାରୀଙ୍କର ଉତ୍କଟ ଅର୍ଥଲାଳସାର ବୀଭତ୍ସ ପ୍ରତିଛବି । 'ମାମୁଁ'ର ନାୟକ ନାଜର ନଟବର ଦାସ ଯେପରି 'ଛ ମାଣ ଆଠ ଗୁଣ୍ଠ'ର ମଙ୍ଗରାଜଙ୍କର ପରିବର୍ଦ୍ଧିତ ଓ ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ । ଉଭୟେ ଅନ୍ୟର ଧନ ସମ୍ପତ୍ତି ଛଳ କୌଶଳରେ ହରକବଳାତ କରିବାକୁ ଚେଷ୍ଟିତ । ଉଭୟେ ଧନ ପାଇଁ ଅନ୍ୟର ତୋଟି କାଟିଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଉଭୟେ ନିର୍ମମ, ନିଷ୍ଠୁର, ଅସାଧୁତା ଓ ପ୍ରବଞ୍ଚନାର ମୂର୍ତ୍ତି ପ୍ରତୀକ । 'ମାମୁଁ'ରେ ନାଜର ନଟବରର ଚରିତ୍ରଚିତ୍ରଣ କରିବା ଫକୀରମୋହନଙ୍କର ପ୍ରଧାନ ଉଦ୍ଦେଶ୍ୟ । ଏହାର କଥାବସ୍ତୁ ସେହି ଦିଗରୁ ପରିକଳ୍ପିତ । ଏପରି ବାଘମାମୁ ଏ ଜଗତରେ କମ୍ ନାହାନ୍ତି, ଯେଉଁମାନେ ନିଜେ ଧନବାନ୍ ହେବା ଉଦ୍ଦେଶ୍ୟରେ ଏବଂ ନିଜର ସ୍ତ୍ରୀକୁ ରାଣୀ ବନାଇବା ପାଇଁ ନିରାଶ୍ରୟ ଭଣଜାର ସର୍ବସ୍ୱ ଲୁଣ୍ଠନ କରି ନିଅନ୍ତି, ଭଉଣୀ ଗଳାରେ ଛୁରୀ ଦିଅନ୍ତି । ଏହା ହୁଏତ ଏ ସଂସାର କ୍ଷେତ୍ରରେ ବହୁ ଅଭିଜ୍ଞତା ଅର୍ଜନ କରିଥିବା ଏବଂ ଲୋକଙ୍କର ଗତିବିଧି ଓ ଚାଲିଚଳଣିକୁ ଗଭୀର ଅନ୍ତର୍ଦୃଷ୍ଟିର ସହିତ ଅନୁଧ୍ୟାନ କରୁଥିବା ଜୀବନବାଦୀ ଫକୀରମୋହନଙ୍କ କୌଣସି ପରିଚିତ କିମ୍ବା ପ୍ରତ୍ୟକ୍ଷଭାବରେ ଅନୁଭୂତ ଘଟଣାର ଅବଲମ୍ବନରେ ରଚିତ । 'ମାମୁଁ' ଉପନ୍ୟାସର ଘଟଣା ସତ୍ୟାଶ୍ରୟୀ ଓ ବାସ୍ତବଧର୍ମୀ । ଏହାର କଥାବସ୍ତୁ ପାଠକ ପ୍ରାଣରେ ସାରସ୍ୱତ ଆନନ୍ଦ ଯେପରି ସଞ୍ଚାର କରେ, ସେହିପରି ସାରସ୍ୱତ ବିଶ୍ୱାସ ବି ଉଦ୍ରେକ କରେ । ନାଜର ନଟବର ଦାସ ସାକ୍ଷାତ ଗୋଟିଏ 'ବାଘ

ମାମୁଁ’ । ଏହି ତଥାକଥିତ ଶିକ୍ଷିତ ‘ବାଘମାମୁଁ’ର ପାଷାଣ ନିର୍ମମତା ଏବଂ ପୈଶାଚିକତାର ଚିତ୍ର ଅଙ୍କନ କରି ଶେଷରେ ତାଙ୍କୁ ଅନୁତାପର ଉଷ୍ମ ଅଶ୍ରୁରେ ବିଧୌତ କରିଦେବା, ପାପ ସକାଶେ କଠୋର ମାନସିକ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରିଦେଇ ତାଙ୍କୁ ସକଳ ପାପାର୍ଜିତ ସମ୍ପତ୍ତିର ଉପଭୋଗରୁ ବଞ୍ଚିତ କରି ତାଙ୍କୁ ତାର ଦୁଷ୍କାର୍ଯ୍ୟ ନିମନ୍ତେ ଶାସ୍ତିଦେବା—ଏହାହିଁ ହେଲା ‘ମାମୁଁ’ ଉପନ୍ୟାସରେ ଫକୀରମୋହନଙ୍କର ଲକ୍ଷ୍ୟ । ତେଣୁ ମାମୁଁ ଚରିତ୍ରର ସୁସଙ୍ଗତ ଓ ସୁସ୍ପଷ୍ଟ ବିକାଶ ନିମନ୍ତେ ଯେଉଁ ବିଚିତ୍ର ଘଟନା-ମାନଙ୍କର ଅବତାରଣା ଏହି ଉପନ୍ୟାସରେ କରାଯାଇଅଛି, ତାହାର ଲକ୍ଷ୍ୟ ସେହି ଗୋଟିଏ ଦିଗକୁ—ନାୟକ ଓ ନାୟିକାଙ୍କର ଚରିତ୍ରଚିତ୍ରଣ ।

‘ଛ ମାଣ ଆଠ ଗୁଣ୍ଠ’ ଓ ‘ମାମୁଁ’ ଉପନ୍ୟାସ ମଧ୍ୟରେ ଚରିତ୍ରଗତ ସାମଞ୍ଜସ୍ୟ ଥିବାରୁ ଘଟନା ସଂସ୍ଥାନରେ ମଧ୍ୟ କେତେକ ସାଦୃଶ୍ୟ ଦେଖିବାକୁ ମିଳେ । ସକଳ ଦୁଷ୍କାର୍ଯ୍ୟରେ ମଙ୍ଗରାଜଙ୍କର ଚମ୍ପା ଯେପରି ପରମ ବାନ୍ଧବୀ ଏବଂ ମନ୍ତ୍ରଣାଦାତ୍ରୀ, ‘ମାମୁଁ’ ଉପନ୍ୟାସରେ ସେହିପରି ଚିନ୍ତା ନାଜର ବାବୁଙ୍କର ସକଳ ପ୍ରେରଣାର ଅଫୁରନ୍ତ ଉତ୍ସ । ନାଜର ବାବୁଙ୍କର ଶକ୍ତିଦାୟିନୀ ଏବଂ ନାଜର ବାବୁଙ୍କ ଘରର ‘ସାଆନ୍ତାଣୀ’ ଚମ୍ପାର ଉଦ୍ଦେଶ୍ୟ ଥିଲା କଳେ ବଳେ କୌଶଳେ ମଙ୍ଗରାଜ ସାଆନ୍ତଙ୍କ ଧନ ଜଗିଲେ, ସେ ଧନ ଦିନେ ନିଶ୍ଚୟ ତା ଭାଗ୍ୟରେ ଜୁଟିବ । ସେଥିପାଇଁ ଚମ୍ପାର ଅପ୍ରାଣ ଚେଷ୍ଟା । ମଙ୍ଗରାଜେ ଜେଲକୁ ଗଲେ । ଚମ୍ପା ତାଙ୍କଠାରୁ ବାଟରେ ଗୁଡ଼ିବ ଆଣି ଭଣ୍ଡାରଘର ଖୋଲି ଗୋବିନ୍ଦା ଭଣ୍ଡାରି ସାଙ୍ଗେ ଟଙ୍କା ପଇସା ନେଇ ପଳାଇ ଯାଉଥିଲା । ଗୋପୀ ସାହୁ ଦୋକାନରେ ତାଙ୍କୁ ଗୋବିନ୍ଦା ହତ୍ୟା କଲା । ସେ ଟଙ୍କା ଚମ୍ପା ଭୋଗ କରିପାରିଲା

ନାହିଁ । କିନ୍ତୁ ତମାର ସକଳ ଗୃହୁସ୍ତ ଏହି ଟଙ୍କା ପାଇଁ । ଶରିକଳା ସେହିପରି ନାଜର ନଟବର ଦାସଙ୍କୁ ନିଜ ଗୃହୀଙ୍କ ଗୃହୁସ୍ତରେ ଭୁଲେଇ ରଖିଥିଲା—ତାଙ୍କ ଟଙ୍କା ପଇସାରୁ କିଛି ମାରିବ ବୋଲି । ଶେଷକୁ ସ୍ୱାଧୀକୁ ସଲକରି ସେ ନାଜରଙ୍କ ଘରୁ ଟଙ୍କା ଚୋରି କଲା । ତେଣୁ 'ଛ ମାଣ ଆଠ ଗୁଣ୍ଠ' ଓ 'ମାମୁଁ' ଉପନ୍ୟାସର କଥା-ବସ୍ତୁ ମଧ୍ୟରେ ଏହି ସାମଞ୍ଜସ୍ୟ ଦେଖିବାକୁ ମିଳେ—ନାଜର ନଟବର ଦାସ ଏବଂ ରାମଚନ୍ଦ୍ର ମଙ୍ଗରାଜ ଉଭୟଙ୍କର ଉନ୍ନତ ବ୍ୟକ୍ତିତ୍ୱ ନାହିଁ, ଉଭୟେ ଅର୍ଥ ଦେବତାର ପୂଜାରୀ । ଉଭୟଙ୍କର ଅବିଚଳିତ ବିଶ୍ୱାସ, ଅର୍ଥ ଉପାର୍ଜନହିଁ ମାନବ ଜୀବନର ଏକମାତ୍ର ଲକ୍ଷ୍ୟ । ଉଭୟେ ସ୍ତ୍ରୀବୁଦ୍ଧିର ବଶୀଭୂତ । ଉଭୟଙ୍କଠାରେ ଦାମ୍ପତ୍ୟ ପ୍ରଣୟର ପବିତ୍ରତା ଓ ନିଷ୍ଠାର ଅଭାବ । ଉଭୟ ଉପନ୍ୟାସରେ କଥାବସ୍ତୁକୁ ଲେଖକ ଗତିଶୀଳ କରିଅଛନ୍ତି ଦୁଇଟି ନୃଶଂସା ନାରୀର ରୂପଗୁଣ ଓ କାର୍ଯ୍ୟକଳାପର ବିସ୍ତାରିତ ଓ ବିଶଦ ବର୍ଣ୍ଣନାରେ ।

କିନ୍ତୁ 'ମାମୁଁ'ର ଘଟନାସଂସ୍ଥାନ, କଥାବସ୍ତୁର ଉପସ୍ଥାପନା ଓ କ୍ରମବିକାଶର ଧାରା 'ଛ ମାଣ ଆଠ ଗୁଣ୍ଠ' ଠାରୁ ଅଧିକ ଆଧୁନିକ ରୁଚିସମ୍ମତ ଏବଂ ବୁଦ୍ଧିଦୀପ୍ତ । ଇଂରେଜୀ ପାଠ ପଢ଼ିଲେ ମଣିଷ ବଡ଼ ବୁଦ୍ଧିଆ ହୁଏ । ଫକୀରମୋହନଙ୍କର ଏପରି ବ୍ୟକ୍ତିଗତ ବିଶ୍ୱାସ ଥିଲା କି ନାହିଁ, ସେ କିନ୍ତୁ ବହୁ ଇଂରେଜୀ ପାଠୁଆ ଲୋକଙ୍କ ସମ୍ପର୍କରେ ଆସି ବୁଝିଥିଲେ, ଏମାନେ ନିଜକୁ ଭାରି ବୁଦ୍ଧିମାନ୍ ଓ ଚାଲାକ୍ ମନେ କରନ୍ତି । କୌଶଳ କରି ସାହେବମାନଙ୍କ ଆଖିରେ ବି ଧୂଳି ପକାଇ କାମ ହାସଲ୍ କରିପାରନ୍ତି । 'ଛ ମାଣ ଆଠ ଗୁଣ୍ଠ'ରେ ଏ ନବ୍ୟ ସଭ୍ୟ ବୁଦ୍ଧିର ଖେଳ ନାହିଁ । ରାମଚନ୍ଦ୍ର ମଙ୍ଗରାଜଙ୍କର ସେହି ପୁରୁଣାକାଳିଆ ମାମଲତକାରି—ଇସ୍ତାର ଘର

ଘାଗିବା, ତା କିଆରୀରୁ ଧାନ ଉପାଡ଼ି ନେବା, ବଞ୍ଚକତା କରି ଅଳ୍ପ ଟଙ୍କାରେ ଅନ୍ୟର ଭଲ ଭଲ ଜମି ମାରିନେବା, ମାଇପି ବୁଦ୍ଧିରେ ଚାଳିତ ହେବା, କାହାର ଘର ପୋଡ଼ିଦେବା, ମାଲି ମୋକଦ୍ଦମାରେ ଅନ୍ୟମାନଙ୍କୁ ବିନା କାରଣରେ ଜଡ଼ିତ କରିବା ଏବଂ ଶତ୍ରୁ ଉପରେ ଅହନ୍ତା ସାଧିବା ନିମନ୍ତେ ତା ପାଚିଲା ଫସଲ କିଆରିରେ ଗୋରୁଗୋଠ ଛାଡ଼ିଦେବା । ଏ ସବୁ ଅଧୁନିକ ଇଂରେଜୀ ପାଠୁଆ ମନକୁ ନ ରୁଚିବାର କଥା । ଚମ୍ପାକୁ ଝାଙ୍ଗୀ ମାଉସୀ ନକରି ଫକୀରମୋହନ ଯେବେ ତାକୁ ପୁରୁଷ ବେଶରେ ବାଘ-ସିଂହ ଘର ପୋଡ଼ିବାକୁ ପଠାଇଥାନ୍ତେ, ତେବେ ତାହା ଅଧିକ ଅଧୁନିକ ରୁଚିସମ୍ପନ୍ନ ହୋଇପାରିଥାନ୍ତା । ଅସମ୍ଭବ ହେଲେ ସୁଦ୍ଧା ଏବର ପାଠୁଆ ପାଠକ ଏଥିରେ ନାଟକୀୟ ଭଙ୍ଗୀର ଅସ୍ୱାଦ ପାଆନ୍ତା । ସେଥିରେ ପୁଣି ପାପ କଲେ ଏହାର ଫଳ ନିଶ୍ଚୟ ଭୋଗ କରିବାକୁ ହେବ । ଏ ଫଳଭୋଗ ହେବ ପୁଣି ଶରୀରଚରିତ ସେନ୍ନ ହତ୍ୟାଦ୍ୱାରା । ପାଠୁଆ ଲୋକେ ଏଥିରେ ନାକ ଟେକିବେ । ଫକୀର-ମୋହନଙ୍କୁ 'ପ୍ରଗତିବାଦୀ' ଅଖ୍ୟା ହୁଏତ ଦେବେ ନାହିଁ ।

କିନ୍ତୁ 'ମାମୁଁ'ର ଅଖ୍ୟାନ ବସ୍ତୁରେ ହତ୍ୟାର ବିଭୀଷିକା ନାହିଁ । ମାମୁଁ ମଙ୍ଗରାଜଙ୍କ ପରି ବଳପୂର୍ବକ କାହା ଜମିରୁ ଧାନ ଉପାଡ଼ି ନେଇ ନାହାନ୍ତି । ତାଙ୍କର ନୀତି ହେଲା—ସବୁଥିରେ ଥିବ, କେଉଁଥିରେ ନଥିବ । ସବୁ କରୁଥିବ, କେହି କିଛି ଜାଣିପାରୁ ନଥିବେ । ଏଣେ ଝୁଲିମୁଣି ଭିତରେ ହାତ ପୁରାଇ 'ହରେ କୃଷ୍ଣ, ହରେ କୃଷ୍ଣ' ଉଚ୍ଚାରଣ କରୁଥିବ, ତେଣେ ଭଉଣୀକୁ କାଁଇଲ କଥା କହି, ଭଣଜାମାନଙ୍କର ଅତି ଅପଣାର ହୋଇପଡ଼ି ଭଉଣୀ-ଙ୍କର ଅଲଙ୍କାର ପୋଟଳା ପଲଙ୍କ ତଳୁ ଚୋରେଇ ଆଣୁଥିବ, ଏବଂ କଲେକ୍ଟର ସାହେବଙ୍କ ଅଗିଣରେ ଧୂଳିପକାଇ ନାବାଳକ ଭଣଜା-

ମାନଙ୍କର ସମ୍ପତ୍ତିସବୁ ମାଡ଼ଫାଡ଼ଦାର ହୋଇ ଅତ୍ମସାତ୍ କରୁଥିବ । ସବୁ କରୁଥିବ, ଦେହରେ ଟିକିଏ ହେଲେ ପଙ୍କ ଲାଗୁନଥିବ । ଏହାହିଁ ହେଲା ଆଧୁନିକ ଯୁଗର ବୁଦ୍ଧି ଓ କୌଶଳ । ନାଜରଙ୍କ ଠାରେ ଏହି ବୁଦ୍ଧି ବିଶେଷ ପରିମାଣରେ ଥିଲା । ଏ ଯୁଗରେ ଲୋକଦେଖାଣି 'ମୁହଁ ଭକ୍ତଉ' ଯାହାର ଯେତିକି ବେଶୀ ସେ ଦୁନିଆରେ ସେତିକି ଗଣ୍ୟମାନ୍ୟ ବ୍ୟକ୍ତିରୂପେ ବିବେଚିତ । ମୁହଁରେ ଗୋଟିଏ କଥା କହି କାର୍ଯ୍ୟରେ ଅନ୍ୟ ପ୍ରକାର କରି ନିଜର ସ୍ୱାର୍ଥ ସାଧନ କରିବା ନାଜର ବାବୁଙ୍କର ଗୋଟିଏ ବଡ଼ ଗୁଣ । ଏ ଗୁଣର ବିକାଶ ନିମନ୍ତେ 'ମାମୁଁ'ରେ ବିଚିତ୍ର ଘଟଣାମାନଙ୍କର ସଂସ୍ଥାପନ ଦେଖିବାକୁ ମିଳେ । ନାଜର ବାବୁ ଚୂଡ଼ାମଣିଙ୍କ ଉଆସରେ ରହି ଯେଉଁ କଚେରି କରନ୍ତି, ଯାହାର ଜୀବନ୍ତ ଚିତ୍ର ଫକୀରମୋହନ ଅଙ୍କନ କରିଅଛନ୍ତି, ସେ କଚେରିର ଉଦ୍ଦେଶ୍ୟ କଣ ? ଧାଇମା ସରସ୍ୱତୀଙ୍କୁ କାହିଁକି ନଟବରର ଚତୁରତା ଓ ଛଳନାପୂର୍ଣ୍ଣ କଥାଗୁଡ଼ାକ ଭଲ ଲାଗେ ନାହିଁ ! ଦୁଇଦିନ ପୂର୍ବ କଚେରିରେ ଗୋଟିଏ ହେଲେ ଲୋକର ମୁହଁ କାହିଁକି ଦିଶିଲା ନାହିଁ ? କଲାଟାଯୋକ କାହିଁକି ବର୍ତ୍ତମାନ ଜଳପୋଡ଼ ମରୁଛନ୍ତି ? ଏହାର କାରଣ ନାଜର ନଟବର ଦାସଙ୍କର ପ୍ରଜା ନିପୀଡ଼ନ ଏବଂ ନିର୍ମମ ଶୋଷଣ ନୀତି । ପ୍ରଜାଙ୍କଠାରୁ ଆଦାୟ କରାଯାଉଥିବା ସବୁ ଟଙ୍କା ତାଙ୍କ ନିଜ ସିନ୍ଦୁକରେ ଭର୍ତ୍ତି ହେଉଛି । ଏହିପରି ଭାବରେ କଥାବସ୍ତୁର ବୈଚିତ୍ର୍ୟ ଉପନ୍ୟାସକୁ ସୁଖପାଠ୍ୟ କରିବା ସଙ୍ଗେ ସଙ୍ଗେ ନାଜର ନଟବର ବାବୁଙ୍କର ଅମନୁଷ୍ୟତା ଓ କଠୋର-ପ୍ରାଣତାର ଚିତ୍ରକୁ ଦୀପ୍ତିମନ୍ତ କରିଅଛି । କିନ୍ତୁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର କଥାବସ୍ତୁ ଏ ଉଭୟ ଉପନ୍ୟାସଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏହାକୁ ଚରିତ୍ରପ୍ରଧାନ ଉପନ୍ୟାସ କହିଲେ ଠିକ୍ ହେବ ନାହିଁ ।

ଅବଶ୍ୟ ମାନବତାଧର୍ମୀ ଔପନ୍ୟାସିକଙ୍କ ଉପନ୍ୟାସରେ ଚରିତ୍ର-ଚିତ୍ରଣ ରହିବ ହିଁ ରହିବ । କାରଣ ଔପନ୍ୟାସିକମାନେ ଯେଉଁ ଧରଣର ଉପନ୍ୟାସ ରଚନା କରନ୍ତୁ, ମନୁଷ୍ୟ ଜୀବନର ରହସ୍ୟର ଉନ୍ମୋଚନ, ଏବଂ ମନୁଷ୍ୟ ଜୀବନ କିମ୍ବା ସମାଜର ନାନା ସମସ୍ୟାର ବିଶ୍ଳେଷଣ, ଆଲୋଚନା ଏବଂ ସମାଧାନ ଏଥିରେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷଭାବରେ ହେଉ ନିଶ୍ଚୟ ସ୍ଥାନ ପାଇବ । ପ୍ରାୟଶ୍ଚିତ୍ତ ଗୋଟିଏ ସମସ୍ୟାମୂଳକ ଉପନ୍ୟାସ । ଏ ସମସ୍ୟାର ସମାଧାନ ଔପନ୍ୟାସିକ କିପରି କରିଛନ୍ତି, ତାହାର ବିଚାର ଏଠାରେ ଅପ୍ରାସଙ୍ଗିକ । କିନ୍ତୁ ସେ ସମସ୍ୟାର ରୂପରେଖ କିଣ ଏବଂ ତାହା କିପରି ଉପସ୍ଥାପିତ ହୋଇଅଛି, ନାନା ଘଟନାର ଅବଲମ୍ବନରେ ଏ ସମସ୍ୟା କିପରି କ୍ରମେ ଜଟିଳରୁ ଜଟିଳତର ହୋଇ ଉଠିଛି ଏବଂ ଯେଉଁମାନଙ୍କର ଜୀବନର ବ୍ରତ ଥିଲା ସମାଜର ସଂସ୍କାର ସାଧନା ଏବଂ ପତ୍ନୀ ନିର୍ବାଚନରେ ସ୍ୱାଧୀନତା, ସେମାନେ ଅର୍ଥର ପ୍ରଲୋଭନରେ ଏବଂ ବାସନାର ତାଡ଼ନାରେ କିପରି ପଥଭ୍ରଷ୍ଟ ହୋଇ ବ୍ୟର୍ଥତାକୁ ବରଣ କରି ଆଣିଛନ୍ତି, ତାହାର ଚିତ୍ର ପ୍ରାୟଶ୍ଚିତ୍ତରେ ଜୀବନ୍ତ ହୋଇ ଉଠିଛି । ଏହାର କଥାବସ୍ତୁ ହିଁ ଏ ଉପନ୍ୟାସର ପ୍ରାଣପିଣ୍ଡ । ଏହି ଆଖ୍ୟାନଭାଗ ମଧ୍ୟରେ ଜଡ଼ିତ ଅଛି ଉପନ୍ୟାସର ସମସ୍ୟା, ଏବଂ ସେହି ସମସ୍ୟା ସହିତ ଓତପ୍ରୋତ ଭାବରେ ଜଡ଼ିତ ଏହାର ଚରିତାବଳୀ ।

'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଅଛି ଦୁଇଟି ବିବଦମାନ କରଣ ବଂଶର ଈର୍ଷା, ବିଦ୍ୱେଷ ଓ ମନୋମାଳିନ୍ୟର ଚିତ୍ର । ଜଣେ 'କୃଷ୍ଣ-ପକ୍ଷୀୟ' ମହାନ୍ତି ଓ ଜଣେ କୁଳୀନ 'ଶୁକ୍ଳ ପକ୍ଷୀୟ' ମହାନ୍ତି— ଶ୍ରୀକରଣ ଗୋଷ୍ଠୀର ଅନ୍ତର୍ଭୁକ୍ତ । କିନ୍ତୁ ଶ୍ରୀକରଣ ବୈଷ୍ଣବଚରଣ ପଟ୍ଟନାୟକ କୃଷ୍ଣପକ୍ଷୀୟ କରଣ ସଙ୍କର୍ଷଣ ମହାନ୍ତିଙ୍କୁ ନିଜ ଗୋଷ୍ଠୀରେ

ମିଶାଇବାକୁ ନିତାନ୍ତ ଅନିଚ୍ଛୁକ । ଗୋଲମ ମହାନ୍ତିଙ୍କ ଦୁଅରେ ଶ୍ରୀକରଣ ସାଆନ୍ତମାନେ ବନ୍ଧୁତା ବାନ୍ଧି, ପୁଅ ଝିଅ ତାଙ୍କ ଘରେ ବିଭା କରାଇ ତାଙ୍କ ଘରେ ଭାତ ଡାଲି ଖାଇପାରିବେ ? ଶ୍ରୀକରଣ ବୈଷ୍ଣବ ପଟ୍ଟନାୟକଙ୍କର ଏହା କଳ୍ପନାର ଅତୀତ । ସାମନ୍ତ ସଙ୍କର୍ଷଣ ମହାନ୍ତିଙ୍କ କାନକୁ ଏକଥା ଗଲା । ପ୍ରତିଜ୍ଞା କଲେ ଶ୍ରୀକରଣ ଗୋଷ୍ଠୀର ଏ ଗର୍ବ ଭାଙ୍ଗିବା ନିମନ୍ତେ ସେ ତାଙ୍କର ସକଳ ଧନ ସମ୍ପତ୍ତି ଉତ୍ସର୍ଗ କରିବେ । ଦୁଇ ମୌଜାର ଲୋକଙ୍କ ମଧ୍ୟରେ ବି ଶତ୍ରୁତାର ସୃଷ୍ଟି ହେଲା । ମାଲିମୋକଦ୍ଦମାରେ ଦୁଇ ମୌଜାର ପ୍ରଜାମାନେ ସର୍ବସ୍ୱାନ୍ତ ହେଲେ । କରଣମାନଙ୍କ ମଧ୍ୟରେ ଏହି ଯେଉଁ ସଙ୍କୀର୍ଣ୍ଣ ଜାତିଗତ ମନୋଭାବ ଏହା ସମାଜ ପ୍ରତି ଅନିଷ୍ଟକର । ଏହା ସମାଜର ଘୋର କଳଙ୍କ । ଏ ନୀଚତା, ଏ ଭେଦଭାବ ଦୂର କରି କରଣମାନଙ୍କେ ସମସ୍ତଙ୍କ ବନ୍ଧୁ ବୋଲି ଜ୍ଞାନ କରିବାକୁ ହେବ—ଏହାହିଁ ହେଲା ଲେଖକଙ୍କର ସମସ୍ୟା । କିନ୍ତୁ ଏ ସମସ୍ୟାର ସମାଧାନ ନିମନ୍ତେ କଲେଜ ପଢ଼ୁଆ ଯୁବକମାନେ ଯେଉଁ ପନ୍ଥା ଅବଲମ୍ବନ କରିଥିଲେ ତାହା ଅତ୍ୟନ୍ତ ହୀନ ଓ ଅସତ୍ । ଶ୍ରୀକରଣ ଗୋଷ୍ଠୀର ସାମନ୍ତ ବୈଷ୍ଣବ ପଟ୍ଟନାୟକଙ୍କ ପୁଅ କୁଅଁର ଗୋବିନ୍ଦଚନ୍ଦ୍ର ସେତେବେଳେ କଲେଜ ଛାତ୍ର । ପିତାଙ୍କର ଘୋର ଶତ୍ରୁ କୃଷ୍ଣପକ୍ଷୀୟ ସଙ୍କର୍ଷଣ ମହାନ୍ତିଙ୍କ କବିକନ୍ୟା ପ୍ରତି ସେ ତାଙ୍କର କବିତ୍ୱର ପ୍ରଶଂସା ଶୁଣି ଆକୃଷ୍ଟ ହୋଇ ପଡ଼ିଲେ; ପିତା ମାତାଙ୍କ ଅଜ୍ଞାତରେ କବିକନ୍ୟା ଇନ୍ଦୁମତୀଙ୍କୁ ବିବାହ କରିବାକୁ ମନ ବଳାଇଲେ । କିନ୍ତୁ ଏ ବିବାହ ପଛରେ ସଙ୍କର୍ଷଣଙ୍କ ତଥାକଥିତ ଭଣଜା କଟକ କଲେଜର ୨ୟ ବର୍ଷୀୟ ଶ୍ରେଣୀର ଛାତ୍ର ରାଜୀବଲୋଚନଙ୍କର ଷଡ଼୍‌ଯନ୍ତ୍ର ମାମୁଁଙ୍କ ନିର୍ଦ୍ଦେଶରେ ପ୍ରଚ୍ଛନ୍ନ ଥିଲା । କୁଅଁର ଗୋବିନ୍ଦଚନ୍ଦ୍ରଙ୍କ 'ବଡ଼ଭାଇ' ସଦାନନ୍ଦ ମଧ୍ୟ ସଙ୍କର୍ଷଣ

ମହାନ୍ତିଙ୍କ ପ୍ରରୋଚନାରେ ରାଜୀବଲୋଚନଙ୍କଠାରୁ ଲାଞ୍ଚ ନେଇ ଏ ବିବାହର ଆୟୋଜନ କଲେ । ସଙ୍କର୍ଷଣ ମହାନ୍ତିଙ୍କର ଉଦ୍ଦେଶ୍ୟ ଇନ୍ଦୁମତୀ ସହିତ ଶ୍ରୀକରଣ ବୈଷ୍ଣବ ପଟ୍ଟନାୟକଙ୍କର ବିବାହଟା ସମ୍ପନ୍ନ ହୋଇଗଲେ, ପଟ୍ଟନାୟକଙ୍କର ଦମାକ୍ ଭାଙ୍ଗିଯିବ । ସେ ଆସି କୃଷ୍ଣପକ୍ଷୀୟା କରଣଙ୍କ ଘରେ ହାତ ଡାଲି ହାପୁରିବେ । ବିବାହ ଗୋପନରେ ସମ୍ପନ୍ନ ହେଲା । କିନ୍ତୁ ଏ ବିବାହକୁ ଦୃଢ଼ୀଭୂତ କରିବା ନିମନ୍ତେ ଇନ୍ଦୁମତୀ ସହିତ କୁଅଁର ଗୋବିନ୍ଦଚନ୍ଦ୍ରଙ୍କର ଘନ ଘନ ମିଳନ ଆବଶ୍ୟକ । କିନ୍ତୁ କୁଅଁର ଗୋବିନ୍ଦଚନ୍ଦ୍ର ଶ୍ୱଶୁର ଘରକୁ ନିଜ ଇଚ୍ଛାରେ ଯାଉଛନ୍ତି କିପରି ? କୁଚକ୍ରୀ ରାଜୀବ-ଲୋଚନ ମାମୁଁଙ୍କର ମର୍ଯ୍ୟାଦା ବୃଦ୍ଧି କରିବା ନିମନ୍ତେ ତାଙ୍କର ସାହାଯ୍ୟରେ ଇନ୍ଦୁମତୀଠାରୁ ଖଣ୍ଡିଏ ଜାଲ୍ ପ୍ରେମ କବିତା ପତ୍ର ଦସ୍ତଖତ କରାଇ ଆଣିଲା । କବିତାଟି କଟକରେ ଲେଖିଥିଲେ ଭାଇ ସଦାନନ୍ଦ ଓ ରାଜୀବଲୋଚନ । ଗୋବିନ୍ଦଚନ୍ଦ୍ର ସେ ପତ୍ରଟି ପାଇ ରାତି ଦିପହରେ ଆସି ଇନ୍ଦୁମତୀର ଶୋଇବା ଘର ଦୁଆରେ ଠକ୍ ଠକ୍ କରି ହାତ ମାରିବାରୁ ଇନ୍ଦୁମତୀ ଓ ମଉସା 'ଡକାୟତ' 'ଡକାୟତ' ବୋଲି ହୁରି ପକାଇଲେ । ପାଇକମାନେ ଆସି କୁଅଁର ଗୋବିନ୍ଦଙ୍କୁ ଅନ୍ଧାର ରାତିରେ ଡକାୟତ ଭାବି ନିର୍ଦ୍ଦୟ ମାଡ଼ ଛେଚିଲେ । ତହିଁ ଆରଦିନ ସକାଳେ ଜଣାଗଲା ଜୋଇଁ ବାବୁଙ୍କୁ ଡକାୟତ ମନେ କରି ମାଡ଼ ଦିଆଯାଇଛି । ଏ କଥା ଶୁଣି ରାଜୀବ କେଉଁଆଡ଼େ ଯାଇ ଲୁଚିଲା । ସଦାନନ୍ଦର ପତ୍ତା ମିଳିଲା ନାହିଁ । କୁଅଁର ଗୋବିନ୍ଦଚନ୍ଦ୍ରଙ୍କୁ କଟକ ଡାକ୍ତରଖାନାକୁ ନେବାକୁ ଲୋକ ମିଳିଲେ ନାହିଁ । ଗୃହକର ସଇତା ସାଆନ୍ତଙ୍କୁ ନେଇ କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି କରାଇଲା । ଇନ୍ଦୁମତୀ ଭାବିଲେ ତାଙ୍କର ଯୋଗୁ ତାଙ୍କ ପ୍ରାଣପତି ଏତେ କଷ୍ଟ ପାଇଲେ । ସେ ଆତ୍ମହତ୍ୟା

କର ମଲେ । ବୈଷ୍ଣବ ପଟ୍ଟନାୟକ, ସଙ୍କର୍ଷଣ ମହାନ୍ତି, କୁଅଁର ଗୋବିନ୍ଦଚନ୍ଦ୍ର ଓ ଭୃତ୍ୟ ସଙ୍ଗତା ନିଜ ନିଜର ଭୁଲ ନିମନ୍ତେ ପ୍ରାୟଶ୍ଚିତ୍ତ କରିବାକୁ ବୃନ୍ଦାବନ ଗଲେ । ଆକସ୍ମିକ ଭାବରେ ସେଠାରେ ସମସ୍ତଙ୍କର ମିଳନ ହେଲା । କୁଳଦେବତା ପ୍ରଭୁ ଗୋବିନ୍ଦଚନ୍ଦ୍ରଙ୍କର ସେବା ପୂଜାର ତତ୍ତ୍ୱ ନେବାକୁ ପିତା ବୈଷ୍ଣବ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ପ୍ରଭୁଭକ୍ତ ସଙ୍ଗତାକୁ ସାଙ୍ଗରେ ଧରି ଉଦାସମନା କୁଅଁର ଗୋବିନ୍ଦଚନ୍ଦ୍ର ନିଜ ଭଆସକୁ ଫେରି ଆସିଲେ ।

ଏହାହିଁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ସଂକ୍ଷିପ୍ତ କଥାବସ୍ତୁ । ପୂର୍ବେ କୁହାଯାଇଛି କେହି କେହି ମନେ କରିପାରନ୍ତି, ଫକୀରମୋହନ ସମୟେ ସମୟେ ନାଟକୀୟ ଭାବରେ ଆକସ୍ମିକ ଘଟଣାମାନ ସନ୍ନିବେଶ କରି କଥାବସ୍ତୁକୁ ଅଯଥା ଦୀର୍ଘ କରିଅଛନ୍ତି ଏବଂ କଥାବସ୍ତୁକୁ ସ୍ୱାଭାବିକ ଓ ଅନିବାର୍ଯ୍ୟ ଭାବରେ ନିଜର ପରିଣତି ପଥରେ ଛାଡ଼ି ନଦେଇ ନିଜର ଉଦ୍ଦେଶ୍ୟ ସାଧନ ନିମନ୍ତେ କୃତ୍ରିମ ଘଟଣାମାନଙ୍କର ଅବତାରଣା କରିଅଛନ୍ତି । ଉଦାହରଣ ସ୍ୱରୂପ— 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ସପ୍ତମ ପରିଚ୍ଛେଦର 'ଆଲୋଚନା ସଭା' ଏବଂ ଷୋଡ଼ଶ ପରିଚ୍ଛେଦର 'ଭୋଜି ସଭା' । କିନ୍ତୁ ଏହି 'ଆଲୋଚନା ସଭା' ଏବଂ 'ଭୋଜି ସଭା' ସହିତ ମୂଳ କଥାବସ୍ତୁର ଘନିଷ୍ଠ ସମ୍ପର୍କ ଅଛି । ଏହି ଦୁଇଟି ସଭାରେ କଟକ କଲେଜର କେତେ ଜଣ ସଂସ୍କାରପ୍ରୟାସୀ ଉତ୍ସାହୀ ଛାତ୍ର ପାଶ୍ଚାତ୍ୟ ଶିକ୍ଷାଦୀକ୍ଷା ଓ ସଭ୍ୟତାର ପ୍ରଭାବରେ ଯେଉଁ ସମସ୍ୟାମାନ ସେଠାରେ ଆଲୋଚନା କରିଥିଲେ, ଅର୍ଥାତ୍ (କ) କବିକନ୍ୟା ପତ୍ନୀରୂପେ ପାଇବା ସହଜ କଥା ନୁହେଁ— ତାହା 'ତପସ୍ୟାସାଧ୍ୟ ଦେବଦୁର୍ଲଭ ବସ୍ତୁ', (ଖ) ଅଶିକ୍ଷିତା କନ୍ୟା

ବିବାହ କରିବା ମହାପାପ, ଏବଂ (ଗ) ଶିକ୍ଷିତ କନ୍ୟା ଅବସ୍ଥାର କରି ଶିକ୍ଷିତ ଯୁବକମାନେ କେବଳ ସେହିମାନଙ୍କୁ ପତ୍ନୀରୂପେ ଗ୍ରହଣ କରି ସ୍ତ୍ରୀଶିକ୍ଷାର ପ୍ରସାରରେ ସାହାଯ୍ୟ କରିବେ। ଏହି ଅଲୋଚିତ ସମସ୍ୟା ସବୁ ଉପରି କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମନରେ ପିତୃଶତ୍ରୁ ସଙ୍କର୍ଷଣ ମହାନ୍ତିଙ୍କ କବି-କନ୍ୟା ଇନ୍ଦୁମତୀଙ୍କ ପ୍ରତି ଅକର୍ଷଣର ଶୃଙ୍ଖଳ୍ୟ ସୃଷ୍ଟି କରିଥିଲା, ଓ ସେହି ଅକର୍ଷଣ ଉପରି ତୀବ୍ରରୁ ତୀବ୍ରତର ହୋଇ କେବଳ ଗୋବିନ୍ଦଚନ୍ଦ୍ରଙ୍କର ନୁହଁ, ସଦାନନ୍ଦ, ରାଜୀବଲୋଚନ ଓ କମଳଲୋଚନ ପ୍ରଭୃତଙ୍କର ସଂସ୍କାର-ପ୍ରଚେଷ୍ଟାକୁ ବ୍ୟର୍ଥତାରେ ପରିଣତ କରିଥିଲା, ତାହା ଏହି ଦୁଇଟି ପରିଚ୍ଛେଦ ନଥିଲେ ପରିସ୍ଫୁଟ ହୋଇ ପାରି ନଥାନ୍ତା। 'ମାମୁଁ'ର ପଞ୍ଚବିଂଶ ପରିଚ୍ଛେଦର 'ପଣ୍ଡିତ ସଭା' କଥାବସ୍ତୁ ସହିତ ସମ୍ପର୍କ-ବର୍ଜିତ ନୁହଁ। ଲେଖକ ତାଙ୍କ ଦାର୍ଶନିକ ମତବାଦର ପରିଚୟ ଦେବା ନିମନ୍ତେ ଏ ଦୀର୍ଘ ପରିଚ୍ଛେଦର ସମାବେଶ କରି ନାହାନ୍ତି। ଏଥିରେ ତତ୍‌କାଳୀନ ପଣ୍ଡିତ ସଭାର ଏକ ପ୍ରାଞ୍ଜଳ ଚିତ୍ର ଅଙ୍କନ କରିବା ସଙ୍ଗେ ସଙ୍ଗେ ମାନବ ଜୀବନର ରୂପକାର ଫକୀରମୋହନ ଦୁଇଟି ଅଭ୍ରାନ୍ତ ସତ୍ୟ ପାଠକ ସମ୍ମୁଖରେ ଉଦ୍‌ଘାଟିତ କରି-ଅଛନ୍ତି। ଯଥା—(କ) 'ମାନବାତ୍ମା ସ୍ୱଭାବରେ ଲୋତକ ଗୋଟିଏ ଜଡ଼ ଅଦର୍ଶ'—'ଲୋଡ଼େ' ଗୋଟିଏ ଅବଲମ୍ବନ। (ଖ) ଭଗବତ୍ ବିଶ୍ୱାସୀ ଲୋକ କେବଳ ଭାବେ—ଏକମାତ୍ର ଭଗବାନ୍ ମନୁଷ୍ୟର ସତ୍‌କାର୍ଯ୍ୟର ପୁରସ୍କାରଦାତା ଏବଂ କୁକର୍ମର ଦଣ୍ଡଦାତା। ତେଣୁ ସେହି ଲୋକ କେବଳ ଦୁଷ୍କାର୍ଯ୍ୟ କରିବାକୁ ଭୟ କରେ। ଯାହାର ଏପରି ଭଗବତ୍ ବିଶ୍ୱାସ ନାହିଁ, ସେ ଯେ କୌଣସି ପାପକର୍ମ କରିବାକୁ କୁଣ୍ଠିତ ହୁଏ ନାହିଁ। ଏହି ଦୁଇଟି ଚିନ୍ତାର ଭିତ୍ତି ଉପରେ ନାଜର ନଟବର ଦାସଙ୍କ ଚରିତ୍ର ଚିତ୍ରିତ, ଏବଂ 'ମାମୁଁ'

ଉପନ୍ୟାସ ରଚିତ ହୋଇଅଛି । ଏହି ଦୁଇଟି ଉକ୍ତିର ସତ୍ୟତା ନାଗରଙ୍କ ଜୀବନରେ ପ୍ରତିପାଦିତ ହୋଇଛି । ତେଣୁ 'ପଣ୍ଡିତ ସଙ୍ଘ'ରେ ଲେଖକ ମନୁଷ୍ୟ ଜୀବନ ସମ୍ପର୍କରେ ତାଙ୍କର ସ୍ପଷ୍ଟ ମନୋଭଙ୍ଗୀ ବ୍ୟକ୍ତ କରିଅଛନ୍ତି । ଏ ଜୀବନବୋଧ ତାଙ୍କର ବ୍ୟକ୍ତିଗତ ଅନୁଭୂତିର ଫଳ । କେବଳ ମହତ୍ ଓ ବ୍ୟାପ୍ତ କଳ୍ପନା ନୁହେଁ, କେବଳ ପ୍ରତ୍ୟକ୍ଷ ଅନୁଭୂତିର ଗଭୀରତା ନୁହେଁ, ଗଭୀର ମନନଶୀଳତା ଏବଂ ତୀବ୍ର ଜୀବନ-ଜିଜ୍ଞାସା ଆଧୁନିକ ଉପନ୍ୟାସରେ ନିଶ୍ଚିନ୍ତ ରହିବ । ଅଳ୍ପ କେତେ ଜଣ ପ୍ରତିଭାଶାଳୀ ଔପନ୍ୟାସିକଙ୍କୁ ବାଦ୍ ଦେଲେ ଫକୀରୋତ୍ତର ଓଡ଼ିଆ କଥା-ସାହିତ୍ୟରେ ବର୍ତ୍ତମାନ ଦେଖିବାକୁ ମିଳେ କେବଳ କାହାଣୀର ଫେନାୟିତ ପ୍ରସାଧନ, ଘଟନା-ପ୍ରବାହର ଆଟୋପ ଓ ଆଡ଼ମ୍ବର ଏବଂ ଫ୍ରୟେଡ୍ରୀୟ ମନସ୍ତତ୍ତ୍ୱ ବିଶ୍ଳେଷଣ ନାମରେ ବିକୃତ ମନୋଭଙ୍ଗୀ । ବର୍ତ୍ତମାନ ଅଧିକାଂଶ ଔପନ୍ୟାସିକ କାହାଣୀକାର ଜୀବନ-ଶିଳ୍ପୀ ନୁହନ୍ତି । ଏବେ ହୁଏତ ଅନେକ କୁଶଳୀ କଥା-ଶିଳ୍ପୀ ଅଛନ୍ତି, ଯେଉଁମାନେ ନବ ନବ ପଟଭୂମି ଉପରେ ମନୁଷ୍ୟ ଜୀବନର ବୈଚିତ୍ର୍ୟ ସନ୍ଧାନରେ ପ୍ରୟାସୀ ହେଉଅଛନ୍ତି । କିନ୍ତୁ ଫକୀରମୋହନଙ୍କ ପରି ଏପରି ବିପୁଳ ଅଭିଜ୍ଞତା ନେଇ ଆମ ଜାତୀୟ ଜୀବନର ଗୋଟିଏ ସଙ୍କଟମୟ ସନ୍ଧିକ୍ଷଣର ପୃଷ୍ଠପଟରେ ଓଡ଼ିଆ ଜାତିର ଆତ୍ମାର ସ୍ୱରୂପ ସନ୍ଧାନ କରି, ମାନବିକତାର ସମୁଜ୍ଜ୍ୱଳ ଆଦର୍ଶରେ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିବାର ଉଦଗ୍ର ଆକାଂକ୍ଷା ଆଜିକାଲି କେତେ ଜଣ କଥା-ଶିଳ୍ପୀଙ୍କ କୃତିରେ ଦେଖିବାକୁ ମିଳେ ?



( ୫ )

# ଦେଶାତ୍ମବୋଧ

ଫକୀରମୋହନ ଉତ୍କଳ-ଜନନୀଙ୍କର ଜଣେ ନିଷ୍ଠାପର ସେବକ ଥିଲେ । ଓଡ଼ିଆ ସାହିତ୍ୟର ଉନ୍ନତି ସାଧନ ତାଙ୍କ ଜୀବନର ପରମ ବ୍ରତ ଏବଂ ଚରମ ଲକ୍ଷ୍ୟ ହୋଇଥିଲେ ସୁଦ୍ଧା, ଉତ୍କଳର ସର୍ବାଙ୍ଗୀନ ଉନ୍ନତି କିପରି ସାଧିତ ହେବ, ଓଡ଼ିଶା ଶିକ୍ଷା, କୃଷି, ବ୍ୟବସାୟ, ବାଣିଜ୍ୟ, ସଭ୍ୟତା, ସଂସ୍କୃତି, ଜାତୀୟ ଚେତନା ଓ ଚରିତ୍ରବତ୍ତା ପ୍ରଭୃତି ସକଳ ଦିଗରେ ଭାରତରେ କିପରି ପ୍ରତିଷ୍ଠା ଓ ଗୌରବ ଅର୍ଜନ କରିବ, ଏ ଚିନ୍ତା ତାଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ଆକୁଳ କରିଥିଲା । ଜନ୍ମଭୂମିର ଦୁରବସ୍ଥା ଦେଖି ତାଙ୍କ ପ୍ରାଣ ଯେପରି ବ୍ୟଥିତ ହୋଇ ଉଠୁଥିଲା, ପଡ଼ୋଶୀ ପ୍ରଦେଶମାନଙ୍କର ଜାତୀୟ ଅଭିବୃଦ୍ଧି ଦେଖି ସେହି ଅଭିବୃଦ୍ଧି ପଥରେ ଅଗ୍ରସର ହେବା ନିମନ୍ତେ ସେ ସେହିପରି ଉନ୍ମୁଖ ଥିଲେ । ବାଲେଶ୍ୱରରେ ପ୍ରଥମ ଛାପାଖାନା ସ୍ଥାପନର ପ୍ରାଣାନ୍ତକ ଉଦ୍ୟମଠାରୁ ଆରମ୍ଭ କରି ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ରକ୍ଷା କରିବା ନିମନ୍ତେ ସେ ଯେଉଁ କଠିନ ସାଧନାର ପରିଚୟ ଦେଇଅଛନ୍ତି, ତାହା ଆଜି ଇତିହାସରେ ଜାଜ୍ୱଲ୍ୟମାନ ହୋଇ ରହିଛି । ଉତ୍କଳ ସମ୍ମିଳନୀର ସଭାପତିତ୍ୱ ଗ୍ରହଣ କରି ସେ ଦେଶବାସୀଙ୍କୁ ମଧୁସୂଦନ ଓ ଗୋପବନ୍ଧୁଙ୍କ ପରି ଉତ୍କଳ-ଜନନୀଙ୍କର ଏକନିଷ୍ଠ ସେବକ ହେବାକୁ ଯେଉଁ ବଳିଷ୍ଠ ଉଦ୍‌ବୋଧନ ଦେଇଅଛନ୍ତି ଓ ଜାତିପ୍ରାଣତାର ଯେଉଁ ଜ୍ୱଳନ୍ତ

ପରିଚୟ ଦେଇଅଛନ୍ତି, ତାହା ଯୁଗ ଯୁଗ ଧରି ଜନ୍ମଭୂମିର ହିତୈଷୀ ସନ୍ତାନମାନଙ୍କର କର୍ମ-ପ୍ରେରଣାର ଉତ୍ସ ହୋଇ ରହିଥିବ । ଜନ୍ମଭୂମି ଆମକୁ କଣ ନ ଦେଇଛି, ଆମର କେତେ ଅଳିଅଳି ନ ସହିଛି ଏବଂ ଆମର କି ଅସୀମ କଲ୍ୟାଣ ସାଧନ ନ କରିଛି, ଅଥଚ ଆମେ ଏଡ଼େ ଅବିବେକୀ ଓ କୃତଘ୍ନ ଯେ ଆମେ ସେ ଉପକାରର ଋଣ ପରିଶୋଧ କରିବା କଣ, ଦିନେ ମଧ୍ୟ ସେ କଥା ନିରୋଳାରେ ବସି ଭାବୁନଥାଉଁ, ଏହାଠାରୁ ବଳି ଗଭୀର ଲଜ୍ଜା ଓ ଦୁଃଖର କଥା ଅଉ କଣ ହୋଇପାରେ,—ଏହି ଚିନ୍ତାରେ ତାଙ୍କର ପ୍ରାଣ ସତତ ଆକୁଳ ହୋଇ ଉଠୁଥିଲା । ଏହି ଉଦାର ଓ ଉନ୍ନତ ଚିନ୍ତା ନିଜର ସ୍ୱାର୍ଥରେ ଜଳାଞ୍ଜଳି ଦେଇ ତାଙ୍କୁ ନାତିର ବୃହତ୍ତର କର୍ତ୍ତବ୍ୟ-ସାଧନରେ ନିୟୋଜିତ ହେବାକୁ ପ୍ରେରଣା ଦେଇଥିଲା । 'କର୍ତ୍ତବ୍ୟ-ପାଳନ' କବିତାରେ ଅତି ସ୍ୱାଭାବିକ ଓ ସ୍ୱଚ୍ଛନ୍ଦ ଭାବରେ ସେ ସେହି ମହାସ୍ଥାନ୍ ଭାବଟି ବ୍ୟକ୍ତ କରିଅଛନ୍ତି—

କର୍ତ୍ତବ୍ୟ ସାଧନ ଯେ ତ ପ୍ରକୃତ ଜୀବନ,  
ଆଳସେ୍ୟ ସମୟକ୍ଷେପ ଆତ୍ମାର ହନନ ।  
ପୃଥିବୀ ଦେଇଛି ଯେତେ ଦ୍ରବ୍ୟ ତୁମ୍ଭ ପାଇଁ  
ବିଚାର ତ ପରିଶୋଧ କରିଛ କି ନାହିଁ ।

( 'କର୍ତ୍ତବ୍ୟ-ପାଳନ'—ଅବସରବାସରେ )

ଏ ଋଣ ପରିଶୋଧ କରିବ କିଏ ? ଆମ ତୁମ ପରି କ୍ଷୁଦ୍ର-ଚେତା ସ୍ୱାର୍ଥସର୍ବସ୍ୱ ବ୍ୟକ୍ତି—ପାନରୁ ଟିକିଏ ଚୂନ ଖସିଗଲେ ଯେ କ୍ରୋଧରେ ରକ୍ତ ଗୁଞ୍ଜଳ ଗ୍ରୈବାନ୍ତ, ଯାହାର ଦୃଷ୍ଟି କେବଳ

ନିଜ ଘରର ସଙ୍କୀର୍ଣ୍ଣ ପରିବେଶ ମଧ୍ୟରେ ଆବଦ୍ଧ, ଯେ ଧନେ ନିଜର ସୁଖ ଦୁଃଖ ବ୍ୟତୀତ ଅନ୍ୟ କାହା କଥା ଚିନ୍ତା କରିବାକୁ ମଧ୍ୟ ସମୟ ପାଇ ନାହିଁ ? ଏ ଋଣ ପରିଶୋଧ କରିବ କେବଳ ପରୋପକାରୀ ଲୋକ । ପର ପାଇଁ ଯାର ପ୍ରାଣ କାନ୍ଦେ, ପରକୁ ସୁଖୀ କରିପାରିଲେ ଯେ ଭାବେ ଯେ ଆଜ ସେ ଗୋଟିଏ ବଡ଼ କାମ କରିଛି, ଫକୀରମୋହନ ଏହିପରି ଜଣେ ପରୋପକାରୀ ବ୍ୟକ୍ତି ଥିଲେ । ଏହି ପରୋପଚିକୀର୍ଷା ହିଁ ତାଙ୍କ ଜୀବନର ଧ୍ୟାନ-ମନ୍ତ୍ର ଥିବାରୁ ସେ ଉତ୍କଳ-ଜନନୀଙ୍କର ସର୍ବାଙ୍ଗୀନ ଉନ୍ନତି କିପରି ତ୍ୱରିତ ସାଧିତ ହେବ, ଭକ୍ତ ତଦ୍‌ଗତ ଚିତ୍ତରେ ତାର ଆରାଧ୍ୟ ଦେବତାକୁ ଜପ କଲାପରି ଅହରହ ଜପ କରୁଥିଲେ । ପ୍ରାଣର ସେହି ବାସନା ଫକୀରମୋହନ ଅତି ସରଳ ଭାବରେ ପ୍ରକାଶ କରି ଲେଖିଅଛନ୍ତି—

ପର ଉପକାର ପାଇଁ ଯାହାର ଜୀବନ,
ଜଗତ ମଧ୍ୟରେ ସେହି ଲୋକ ଧନ୍ୟ ଧନ୍ୟ ।
ଅସ୍ଥିର ଜଗତ ମଧ୍ୟେ ସକଳ ଅସାର,
ସାର ମାତ୍ର କରିବାର ପର ଉପକାର ।

( 'ପରୋପକାର'—ଅବସରବାସରେ )

ଫକୀରମୋହନଙ୍କ ଏହି ଦେଶାତ୍ମବୋଧ, ଅର୍ଥାତ୍ ନିଜ ଦେଶକୁ ଠିକ୍ ନିଜର ଆତ୍ମା ପରି ମନେ କରିବା, ଏହାର ସୁଖରେ ଆନନ୍ଦ ଅନୁଭବ କରିବା, ଏହାର ଅତୀତ କିମ୍ବା ବର୍ତ୍ତମାନ ଗୌରବରେ ଗର୍ବ ବୋଧ କରିବା, ଏହାର ସାମାଜିକ, ଅର୍ଥ-ନୈତିକ, ପାରିବାରିକ, ଏପରି ନାନା ସମସ୍ୟାକୁ ଅନ୍ତର୍ଦୃଷ୍ଟିରୁ ସହିତ ଗଭୀର ଭାବରେ ଉପଲବ୍ଧି କରି ତାହା ସବୁ ଲୋକ-

ଲୋଚନ ଗୋଚରକୁ ଆଣି ତାହାର ସମାଧାନର ଉପାୟର ଇଙ୍ଗିତ ଦେବା, ସମାଜର ଯୁଗସଞ୍ଚିତ ନାନା କୁସଂସ୍କାର ଓ ଆବର୍ଜନା ଦୂର କରିବାକୁ ଚେଷ୍ଟା କରିବା ଏବଂ ଜାତୀୟ ଉନ୍ନତି ପଥରେ ଯାହା ଘୋର ଅନ୍ତରାୟ ସୃଷ୍ଟି କରେ, ଯଥା—ଅଶିକ୍ଷା, କୁଶିକ୍ଷା, ଅନୀତି, ଅନାଚାର, ଶୋଷଣ, ଅତ୍ୟାଚାର, ଅଭିଜାତ୍ୟ, ଅହଂକାର, ଅଭିମାନ, ପ୍ରବଞ୍ଚନା, ପରାଧୀନତା ଓ ବୁଦ୍ଧିହୀନତା, ଏ ସବୁକୁ ଆକ୍ଷେପ ଓ ବ୍ୟଙ୍ଗ କରି ସମାଜକୁ ନିଷ୍କଳଙ୍କ ଓ ଲୋକ ଚରିତ୍ରକୁ ଅପାପବିଦ୍ଧ କରିବାର ସ୍ପୃହଣୀୟ ପ୍ରୟାସ—ଏ ସବୁ ତାଙ୍କ କଥା-ସାହିତ୍ୟରେ କେଉଁଠାରେ ଅଭିବ୍ୟକ୍ତ ଲାଭ କରିଛି ତାହା ଅନୁଶୀଳନ କରିବାର କଥା ।

ମାତୃଭାଷାର ଉନ୍ନତି ସାଧନ ଦେଶର ଶିକ୍ଷିତ ଯୁବ ସଂପ୍ରଦାୟର ପ୍ରଥମ କର୍ତ୍ତବ୍ୟ । ଭାଷା ହେଉଛି ଭାବର ବାହନ, ଚିନ୍ତା ହେଉଛି କର୍ମର ଜନୟିତ୍ରୀ, ଆଦର୍ଶ ହେଉଛି ମହତ୍ ଜୀବନର ଅବଲମ୍ବନ । ତେଣୁ ନିଜର ଭାଷା ପ୍ରତି ସର୍ବାଦୌ ଦେଶର ଶିକ୍ଷିତ ଯୁବକମାନଙ୍କ ଦୃଷ୍ଟି ଦେବାକୁ ହେବ । ବିଦେଶୀ ଭାଷା ପଢ଼ି ଯୁବକମାନେ ଯେପରି ନିଜର 'ମାନସଂଭ୍ରମଶାଳିନୀ' ଓ 'ସୌନ୍ଦର୍ଯ୍ୟ-ଶାଳିନୀ' ପୁଣ୍ୟମୟୀ ମାତୃଭାଷାର ଚର୍ଚ୍ଚାକୁ ଉପେକ୍ଷା ନ କରନ୍ତି, ଏଥିପାଇଁ ସେ ସତର୍କବାଣୀ ଶୁଣାଇ କହିଅଛନ୍ତି—"ଜନନୀର ଗୌରବବର୍ଦ୍ଧନ ସୁପୁତ୍ରମାନଙ୍କ ପ୍ରତି ନିର୍ଭର କରେ । ନିରାଶ୍ରୟା କୁନ୍ତୀ ଦେବୀଙ୍କ ଗୌରବବର୍ଦ୍ଧନ ସମୟରେ ଲାଞ୍ଛିତା ଅପଦସ୍ଥା ଗାନ୍ଧାରୀ ଦେବୀ ନିଶ୍ଚୟ ମନରେ ବୁଝୁଁଥିବେ—ଅଯୋଗ୍ୟ ଶତପୁତ୍ର ବଦଳରେ ମୁଁ ଗୋଟିଏ ମାତ୍ର ଅର୍ଜୁନ ପାଇଥିଲେ ମୋହର କଣ ଏପରି ଭାଗ୍ୟ ବିପର୍ଯ୍ୟୟ ଘଟିଥାନ୍ତା ?"

( ପ୍ରାୟଶ୍ଚିତ୍ତ—ସପ୍ତମ ପରିଚ୍ଛେଦ )

ଏଠାରେ ଫକୀରମୋହନଙ୍କର କହିବାର ତାତ୍ପର୍ଯ୍ୟ ହେଉଛି—ବଙ୍ଗଭାଷା ପ୍ରଭୃତି ଅତ୍ୟନ୍ତ ସମୃଦ୍ଧିଶାଳିନୀ, କିନ୍ତୁ ପ୍ରାଚୀନତାରେ ସହସ୍ରାଧିକ ବର୍ଷିୟସୀ ଉତ୍କଳ ଭାଷାର ସେ ପୂର୍ବ ଗୌରବ ଆଜି ବିଲୁପ୍ତ । ତାହାର ସାହିତ୍ୟ ଅନ୍ୟାନ୍ୟ ପ୍ରଦେଶର ସାହିତ୍ୟ ସହିତ ସମକକ୍ଷ ନୁହେଁ । ଉତ୍କଳ-ସାହିତ୍ୟକୁ ଏ ଲାଞ୍ଛନାରୁ ମୁକ୍ତ କରିବାକୁ ହେବ । ଅର୍ଜୁନଙ୍କ ପରି ଗୋଟିଏ ମାତ୍ର ସାହିତ୍ୟ-ବୀର ଓଡ଼ିଶାରେ ଜନ୍ମଗ୍ରହଣ କରି ତାଙ୍କ ସାହିତ୍ୟ-ସାଧନାରେ ମନପ୍ରାଣ ନିୟୋଜିତ କଲେ ଉତ୍କଳ-ସାହିତ୍ୟର ପୂର୍ବ ଗୌରବ ଫେରି ଆସିବ । ଓଡ଼ିଆ ଭାଷା ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କ ସହିତ ସମାନ ହୋଇ ଠିଆ ହେବ । ସେ ସମୟରେ ରାଧାନାଥ, ମଧୁସୂଦନ ଓ ଫକୀର-ମୋହନ ପ୍ରଭୃତି ଜଣେ ଜଣେ ସାହିତ୍ୟରଥୀ ଥିଲେ । ସେମାନେ ଅଣ୍ଟା ଭିଡ଼ି ବାହାରି ନଥିଲେ ଓଡ଼ିଆ ଭାଷାକୁ ଲୋପ କରିଦେବା ପାଇଁ ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ସେଥିରେ ଜୟ ଲାଭ କରିଥାନ୍ତେ 'ଓଡ଼ିୟା ସ୍ୱତନ୍ତ୍ର ଭାଷା ନୟ' ଆନ୍ଦୋଳନର ଉଦ୍ୟୋକ୍ତାମାନେ ।

ଦେଶର ଯୁବକମାନେ ଇଂରେଜି ଭାଷା ପଢ଼ନ୍ତୁ, ଇଂରେଜୀ ସାହିତ୍ୟ ଚର୍ଚ୍ଚା କରନ୍ତୁ, କିନ୍ତୁ ମାତୃଭାଷାକୁ ଅବହେଳା କରନ୍ତୁ ନାହିଁ । ଓଡ଼ିଆ ଭାଷାର 'ଉପାସନା' କରନ୍ତୁ । ଅସ୍ମମାନଙ୍କର ଜାତି ସାଧାରଣର ଉନ୍ନତି ଇଂରେଜି ଭାଷାର 'ଉପାସନା' ଯୋଗେ ଆକାଂକ୍ଷା କରିବା ବିଡ଼ମ୍ବନା ମାତ୍ର । ଜାତି ବୋଇଲେ ବିଶ୍ୱବିଦ୍ୟା-ଳୟରୁ ଡିଗ୍ରୀ ହାସଲ କରିଥିବା କେତେ ଜଣ ଇଂରେଜି ପାଠୁଆ ଲୋକଙ୍କୁ ବୁଝାଏ ନାହିଁ । ଯେଉଁ ଅଗଣିତ ଅଶିକ୍ଷିତ ଓ ଅଳ୍ପ ଲୋକ

ମୁଣ୍ଡୁର ପଲ୍ଲୀରେ ବାସ କରୁଛନ୍ତି ସେମାନେ ବ ଜାତ ନାମରେ 'ବାଚ୍ୟ'। ସରଳ ଓଡ଼ିଆ ଭାଷାରେ ଗଣ-ସାହିତ୍ୟ ସୃଷ୍ଟି କରି ସେମାନଙ୍କର ଅଜ୍ଞାନ-ଅନ୍ଧକାର ଦୂର କରିବାକୁ ହେବ । ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର କରିବାକୁ ହେବ । ମାତୃଭାଷାର ହିତାକାଂକ୍ଷୀ ଫକୀରମୋହନଙ୍କ ଭାଷାରେ—"ବିଦେଶୀୟ ଭାଷାରେ ଜ୍ଞାନାଲୋଚନା ଜଳପୂର୍ଣ୍ଣ ପାତ୍ରରେ ଘୃତବିନ୍ଦୁ ପତନବତ୍ ଅର୍ଥାତ୍ କେବଳ ଅଳ୍ପ ଲୋକଠାରେ ଜ୍ଞାନ ଅବଦ୍ଧ ଥାଏ; ମାତୃଭାଷାରେ ଜ୍ଞାନାଲୋଚନା ଜଳପାତ୍ରରେ ତୈଳବିନ୍ଦୁ ପତନବତ୍ ସର୍ବତ୍ର ବିସ୍ତୀର୍ଣ୍ଣ ହୋଇଯାଏ" । (ପ୍ରାୟଶ୍ଚିତ୍ତ—୭ମ ପରିଚ୍ଛେଦ)

ଶିକ୍ଷିତ ଯୁବକମାନେ ଏକଥା ବୁଝି ମାତୃଭାଷାର ଚର୍ଚ୍ଚାରେ ମନୋଯୋଗୀ ହେବାର ଦେଖି ଫକୀରମୋହନ ମନେ ମନେ ବିଶେଷ ଆନନ୍ଦ ଉପଭୋଗ କରୁଥିଲେ, ଏବଂ ଏମାନଙ୍କ ସାହିତ୍ୟ-ସେବା ଯୋଗୁଁ ଜନ-ସାଧାରଣଙ୍କର ଅଜ୍ଞାନ ଯେ ନିଶ୍ଚୟ ଦିନେ ଦୂରୀଭୂତ ହେବ ଏବଂ ଉତ୍କଳ-ସାହିତ୍ୟ ସମୃଦ୍ଧିଶାଳୀ ହୋଇ ଉଠିବ, ବାର୍ଦ୍ଧକ୍ୟରେ ଏହି ଆଶା ଓ ବିଶ୍ୱାସରେ ସେ ଭାରି ଉତ୍ସାହିତ ହୋଇ ରହିଥିଲେ । ଦେଶର ସାହିତ୍ୟପ୍ରେମୀ ଯୁବକମାନଙ୍କୁ ସେ ଅତ୍ୟନ୍ତ ସ୍ନେହ ଓ ଆଦର କରୁଥିଲେ, ଏବଂ ସେହିମାନେହିଁ ଦେଶର ଆଶା ଭରସାର ସ୍ଥଳ, ସେହିମାନଙ୍କ ନିଃସ୍ୱାର୍ଥ ସେବା, ସାଧନା ଓ ହିତୈଷିଣାରେ ଯେ ଦେଶର ଦୁର୍ଗତିମୋଚନ ହେବ, ଏଥିରେ ତାଙ୍କର ଅଣୁମାତ୍ର ସନ୍ଦେହ ନଥିଲା । ତାଙ୍କର ସେହି ଆଶା ଓ କଳ୍ପନା ସେ ପ୍ରକାଶ କରିବାକୁ ଯାଇ ଲେଖିଅଛନ୍ତି, "ଦେଶରେ ଦୁର୍ଗତି ତଥା ଜାତୀୟ କଳଙ୍କମୋଚନର ଭାର ଯେଉଁ କୁଳନନ୍ଦନ ଶିକ୍ଷିତ ଯୁବକମାନଙ୍କ ପ୍ରତି ସମ୍ପୂର୍ଣ୍ଣରୂପେ ଅର୍ପିତ ଅଛି, ସେମାନଙ୍କର

ବର୍ତ୍ତମାନ ମାତୃଭାଷା ପ୍ରତି ଅନୁରାଗ, ଏବଂ ଥୋକେ ଶିକ୍ଷିତ ଯୁବକ ଜନ୍ମଭୂମିର କଲ୍ୟାଣ କାମନାରେ ସାଂସାରିକ ସମସ୍ତ ଉନ୍ନତି, ସମସ୍ତ ସୁଖାଭିଳାଷ ବର୍ଜନପୂର୍ବକ ଜୀବନ ପଣ କରିବା ଦେଖି ଦେଶର ମଙ୍ଗଳକାମୀ ଅଥଚ ସବୁ ବିଷୟରେ ସମ୍ପୂର୍ଣ୍ଣ ଅକ୍ଷମ ଫକୀରର ଲେଖକେ ସହଜ ଜୀବନରେ ସେହି ଉତ୍ସାହୀ ଯୁବକମାନଙ୍କ ଦୀର୍ଘ ଜୀବନ କାମନା କରି ଅଶାନ୍ତ ପ୍ରାଣରେ ଚରମ ଦିବସକୁ ସୁଖକର ଜ୍ଞାନ କରି ନିର୍ଭୟ ଏବଂ ଆନନ୍ଦିତ ଚିତ୍ତରେ ତ୍ରୟୋଣ ସକାଶେ ପ୍ରସ୍ତୁତ ହେଉଛନ୍ତି ।" (ପ୍ରାୟଶ୍ଚିତ୍ତ—୭ମ ପରିଚ୍ଛେଦ) ।

ଫକୀରମୋହନ କେବଳ ସାହିତ୍ୟ-ସାଧକ ନଥିଲେ, ଓଡ଼ିଆ ସାହିତ୍ୟର ଜଣେ ପରମ ପୃଷ୍ଠପୋଷକ ଓ ମଙ୍ଗଳାକାଂକ୍ଷୀ ଥିଲେ । ସେ ନିଜେ ଯେତେ ଲେଖୁନଥିଲେ ଅନ୍ୟମାନଙ୍କୁ ଲେଖା ଲେଖି କରି ଓଡ଼ିଆ ସାହିତ୍ୟର ଉନ୍ନତି ବିଧାନ କରିବାକୁ ତହିଁରୁ ଅଧିକ ଉତ୍ସାହିତ କରୁଥିଲେ । ତରୁଣ ଓ ଉଦୀୟମାନ କବି-ମାନଙ୍କର କବିତା ପଢ଼ି ସେ ଆନନ୍ଦରେ ତନ୍ମୟ ହୋଇ ପଡ଼ୁଥିଲେ । ତାଙ୍କ ସଂସ୍ପର୍ଶରେ ଯେଉଁମାନେ ଆସୁଥିଲେ, ସେମାନେ ପ୍ରାଣରେ ଜାତୀୟ ସ୍ପନ୍ଦନ ଅନୁଭବ ନକରି ରହିପାରୁନଥିଲେ ।

ଫକୀରମୋହନଙ୍କ ଦେଶାତ୍ମବୋଧର ଆଉ ଗୋଟିଏ ବିଭବ—ତାଙ୍କର ମାନବ-ପ୍ରୀତି । ପରର ଦୁଃଖ ଦେଖିଲେ ତାଙ୍କର ପ୍ରାଣ ଅଥୟ ହେଉଥିଲା । ସେ ଯେପରି ଦୁଃଖୀର ଆତ୍ମାରେ ନିଜର ଆତ୍ମାକୁ ମିଶାଇ ଦେଇ ତା ସହିତ ଏକାକାର ହୋଇ ଯାଉଥିଲେ । ତା ପାଇଁ ଅଶ୍ରୁମୋଚନ କରୁଥିଲେ । ତାକୁ ନିଜ ପରିବାରର ଜଣେ ବ୍ୟକ୍ତି ବୋଲି ମନେ କରୁଥିଲେ । ଏ ସ୍ନେହ ମମତା ତାଙ୍କର କେବଳ ମନୁଷ୍ୟ ସମାଜରେ ଆବଦ୍ଧ ନଥିଲା—ବୃକ୍ଷଲତା, ଜୀବଜନ୍ତୁ

ମଧ୍ୟ ଏହି ଅମୂଲ୍ୟ ମମତାର ଅଂଶଭାଗୀ ଥିଲେ । ତାଙ୍କର ଆତ୍ମ-ଚରିତରୁ ଜଣାଯାଏ, ଗଡ଼ଜାତମାନଙ୍କର ଦୁଃସ୍ଥ ଓ ଅତ୍ୟାଗୃହୀତ ପ୍ରଜାମାନଙ୍କର ଉନ୍ନତି କରିବାକୁ ସେ କିପରି ତତ୍ପରତା ପ୍ରକାଶ କରୁଥିଲେ । ଏଥିପାଇଁ ତାଙ୍କୁ ଗଡ଼ଜାତ ରାଜାମାନଙ୍କର ଚକ୍ଷୁଶୂଳ ହେବାକୁ ପଡ଼ିଛି, କିନ୍ତୁ ପରୋପକାର ବ୍ରତ-ସାଧନାରୁ ଫକୀର-ମୋହନ କଦାପି ବିଚ୍ୟୁତ ହୋଇ ନାହାନ୍ତି । ନ-ଅଙ୍କ ସମୟରେ (ସନ ୧୮୬୬ ମସୀହା) ଫକୀରମୋହନ 'କମ୍ବଳାସନ ଯାକି ଏକାକୀ ଧାନ ବିଲକୁ ଯାଇ, ବିଲ ମଧ୍ୟରେ ଆସନ ପାରି ବସି, ଈଶ୍ବରଙ୍କ-ଠାରେ ଲୋକମାନଙ୍କ ରକ୍ଷା ସକାଶେ ପ୍ରାର୍ଥନା କରିଅଛନ୍ତି ।' (ଆତ୍ମ-ଜୀବନଚରିତ—୮ମ ପରିଚ୍ଛେଦ) । ବାଲେଶ୍ବରରେ ପ୍ରଥମ ଛାପାଖାନା ବସାଇବାକୁ ଯାଇ ଦେହରୁ ରକ୍ତ ଦେଇଛନ୍ତି । କଠୋର ପରିଶ୍ରମ ଫଳରେ 'ପଣ୍ଠାଭାଗରେ ରକ୍ତସ୍ରାବ ଦ୍ବାରା ଲୁଗା ତିନ୍ତି ଭୂଇଁରେ ରକ୍ତ ବହିଯାଇଛି ।' ଫକୀରମୋହନଙ୍କର ଏ ଜନ-କଲ୍ୟାଣ ବ୍ରତ ଓ ସ୍ନେହ ସହାନୁଭୂତିଶୀଳତା ତାଙ୍କ କଥା-ସାହିତ୍ୟରେ ଅପରୂପ ରୂପ ଲାଭ କରିଛି । ମାନବ-ସେବାର ଜ୍ବଳନ୍ତ ସ୍ବାକ୍ଷର ବହନ କରିଛି, ତାଙ୍କ 'ଛ ମାଣ ଆଠ ଗୁଣ୍ଠ'ର ସାଆନ୍ତାଣୀ ଚରିତ୍ର । ଜୀବନ-ରୂପକାର ଫକୀରମୋହନ ଏହି ଚିର-ଉପେକ୍ଷିତା, ହତ-ଭାଗ୍ୟା ଅଥଚ ମମତାମୟୀ ନାରୀର ଚରିତ୍ରରେ ସତେ ଯେପରି ନିଜର ଆକାଂକ୍ଷା ଓ ଆଦର୍ଶନିଷ୍ଠା ରୂପାୟିତ କରିଅଛନ୍ତି । ସାଆନ୍ତାଣୀଙ୍କର ପରୋପକାରର ଅନ୍ତ ନାହିଁ । ସେ ନିଜର ଜୀବନ ଉତ୍ସର୍ଗ କରି ପରର ଦୁଃଖ ମୋଚନ କରିବାକୁ ଜୀବନର ଏକମାତ୍ର ବ୍ରତ କରି ନେଇଥିଲେ । କାହାରି ଉପକାର କରିପାରିଲେ ସାଆନ୍ତାଣୀ ମନେ କରୁଥିଲେ ସେ କୋଟିନିଧି ପାଇଲେ । ତାଙ୍କ 'ମାମୁଁ' ଉପନ୍ୟାସର ସରସ୍ବତୀ ଦେବୀ ସେହିପରି ଜଣେ ପରୋପକାରିଣୀ

ନାୟ ଥିଲେ । ଗୃହମଣିଙ୍କ ବୈଧବ୍ୟ ପରେ ନାଜର ନଟବର ତାଙ୍କର ଜମିଦାରୀକୁ ଲୁଟି କରିବାରେ ଲାଗିଲା । ଉଆସର ପୋଇଲୀମାନେ ଭୋକ ଉପାସରେ ରହିଲେ । ଉଆସ ମରୁଭୂମିରେ ପରିଣତ ହେଲା । ସରସ୍ୱତୀ ଏଥିରେ ମର୍ମାହତ ହୋଇ ପୋଇଲୀମାନଙ୍କ ପ୍ରାଣରକ୍ଷା କରିବା ନିମନ୍ତେ ଅପଣା ବେକର ମାଳଟି କାଢ଼ି ଦେଇ ଟଙ୍କା ଅଣ୍ଡ ଧାନ କରଜ ଆଣିବା ନିମନ୍ତେ ସାଧୁ ସାହୁ ମହାଜନ ପାଖକୁ ଜଣେ ପାଞ୍ଜିଆକୁ ପଠାଇଦେଲେ । ସାଧୁ ସାହୁ ମହାଜନ ମୂର୍ଖ । ଇଂରେଜ ପାଠର ଧାର ଧରେ ନାହିଁ । କିନ୍ତୁ ସେ ଧାଇମା ସରସ୍ୱତୀଙ୍କର ଚିଠି ପଢ଼ି କାନ୍ଦ ପକାଇ କହିଲା, "ମୁଁ କଣ ଏଡ଼େ ନିମକ-ହାରାମ ହେଲି ! ମାଳ ରଖି ଟଙ୍କା ଦେବି, ପୁଣି କଲନ୍ତର ନେବି ? ଏ ସବୁ ବିଷୟ କାହାର ? ଯେତେବେଳେ ଯେତେ ଟଙ୍କା ଲୋଡ଼ା, ଯୋଗାଇ ଯାଉଥିବି ।" ('ମାମୁଁ'—ଷଠ୍‌ବିଂଶ ପରିଚ୍ଛେଦ)

ଫକୀରମୋହନ ସାଧୁ ସାହୁ ମହାଜନର ଏ ବଦାନ୍ୟତା, ତ୍ୟାଗ ଓ ମହନୀୟତା ଉପରେ ନିଜର ମତ ବ୍ୟକ୍ତ କରିବାକୁ ଯାଇ ଲେଖିଅଛନ୍ତି, "ହେ ପାଠୁଆ ନଟବର ଦାସେ ! ଦେଲେ ଅସି ମୂର୍ଖ ସାଧୁ ସାହୁର ଚେହ୍ରାଟା ଦେଖି ଯାଆନ୍ତୁ ।"

ଉତ୍କଳମଣି ଗୋପବନ୍ଧୁଙ୍କ ପରି ସେ ଦରିଦ୍ର ନାରାୟଣର ପୂଜାରୀ ଥିଲେ । ଧନୀ ଓ ଅଭିଜାତ୍ୟସମ୍ପନ୍ନ ବ୍ୟକ୍ତିମାନଙ୍କର ଚରିତ୍ର ସେ ବିଶେଷ ସାବଧାନତାସହ ଚିତ୍ରଣ କରିଥିଲେ ବି ତାଙ୍କ ଅନ୍ତରର ଦରଦ ଓ ଅନୁକମ୍ପାପ୍ରବଣତା ଦରିଦ୍ର, ନିଃସ୍ୱ, ଅତ୍ୟାଚାରିତ ଓ ସମାଜର ଅବହେଳିତ ଲୋକମାନଙ୍କ ଚରିତ୍ର-ଚିତ୍ରଣରେ ଅଧିକ ଜୀବନ୍ତ ଭାବରେ ପରିସ୍ଫୁଟ ହୋଇଅଛି । ତନ୍ତିଆଣୀ ଶାରିଆ ଛ ମାଣ ଆଠ ଗୁଣ୍ଠ ଓ ତା ନେଳୀ ଗାଈ ପାଇଁ କାନ୍ଦି କାନ୍ଦି ଭୋକ ଉପାସରେ ମଙ୍ଗରାଜଙ୍କ ଦୁଆରେ ମରିଛି । ଫକୀରମୋହନ ପ୍ରାଣର

ଗଭୀର ସଂବେଦନାରେ ଏ ଚିତ୍ର ଅଙ୍କନ କରି ପାଠକପାଠିକା-ମାନଙ୍କ ଚକ୍ଷୁ ଅଶ୍ରୁସିକ୍ତ କରିଛନ୍ତି—ସେମାନଙ୍କ ହୃଦୟରେ ବେଦନାର ଗଭୀର କ୍ଷତ ଅଙ୍କନ କରି ଦେଇଅଛନ୍ତି । 'ରେବତୀ' ଗଳ୍ପରେ ପରୋପକାରୀ ବାସୁଦେବର ଆକସ୍ମିକ ମୃତ୍ୟୁ ଓ ରେବତୀର ଦୁଃଖ ଓ ନୈରାଶ୍ୟଜନିତ ଅବସ୍ଥାର କରୁଣ ଚିତ୍ର ଅଙ୍କନ କରି ଦୁଃଖଦୈନ୍ୟନିପୀଡ଼ିତ ମନୁଷ୍ୟ ପ୍ରତି ତାଙ୍କ ଅନ୍ତରର କରୁଣା ଓ ସମବେଦନାର ପରିଚୟ ଦେଇଅଛନ୍ତି । ପରର କଲ୍ୟାଣ ସାଧନ କରିବାରେ ହିଁ ଜୀବନର ସାର୍ଥକତା ନିହିତ । ଏହି ସୁମହାନ୍ ସତ୍ୟ ସେ 'ସ୍ତ୍ରୀପୁଅ ଅନନ୍ତା' ଗଳ୍ପରେ ଉପସ୍ଥାପିତ କରିଅଛନ୍ତି । ଯେଉଁ ପରିବାର କମ୍ବା ସମାଜରେ ସେ ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରଣୟର ମାଧୁରୀ ଅନୁଭବ କରିଅଛନ୍ତି, ନିଜର ଅନୁଭବ ଓ କଳ୍ପନାରେ ସେ ଦାମ୍ପତ୍ୟ ପ୍ରେମର ଚିତ୍ରକୁ ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଅଛନ୍ତି, ହେଉପଛକେ ସେ ଦାମ୍ପତ୍ୟ ପ୍ରଣୟ ସମାଜର ଅତି ନିମ୍ନଶ୍ରେଣୀର ଲୋକଙ୍କ ଘରର କଥା । ଉନ୍ନତ ଚରିତ୍ର ଚିତ୍ରଣ କରିବାରେ କମ୍ବା ଉଚ୍ଚ ଚିନ୍ତା ଓ ଆଦର୍ଶ ଉପସ୍ଥାପନ କରିବାରେ ସେ ସାନ-ବଡ଼, ଧନୀ-ଦରିଦ୍ର, ସ୍ପୃଶ୍ୟ-ଅସ୍ପୃଶ୍ୟ ଏ ଭେଦଭାବ ମାନୁନଥିଲେ । ବଦଆ ପାଣ ଭୂଷଣ୍ଡପୁର ଗାଁର ଚୌକିଆ, ଜାତିରେ କଣ୍ଡରା । ତାର ପୁଅ ସପନା । ତାରେ କଣ୍ଢୁରୁଣୀ ସ୍ତ୍ରୀ ଚେମୀ । ଏଇ ଗେରସ୍ତ ଭାର୍ଯ୍ୟାଙ୍କ ମଧ୍ୟରେ ଥିଲା ଗଭୀର ଦାମ୍ପତ୍ୟ ପ୍ରଣୟ । ଲୋକେ ତାଙ୍କ ନାଁ ଦେଇଥିଲେ 'ବଗଲା ବଗୁଲି' । ଏ ଦୁହେଁ ସାଙ୍ଗସୁଖ ହୋଇ ଜରରେ ମଲେ । ଜୀବନରେ ବନ୍ଧୁ—ପରପାରରେ ମଧ୍ୟ ବନ୍ଧୁ । ଏ ଦୁହିଙ୍କ ଜୀବନ ଯେପରି ଧନ୍ୟ—ମୃତ୍ୟୁ ମଧ୍ୟ ସେହିପରି ଧନ୍ୟ । ଫକୀରମୋହନଙ୍କ କଥା-ସାହିତ୍ୟ ଏହିପରି ଭାବରେ ତାଙ୍କର ଦେଶାତ୍ମବୋଧ ଓ ମାନବୀୟ ପ୍ରୀତି ଉପରେ ପ୍ରତିଷ୍ଠିତ ।

---

( ୭ )

# ଶିଳ୍ପୀ ଓ ଶିଳ୍ପମାନସ

ଫକୀରମୋହନଙ୍କର ଉପନ୍ୟାସ-ସାହିତ୍ୟ ପ୍ରତି ଗୋଟିଏ ଅମୋଘ ଓ ଅବ୍ୟକ୍ତ ଆକର୍ଷଣ ଥିଲା । ସେ ତାଙ୍କର କଥା-ସାହିତ୍ୟରେ କିମ୍ବା ସାହିତ୍ୟର ସମାଲୋଚନା ପ୍ରସଙ୍ଗରେ ଉପନ୍ୟାସ ଶିଳ୍ପ ସମ୍ବନ୍ଧରେ ନିଜର ମତ ବିଶଦ ଭାବରେ ବ୍ୟକ୍ତ କରିଯାଇ ନାହାନ୍ତି । କିନ୍ତୁ 'ଛ ମାଣ ଆଠ ଗୁଣ୍ଠ' ଓ 'ମାମୁଁ' ଉପନ୍ୟାସରେ ସମୟେ ସମୟେ ସେ ଚରିତ୍ର-ଚିତ୍ରଣ, ଘଟନା-ବିନ୍ୟାସ କିମ୍ବା ପରିବେଶ ଉପସ୍ଥାପନ ବେଳେ ଔପନ୍ୟାସିକର ସତ୍ୟନିଷ୍ଠା ଓ ବାସ୍ତବପ୍ରିୟତା ସମ୍ବନ୍ଧରେ (ସୁସମାଲୋଚକ ହଡ୍‌ସନ୍‌ଙ୍କ ଭାଷାରେ ଯାହାକୁ କୁହାଯାଏ, **'authenticity'** କିମ୍ବା **'principle of absolute fidelity'** ସଂକ୍ଷିପ୍ତ ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ଇଂରେଜ ଔପନ୍ୟାସିକା ଜେନ୍ ଅଷ୍ଟେନଙ୍କ ପରି ସେ ଯାହା ଲେଖୁଥିଲେ ତାହା ତାଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଓ ଅନୁଭୂତିର ଅଭିବ୍ୟକ୍ତିରୂପେ ତାଙ୍କ ଚରିତ୍ର-ଚିତ୍ରଣରେ ରୂପାୟିତ ହେଉଥିଲା । ତାଙ୍କର କଳ୍ପନାର ପ୍ରାଚୁର୍ଯ୍ୟ ଥିଲା, ଘଟନାକୁ ମନୋଜ୍ଞ କରି ଚିତ୍ରଣ କରିବାର ଯାଦୁକରୀ ଶକ୍ତି ଥିଲା, ତଥାପି ଅସମ୍ଭାବ୍ୟତା କିମ୍ବା ମିଥ୍ୟାକୁ ସେ ପ୍ରଶ୍ରୟ ଦେଉନଥିଲେ । ସେ ଯାହା ଆଖିରେ ଦେଖୁଥିଲେ, ମନ ଦେଇ ଗଭୀର ଭାବରେ ଅନୁଧ୍ୟାନ କରୁଥିଲେ, ଜନ-ସମାଜରେ ଯେଉଁ ଅନାଚାର, ଅପଚାର, ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ତାଙ୍କ ପ୍ରାଣକୁ ବ୍ୟଥିତ ବ୍ୟାକୁଳ କରୁଥିଲା, ତାଙ୍କର ସମ୍ବେଦନ-

ଶୀଳ ଓ ସ୍ପର୍ଶକାତର ପ୍ରାଣ ଅମୃତନିସ୍ୟନ୍ଦିନୀ ଲେଖନୀରେ ତାହାକୁ ହିଁ ଶିଳ୍ପାୟିତ କରୁଥିଲା । ସମାଲୋଚକମାନେ କହନ୍ତି, ଜେନ୍ ଅଷ୍ଟେନଙ୍କ ଉପନ୍ୟାସମାନଙ୍କରେ ଦୁଇଟି ଅନୁଚ୍ଛେଦ ଛାଡ଼ ଦେଲେ ସେ କେଉଁଠାରେ ପୁରୁଷ ସହିତ ପୁରୁଷର କଥୋପକଥନ ଉଲ୍ଲେଖ କରି ନାହାନ୍ତି । ତାଙ୍କର ନାରୀମାନେ ନାରୀମାନଙ୍କ ସହିତ ସଂଳାପରେ ବ୍ୟାପୃତା ହୋଇଅଛନ୍ତି, ନାରୀ ପୁରୁଷ ସହିତ କଥାବାର୍ତ୍ତା କରିଛନ୍ତି; କିନ୍ତୁ ପୁରୁଷ ସହିତ ପୁରୁଷର କଥାବାର୍ତ୍ତା—ଏ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି ଓ ବାସ୍ତବ ଜ୍ଞାନ ନଥିବାରୁ ସେ ସେ ବିଷୟରେ କିଛି ଲେଖି ନାହାନ୍ତି । ଲେଖିଥିଲେ ସତ୍ୟ କିମ୍ବା ବାସ୍ତବତାର ଘୋର ଅପଳାପ ହୋଇଥାନ୍ତା ଏବଂ ଉପନ୍ୟାସ-ସାହିତ୍ୟର ସୁକୁମାର ଶୈଳ୍ପିକ ସୌନ୍ଦର୍ଯ୍ୟ କ୍ଷୁଣ୍ଣ ହୋଇଥାନ୍ତା ।

ଉପନ୍ୟାସ-ଶିଳ୍ପର ଏହି ବାସ୍ତବବୋଧ ଓ ସତ୍ୟାନୁରକ୍ତି ସମ୍ବନ୍ଧରେ ଫକୀରମୋହନ ସଚେତନ ଥିଲେ । ତେଣୁ ତାଙ୍କ ଚରିତ୍ର-ଚିତ୍ରଣ କିମ୍ବା ଘଟନା ସଂସ୍ଥାନର ସତ୍ୟତା ସମ୍ବନ୍ଧରେ କେହି କେହି ପାଠକ ହୁଏତ ସନ୍ଦିଗ୍ଧମନା ହୋଇପାରନ୍ତି, ତେଣୁ ସେ ବାରମ୍ବାର ଉଲ୍ଲେଖ କରିଅଛନ୍ତି, "ଅନେକ ଅନୁସନ୍ଧାନ, ଅନେକ ପ୍ରମାଣ ସଂଗ୍ରହ କରି ଆମ୍ଭମାନଙ୍କୁ ଲେଖିବାକୁ ହୁଏ । ଆପଣଙ୍କୁ ସାବଧାନ କରି ଦେଉଛୁଁ, ଆମ୍ଭମାନଙ୍କଠାରୁ ନଶୁଣି କୌଣସି କଥା ସିଦ୍ଧାନ୍ତ କରି ପକାଇବେ ନାହିଁ ।"

'ଛ ମାଣ ଆଠ ଗୁଣ୍ଠ'ରେ ଚନ୍ଦ୍ରୀ ସାହିବ ବର୍ଣ୍ଣନା ଦେବାକୁ ଯାଇ ସେ ତାଙ୍କର ସ୍ୱଭାବସୁଲଭ ହାସ୍ୟଚଟୁଳତା ଓ କୌତୁକ ରସରେ କହିଅଛନ୍ତି, "ଏହି ସାହିବ ଗୋହିରୀଠା ସଫା ସୁତରି, ଖତଗୋଡ଼, ଗୋବରଗଦା କିଛି ନାହିଁ । ଏହା ପଢ଼ି ଲୋକେ ହୁଏତ

ଅନୁମାନ କରିପାରନ୍ତି, ଏ ସାହିରେ ପାଞ୍ଚ ଅଇନ ଜାରି ଅଛି, ମିଉନିସିପାଲିଟିର ଶଗଡ଼ ଆସି ଅଳିଅସବୁ ଉଠାଇ ନେଇଯାଏ ।" କିନ୍ତୁ କିଛି ନବୁଝି ନଶୁଝି ଏପରି ଭ୍ରାନ୍ତ ମତ ପୋଷଣ ନ କରିବାକୁ ସେ ପରିହାସ ଛଳରେ ପାଠକପାଠିକାମାନଙ୍କୁ ସତର୍କବାଣୀ ଶୁଣାଇ କହିଅଛନ୍ତି, "ଆପଣମାନଙ୍କର ଏପରି ଭ୍ରମ ଅପନୋଦନ ନିମନ୍ତେ ଅମ୍ଭମାନଙ୍କର ଏତେ ପରିଶ୍ରମ, ନୋହିଲେ ପ୍ରୟୋଜନ କଣ ? ପୁଣି ଏଣୁତେଣୁ ଗୁଡ଼ାଏ ଲେଖି ପକାଇବା ଅମ୍ଭମାନଙ୍କର ଅଭ୍ୟାସର ବିପରୀତ । ଅକାଟ୍ୟ ପ୍ରମାଣ ନ ପାଇଲେ, କିମ୍ବା ଯାହା ନ୍ୟାୟଶାସ୍ତ୍ରସଙ୍ଗତ ନୁହଁ, ଏମନ୍ତ କଥାଗୁଡ଼ାକ ଅମ୍ଭେମାନେ ଶୁଣୁ ନାହୁଁ । ଯାହା ଲେଖିବୁ, ସେ କଥାଗୁଡ଼ାକ ନ୍ୟାୟଶାସ୍ତ୍ର ଅନୁସାରେ ପ୍ରମାଣ କରିଦେବୁଁ, ଆପଣଙ୍କର ପାଟି ଫିଟିବାର ବାଟ ନଥିବ ।"

ଏହି ପରିହାସୋକ୍ତିର ଗଭୀର ତାତ୍ପର୍ଯ୍ୟ ହେଉଛି, ଫକୀର-ମୋହନ ମନୁଷ୍ୟ ସମାଜ ଓ ମନୁଷ୍ୟ ଜୀବନର ବାସ୍ତବ ପ୍ରତିଛବି ଅଙ୍କନ କରି ପାରିପାର୍ଶ୍ୱିକ ଜଗତ ପ୍ରତି ଅମ୍ଭମାନଙ୍କର ସ୍ନେହ, ସହାନୁଭୂତି, ମମତା ଓ ଦୃଷ୍ଟିକୋଣ ସମ୍ପ୍ରସାରିତ କରିଅଛନ୍ତି, ଜୀବନ-ନାଟ୍ୟ ସମ୍ବନ୍ଧରେ ଅମ୍ଭମାନଙ୍କୁ ନୂତନ ଦିଗ ଦେଖାଇଅଛନ୍ତି ଏବଂ ଓଡ଼ିଆ ସାହିତ୍ୟରେ ଗୋଟିଏ ନୂତନ ଅଭିମୁଖ୍ୟ ସୃଷ୍ଟି କରିଅଛନ୍ତି ।

କେବଳ ସେତିକି ନୁହଁ, ନାନା ଗୌଣ ଓ ଅପାତ ଅବାନ୍ତର ଚରିତ୍ରର ଅବତାରଣା ଫକୀରମୋହନଙ୍କ ଉପନ୍ୟାସରେ ଦେଖାଗଲେ ମଧ୍ୟ ତାଙ୍କର ଘଟନା-ଗ୍ରଥନ ଶିଥିଳ ନୁହଁ, ସୁସଙ୍ଗତ ଏବଂ ଦୃଢ଼ବଦ୍ଧ । ସମସ୍ତେ ଐକ୍ୟସୂତ୍ରରେ ଗ୍ରଥିତ ମୂଳ ବିଷୟବସ୍ତୁ

ସହିତ ଘନସଂପୃକ୍ତ । ଫକୀରମୋହନ ଉପନ୍ୟାସ-ଶିଳ୍ପର ଏହି ଶୋଭନ ଦିଗ ପ୍ରତି ସଚେତନ ଥିଲେ । ସେ 'ମାମୁଁ' ଉପନ୍ୟାସରେ ଗୋଟିଏ ସ୍ଥାନରେ ପ୍ରାଞ୍ଜଳଭାବରେ ଉଲ୍ଲେଖ କରି-ଅଛନ୍ତି, "ଆମ୍ଭେମାନେ କଣ ଲେଖିବାକୁ ଯାଇ କଣ ଲେଖି ପକାଉଅଛୁ । ଯେତେବେଳେ ଅହୁଲ ଭଙ୍ଗ, ପାଣି ସୁଅଟା ନାଆକୁ ଲକ୍ଷ୍ୟସ୍ଥାନରୁ ଦୂରକୁ ଟାଣିନିଏ, ମାତ୍ର ଟାଣୁଅ ନାଉରି ମଙ୍ଗ ଛାଡ଼େ ନାହିଁ । ଆମ୍ଭମାନଙ୍କ କଲମ ଏଣେ ତେଣେ ଯାଉଅଛି ସତ୍ୟ, ମାତ୍ର ମୂଳକଥାଟା ହଲଚଲ ହୋଇ ପାରିବ ନାହିଁ, କଥାଟା ଦାଣ୍ଡେ ଦାଣ୍ଡେ ଚାଲିଥିବ ।"

ଏ ତ ଗଳ୍ପ ଉପନ୍ୟାସ-ଶିଳ୍ପ ସମ୍ବନ୍ଧରେ ତାଙ୍କର ମତବାଦ, ଏବଂ ପାଠକପାଠିକାମାନଙ୍କ ସହିତ ନିବିଡ଼ ସହଯୋଗ ସ୍ଥାପନ କରି ସେମାନଙ୍କ ମନରେ ପ୍ରତୀତିବୋଧ ଉଦ୍ଦୀପିତ କରିବା ନିମନ୍ତେ କଥା-ଶିଳ୍ପୀ ଫକୀରମୋହନଙ୍କର ସାଧୁ ପ୍ରୟାସ । କିନ୍ତୁ ଉପନ୍ୟାସ-ସାହିତ୍ୟ ଓ ଜନ-ସମାଜରେ ଏହାର କଲ୍ୟାଣକର ପ୍ରଭାବ ସମ୍ବନ୍ଧରେ ସେ ତାଙ୍କର ଗୋଟିଏ ସାହିତ୍ୟିକ ଅଭିଭାଷଣରେ ଅତି ଭାବଗର୍ଭକ ଓ ଉପାଦେୟ ମତ ବ୍ୟକ୍ତ କରିଯାଇଅଛନ୍ତି ।

ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ସଭାପତି ରୂପେ ସେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ତାଙ୍କର ନାତିଦୀର୍ଘ ଅଭିଭାଷଣରେ କହିଥିଲେ, "ଜାତି ସାଧାରଣ ମଧ୍ୟରେ ମାତୃଭାଷା ପ୍ରଚାର କରିବା ଆବଶ୍ୟକ ହେଲେ ଉପନ୍ୟାସ, ନାଟକ, ସଙ୍ଗୀତ ଏହି ତିନିଶ୍ରେଣୀର ଗ୍ରନ୍ଥର ବହୁଳ ପ୍ରଚାର ଆବଶ୍ୟକ । ବଙ୍ଗଭାଷାର ପ୍ରାୟ ୩୦୦ ଖଣ୍ଡ ମାସିକ ପତ୍ରିକାର ପ୍ରଚାର ଦେଖାଯାଏ । ଉପନ୍ୟାସହୀନ କୌଣସି ପତ୍ରିକା ନାହିଁ । ସେହି ଉପନ୍ୟାସ ପ୍ରଲୋଭନରୁ ମାସିକ ପତ୍ରିକା-

ସଂଖ୍ୟା ଏତେ ବଢ଼ି ପଡ଼ିଅଛି । ସମୟ୍ସମୟରେ ଲୋକସାଧାରଣରେ ନାଟକ ବା ଉପନ୍ୟାସ ଅସୀମ ଶକ୍ତି ପ୍ରକାଶ କରିଥାଏ । ବଙ୍ଗଦେଶରେ 'ନୀଳଦର୍ପଣ ନାଟକ' ଏବଂ 'କୁଳୀନ କୁଳସର୍ବସ୍ୱ' ନାଟକ ଦେଶ ମଧ୍ୟରେ କି ଅସୀମ ଉପକାର ସାଧନ କରିଯାଇଅଛି, ତାହା ଶିକ୍ଷିତ ଲୋକ ମାନେ ଅବଗତ ଅଛନ୍ତି । × × × ଭାରତବର୍ଷର ପ୍ରତ୍ୟେକ ଶିକ୍ଷିତ ଲୋକ ହୃଦୟରେ ଜନ୍ମଭୂମି ପ୍ରତି ଭକ୍ତି ବିରାଜିତ । ମାତ୍ର ସମସ୍ତେ ସ୍ୱତନ୍ତ୍ର ଥିଲେ । ଉପନ୍ୟାସକାର ଗୋଟିଏ ଚିତ୍ର ଦେଖାଇ ଉଚ୍ଚାରଣ କଲେ, 'ବନ୍ଦେ ମାତରଂ',* ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ଏକ ତାନ ଉଠିଲା 'ବନ୍ଦେ ମାତରଂ' । 'ଅଙ୍କଲ ଟମସ୍ କାବିନ୍' ଉପନ୍ୟାସ ପାଠ କରି ଲକ୍ଷ ଲକ୍ଷ ଆମେରିକାବାସୀ ଦାସ ବ୍ୟବସାୟ ବିପକ୍ଷରେ ଜୀବନଦାନ ନିମନ୍ତେ ରଣକ୍ଷେତ୍ରକୁ ଧାବିତ ହୋଇଥିଲେ ।"

ଏହି ଉକ୍ତି ଫକୀରମୋହନଙ୍କ ଉପନ୍ୟାସ-ଚିନ୍ତା ଉପରେ କିଛିର୍ ଆଲୋକ-ସମ୍ପାତ କରେ । ଶିବାନୁସନ୍ଧାନୀ ଫକୀରମୋହନ ସାହିତ୍ୟରେ କଲ୍ୟାଣବାଦରେ ବିଶ୍ୱାସୀ ଥିଲେ । ସେ ଉତ୍କଳର ସର୍ବପ୍ରଥମ ଜୀବନଶିଳ୍ପୀ ଔପନ୍ୟାସିକ । କାରଣ ତାଙ୍କ ପୂର୍ବରୁ ଯାହା ଗୋଟିଏ ଦୁଇଟି ଉପନ୍ୟାସ ଥିଲା, ତାକୁ ଖାଣ୍ଟି ଉପନ୍ୟାସ କୁହାଯାଇନପାରେ । ତାହା ଜନ-ସାହିତ୍ୟର ଅନ୍ତର୍ଭୁକ୍ତ ନୁହେଁ । ସେ କଥା-ସାହିତ୍ୟରେ ସମାଜର ଜୀବନ୍ତ ପ୍ରତିଚ୍ଛବି ନଥିଲା, କି ଭାଷାର ସଜୀବତା ନଥିଲା । କିନ୍ତୁ ଫକୀରମୋହନ ଏ ବିଷୟରେ ଦିଗ୍‌ଦର୍ଶକ ହୋଇ ମଧ୍ୟ ତାଙ୍କର ଏ ବିଷୟରେ ଅଣୁମାତ୍ର ଅହଙ୍କାର କିମ୍ବା ଅଭିମାନ ନଥିଲା । ସେ ନିଜେ ଆଲୋଚ୍ୟ ଅଭିଭାଷଣରେ

---

* ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ—'ଆନନ୍ଦ ମଠ' ।

ଉଲ୍ଲେଖ କରିଥିଲେ, "କେହି ବା ମନରେ କରିବେ, ମୁଁ ଦୁଇଖଣ୍ଡ ସାମାନ୍ୟ ଉପନ୍ୟାସ ଲେଖିଛି ବୋଲି ଉପନ୍ୟାସର ଏତେ ପ୍ରଶଂସା କଲି, କିନ୍ତୁ ମୋ ନିଜ ପକ୍ଷର କୈଫିୟତ୍ ଏହି ଯେ ଗୋଟିଏ ନିବିଡ଼ ଜଙ୍ଗଲରେ ବାଟ ନଥିଲେ କୁଲି ଶ୍ରେଣୀର ଲୋକ ଜଙ୍ଗଲ କାଟି ବାଟର ସୃଷ୍ଟି କରିଦେଲା ଉତ୍ତାରେ ଜ୍ଞାନବନ୍ତ ଇଞ୍ଜିନିୟର-ମାନେ ଅତି ସୁନ୍ଦର ସଡ଼କ ପ୍ରସ୍ତୁତ କରିଥାନ୍ତି । ଅତଃପର ଶିକ୍ଷିତ ଲୋକମାନେ ଭଲ ଉପନ୍ୟାସ ଲେଖିବେ, ସେଥିପାଇଁ ମୁଁ ଗୋଟିଏ ସୃଷ୍ଟି କରିଯାଉଛି ।"

ଫକୀରମୋହନ ଆମପାଇଁ କେବଳ ସାମାଜିକ ଉପନ୍ୟାସର ସୃଷ୍ଟି ଛାଡ଼ିଯାଇ ନାହାନ୍ତି, ସାମାଜିକ ଓ ସମସ୍ୟାମୂଳକ ଉପନ୍ୟାସର ମୌଳିକ ଆଦର୍ଶ କେବଳ ଉପସ୍ଥାପନ କରିନାହାନ୍ତି, କିମ୍ବା ଗୋଟିଏ ମାତ୍ର ଐତିହାସିକ ଉପନ୍ୟାସ ଲେଖି ଐତିହାସିକ ଘଟନାର ଦୃଢ଼ତା, ଗୁରୁତା ଏବଂ ସରସତା ପ୍ରତିପାଦନ କରିଯାଇ ନାହାନ୍ତି—କଥା-ସାହିତ୍ୟର ଆତ୍ମା, ଉପାଦାନ, ଅଙ୍ଗିକ ଓ ବାଚନିକ ବିଭବର ଭୂୟୋବିକାଶ ମଧ୍ୟ କରିଯାଇ ଅଛନ୍ତି ।

ସେ ଯେଉଁ ସମୟରେ ଲେଖନୀ ଧାରଣ କରିଥିଲେ, ସେ ସମୟରେ ମଧ୍ୟ ବର୍ତ୍ତମାନ ପରି ସାହିତ୍ୟରେ ଦେଖାଯାଇଥିଲା ଗୋଟିଏ ସଙ୍କଟମୟ ଯୁଗ—ଜୀବନରେ ସଙ୍କଟ ଏବଂ ସାହିତ୍ୟରେ ମଧ୍ୟ ସଙ୍କଟ । ଓଡ଼ିଆ ଜାତିକୁ ଏ ଉଭୟ ସଙ୍କଟରୁ ଉଦ୍ଧାର କରିବା ନିମନ୍ତେ ସେ ସାହିତ୍ୟରେ ମନୋନିବେଶ କରିବାକୁ ଯୁବକମାନଙ୍କୁ ପ୍ରେରଣା ଓ ଉଦ୍‌ବୋଧନ ଦେଉଥିଲେ, ଉତ୍କଳ ସାହିତ୍ୟରେ ପ୍ରାଣ-ପ୍ରତିଷ୍ଠା କରିବାକୁ ଅହରହ ବ୍ୟାକୁଳତା ପ୍ରକାଶ କରୁଥିଲେ । ମାତୃଭାଷା ପ୍ରତି ଶିକ୍ଷିତ ଯୁବକମାନଙ୍କର ଔଦାସୀନ୍ୟ ଓ ନିର୍ମମତା

ଉପଲବ୍ଧି କରି ସେ ବେଦନାରେ ଅସ୍ଥିର ହେଉଥିଲେ । କଟକ ଆଲୋଚନା ସଭାର ଚତୁର୍ଥ ବାର୍ଷିକ ଅଧିବେଶନରେ ସଭାପତିର ଆସନ ଅଲଙ୍କୃତ କରି ସେ କହିଥିଲେ, "କି ଧର୍ମାଲୋଚନା, କି ଜ୍ଞାନାର୍ଜନ, କି ବିଷୟଚର୍ଚ୍ଚା ଯେକୌଣସି—ସମସ୍ତ ସମୟରେ ସହାୟ ହୁଏ, ଏଥିସକାଶେ ଏହାର ନାମ ସାହିତ୍ୟ । ସାହିତ୍ୟ ଜାତିର ଜୀବନ, ଜାତିର ବଳ, ଜାତିର ପଦମର୍ଯ୍ୟାଦା ରକ୍ଷାର ଏକମାତ୍ର ଅବଲମ୍ବନ ।" ତେଣୁ ସେ ସମୟର ଓଡ଼ିଆ ଭାଷାକୁ ଅବହେଳା କରି, ଏପରି କି ନାସିକା କୁଞ୍ଚନ କରି, ସ୍ୱକୀୟ ଭାଷା ଛାଡ଼ି ପରକୀୟ ଭାଷାକୁ 'ଆତ୍ମସାତ୍' କରିବା ଦିଗରେ ନିରନ୍ତର ବ୍ୟାକୁଳ ଓ ସଚେଷ୍ଟ ଥିବା ପଥଭ୍ରାନ୍ତ ଯୁବକମାନଙ୍କୁ ସେ ସେହି ସଭାରେ ଗମ୍ଭୀର ଉପଦେଶ ଦେଇ କହିଥିଲେ, "ଜାତୀୟ ସାହିତ୍ୟର ଉନ୍ନତି ନିମନ୍ତେ ଶିକ୍ଷିତ ଲୋକମାନଙ୍କର ଚାରିଗୋଟି ଉପାୟ ଅବଲମ୍ବନ କରିବା ଉଚିତ:—

(୧) ଜାତୀୟ ସାହିତ୍ୟ ପାଠ କର
(୨) ପାଠ କରାଅ
(୩) ଲେଖ
(୪) ଲେଖାଅ ।"

ଏତିକି ନୁହେଁ, ଏହି ଅଧିବେଶନ ବସିବା ପୂର୍ବରୁ ମାତୃଭାଷାର ଉନ୍ନତି ସକାଶେ ଅନ୍ତତଃ ଦିନକର ଆୟ ଦାନ କରିବାକୁ ଏହାର ସଭ୍ୟମାନେ ପ୍ରସ୍ତାବ କରିଥିଲେ । ସେ ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବାକୁ ଫକୀରମୋହନ ଏହି ସଭାରେ ସମବେତ ଉତ୍ସାହୀ ସଭ୍ୟମାନଙ୍କୁ ଆବେଦନ କରିଥିଲେ ।

ସାହିତ୍ୟ ସମାଜ ଗଢ଼ିବ, ଜାତି ଗଢ଼ିବ, ଜାତୀୟ ଚରିତ୍ରକୁ ଉନ୍ନତ କରିବ, ଜାତିର କୁସଂସ୍କାରାଚ୍ଛନ୍ନତା ଦୂର କରିବ,—ଏଥିରେ

ଫକୀରମୋହନଙ୍କର ଦୃଢ଼ ବିଶ୍ୱାସ ଥିବାରୁ ସେ ଥରେ ବଙ୍ଗଳାର କବି ମାଇକେଲ ମଧୁସୂଦନ ଦତ୍ତଙ୍କ 'ମେଘନାଦ ବଧ' କାବ୍ୟର କଠୋର ସମାଲୋଚନା କରି ପ୍ରସଙ୍ଗକ୍ରମେ ସାହିତ୍ୟର ଶ୍ରେୟବାଦ ସମ୍ବନ୍ଧରେ ଯେଉଁ ମତବାଦ ପ୍ରକାଶ କରିଥିଲେ, ସାହିତ୍ୟ ସମ୍ବନ୍ଧରେ ତାଙ୍କର ଧାରଣା, କଳ୍ପନା ଓ ସଭ୍ରମବୋଧର ତାହା ସୁସ୍ପଷ୍ଟ ଦିଗ୍‌ଦର୍ଶନ । 'ମେଘନାଦ ବଧ' କାବ୍ୟର ଚରିତ୍ର-ସୃଷ୍ଟି ସମ୍ବନ୍ଧରେ ସେ ନିଜର ନିର୍ଭୀକ ମତ ବ୍ୟକ୍ତ କରି ଲେଖିଅଛନ୍ତି, "କାବ୍ୟ ଜନସମାଜର ଗୁରୁ ଓ ଉପଦେଷ୍ଟା । କାବ୍ୟଗତ ନାୟକ ନାୟିକାଙ୍କ ଚିତ୍ର ଚରିତ୍ରଗଠନର ପରମ ସହାୟ । ଅମ୍ଭମାନଙ୍କ ଚରିତ୍ରଗଠନର ସାହାଯ୍ୟକାରୀ 'ମେଘନାଦ ବଧ'ରୁ ଏମନ୍ତ ଗୋଟିଏ ଚିତ୍ର ଦେଖାନ୍ତୁ ତ ? ଦୁଃଖରେ ସୁଖରେ, ସମ୍ପଦରେ ବିପଦରେ, ହର୍ଷରେ ବିଷାଦରେ କେଉଁ ଅବସ୍ଥାରେ କେଉଁ ଚିତ୍ରଟି ଅମ୍ଭମାନଙ୍କ ମନରେ ଉଦିତ ହେବ ? × × × ଅମ୍ଭମାନଙ୍କ ମନରେ ଉଦାର ମହତ୍ତ୍ୱ ଆଣିଦେବ, କିମ୍ବା ସ୍ୱାଭାବିକୀ ବିବେକ ଶକ୍ତିକୁ ଉତ୍ତେଜିତ କରିଦେବ, ଏମନ୍ତ କିଛି ଚିତ୍ର ଅଛି କି ?" 'ମେଘନାଦ ବଧ' କାବ୍ୟରୁ ଫକୀରମୋହନ ଚରିତ୍ରଗଠନର ସହାୟକ କୌଣସି ଉପାଦାନ ନ ପାଇ ନିରାଶ ହୋଇଥିଲେ ।

ଉପନ୍ୟାସ-ସାହିତ୍ୟ, ଔପନ୍ୟାସିକର ବାସ୍ତବ ପ୍ରୀତି, ସତ୍ୟନିଷ୍ଠା ଏବଂ ସାହିତ୍ୟର ଧର୍ମ ସମ୍ବନ୍ଧରେ ଫକୀରମୋହନଙ୍କର ଏହି ନିଜସ୍ୱ ମତବାଦରୁ ପ୍ରତିପନ୍ନ ହୁଏ, ସେ ଜଣେ ଉଦାର ମନୁଷ୍ୟ ଥିଲେ, ଉଚ୍ଚକୋଟିର ମାନବିକତା ଥିଲା ତାଙ୍କ ଜୀବନର ପରମ ସମ୍ପଦ, ମନୁଷ୍ୟକୁ ସେ ମନୁଷ୍ୟ ପରି ଦେଖିବାକୁ ଚେଷ୍ଟା କରୁଥିଲେ ଏବଂ ମାନବିକ ମର୍ଯ୍ୟାଦାର ଅଭିବୃଦ୍ଧି ନିମନ୍ତେ ସତେ ଯେପରି ସେ ଲେଖନୀ ଧାରଣ କରିଥିଲେ । ଯେଉଁଠାରେ ସେ

ଦାନବୀକ ବ୍ୟବହାର କମ୍ବା ମନୁଷ୍ୟ ଚରିତ୍ରରେ ପୈଶାଚିକ ପ୍ରବୃତ୍ତିର ତାଣ୍ଡବଲୀଳା ଦେଖୁଥିଲେ, ସେଠାରେ ସେ ଏହି ଦୁଷ୍ପ୍ରବୃତ୍ତିର ଉଚ୍ଛେଦ ସାଧନ ନିମନ୍ତେ ପୁଣ୍ୟବୋଧ ଓ ଅନୁତାପର ଶାଣିତ ଖଡ୍‌ଗ ଉତ୍ତୋଳନ କରୁଥିଲେ । କିନ୍ତୁ ଯେ କୌଣସି ମନୁଷ୍ୟଠାରେ ଦେବତ୍ୱ ଦେଖିଲେ ବାଷ୍ପାକୁଳ କଣ୍ଠରେ ପ୍ରାଣର ଅନ୍ତରଙ୍ଗ ଓ ଜନୁଜନ୍ମାର୍ଜିତ ସଖାରୂପେ ତାଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଉଥିଲେ, ତାର ସ୍ତୁତି ଗାନ କରୁଥିଲେ । ସେ ଏହି ମାନବତା ଖୋଜି ପାଇ ନାହାନ୍ତି ଶିକ୍ଷିତ ଯୁବ-ସମାଜରେ, ଧନାଢ୍ୟ ବ୍ୟକ୍ତିମାନଙ୍କ ସାଡ଼ମ୍ବର ଜୀବନଯାତ୍ରା ଓ ସମାଜବୋଧରେ, କିମ୍ବା ଅଭିଜାତ ପରିବାରରେ । କ୍ଷୟିଷ୍ଣୁ ଓ ନିମବଳୀୟମାନ ସାମନ୍ତବାଦୀ ସମାଜରେ କିମ୍ବା ବିଳାସବ୍ୟସନର ଶୂନ୍ୟ ସମାରୋହ ମଧ୍ୟରେ ବାସ କରୁଥିବା ତଥାକଥିତ ଉଚ୍ଚ ଶ୍ରେଣୀର ମଧ୍ୟବିତ୍ତ ଲୋକମାନଙ୍କର ଚରିତ୍ର ଓ ଆଚରଣରେ ଫକୀରମୋହନ ଏ ମନୁଷ୍ୟତା ଖୋଜି ପାଇନଥିଲେ । ସେ ଏହି ମାନବିକତାର ମଙ୍ଗଳମୟ ଇଙ୍ଗିତ ଓ ଅଭିବ୍ୟକ୍ତି ଦେଖିବାକୁ ପାଇଛନ୍ତି ଆମ ସମାଜର ଅତି ନିମ୍ନତମ ଶ୍ରେଣୀର ଲୋକମାନଙ୍କ ଚରିତ୍ରରେ, ଯେଉଁମାନଙ୍କୁ ଆମ୍ଭେମାନେ ସେତେବେଳେ 'ମଣିଷ' ବୋଲି ଖାତିର କରୁନଥିଲୁ, ଏବେ ବି, ଫକୀରମୋହନଙ୍କ ମୃତ୍ୟୁର ପ୍ରାୟ ୪୫ ବର୍ଷ ପରେ, କରୁଛୁ କି ନାହିଁ ସନ୍ଦେହ ।

ଜନୈକ ପ୍ରସିଦ୍ଧ ଅତ୍ୟାଧୁନିକ ଭାରତୀୟ ସାହିତ୍ୟିକ କ୍ଷୋଭ ପ୍ରକାଶ କରି ଲେଖିଅଛନ୍ତି, "ମନୁଷ୍ୟ-ଜୀବନରେ ଆଜି ସଙ୍କଟ । ତା ବୋଲି ସାହିତ୍ୟରେ କାହିଁକି ସଙ୍କଟ ହେବ ? ଇତିହାସରେ ବହୁବାର ସଙ୍କଟ ଦେଖା ଦେଇଛି, କିନ୍ତୁ ସେତେବେଳେ ସାହିତ୍ୟରେ ଏ ସଙ୍କଟ ଦେଖା ଦେଇନାହିଁ । ପୁଣି

ସାହିତ୍ୟରେ ଯେତେବେଳେ ସଙ୍କଟ ଦେଖା ଦେଇଛି, ଜୀବନରେ ଦେଖା ଦେଇ ନାହିଁ । ଠିକ୍, କିନ୍ତୁ ଏବର ସଙ୍କଟ ବାହାର ଜୀବନର ସଙ୍କଟ ନୁହେଁ, ଭିତର ଜୀବନର— ଯାହାକୁ ନେଇ ସାହିତ୍ୟ । ମୁଣ୍ଡ ଉପରେ **Damocles** ର ଖଡ୍ଗ ଝୁଲୁଛି । ଯୁଦ୍ଧ । ପାଦତଳେ ବାସୁକିର ଫଣା ହଲିଲେ ଭୂମିକମ୍ପ ଘଟିବ । ବିପ୍ଳବ । ଏହି ଅସ୍ୱସ୍ତିକର ଅବସ୍ଥାରେ ଶ୍ୱାସରୁଦ୍ଧ ହୋଇ ଆସେ । କିଏ କଣ ଲେଖିବ ? କିଏ କଣ ପଢ଼ିବ ? ଯେଉଁମାନେ ମନ୍ଦିର ଗଢ଼ନ୍ତି, ସେମାନେ ଦୁଇଶହ ବର୍ଷ ହାତରେ ରଖି ଗଢ଼ି ବସନ୍ତି । ଆଜିକାଲିର ମନୁଷ୍ୟ ହାତରେ ଦୁଇଶ ବର୍ଷ ତ ଦୂରର କଥା, ଦୁଇଶ ମାସ ବି ନାହିଁ । ଏମାନେ ତରବର କରି ଯାହା ଗଢ଼ନ୍ତି, ତାହା ଦେଖିବାକୁ ମନ୍ଦିର ପରି, କିନ୍ତୁ ଦେବଯୋଗ୍ୟ ନୁହେଁ । ସାହିତ୍ୟ ହେଉଛି ଅମୃତ, ଦେବଭୋଗ୍ୟ । ତାର ଆୟୋଜନ ଦୀର୍ଘ କାଳ ଧରି ଚାଲେ । ଲେଖା ପୂର୍ବରୁ ଦେଖା, ଶିଖା, ଧ୍ୟାନ, ଧାରଣା, ଭାବନା । ଏଥିପାଇଁ ସମୟ ଦରକାର । ଲେଖା କେବଳ କଲମ, କାଳି ଓ କାଗଜର ବ୍ୟାପାର ନୁହେଁ—ପ୍ରାଣ ସଞ୍ଚାର, ଜୀବନ୍ୟାସ । ଏଥିପାଇଁ ମଧ୍ୟ ସମୟ ଲାଗେ । ଯାହା ହାତରେ ଅନନ୍ତ କାଳ, ସେହି କେବଳ ଲେଖିବସେ ଉଚ୍ଚକୋଟିର ସାହିତ୍ୟ । ଉଚ୍ଚାଙ୍ଗ ସଙ୍ଗୀତ କଣ ପନ୍ଦର ମିନିଟରେ ହୁଏ ? ଲେଖକ ବା ପାଠକ କେହି ସମୟ ଦେଇପାରୁ ନାହାନ୍ତି । ସ୍ଥାୟୀ ସାହିତ୍ୟର ସୃଷ୍ଟି ସମ୍ଭବ ହେବ କିପରି ? ଗତ ତିରିଶି ଚାଳିଶି ବର୍ଷ ମଧ୍ୟରେ ପୃଥିବୀର ବିଭିନ୍ନ ଭାଷାରେ ଯେଉଁ ସବୁ ଗ୍ରନ୍ଥ ଲେଖା ହୋଇଛି, ସେମାନଙ୍କ ମଧ୍ୟରେ କ୍ଲାସିକ୍ ହୋଇପାରିଛି କିମ୍ବା ହେବାର ଯୋଗ୍ୟତା ଲାଭ କରିଛି, ଏପରି ବହିର ସଂଖ୍ୟା ଅଙ୍ଗୁଠିରେ ଗଣା ଯାଇପାରେ, କିମ୍ବା ତା ବି ନୁହେଁ । ସବୁଠାରୁ ଲେଖକମାନଙ୍କର ଯେଉଁ ମନୋଭାବ

ପ୍ରବଳ, ସେଇଟା କଠିନ, ସିନିକାଲ ଓ ପେସିମିଷ୍ଟିକ୍ । ହୃଦୟ ଅସ୍ଥିର, ମନ ଅସୁସ୍ଥ, ଆତ୍ମା ଅଛି କି ନାହିଁ । ପ୍ରଥମ ମହାଯୁଦ୍ଧ ମୋହମୁଦ୍‌ଗରର କାମ କରେ । ଦ୍ୱିତୀୟ ମହାଯୁଦ୍ଧ ଶିମନ୍ତେ ମୋହ ଖୁବ୍ ବେଶୀ ଅବଶିଷ୍ଟ ନଥିଲା, ତେଣୁ ମୋହଭଙ୍ଗର ପ୍ରଶ୍ନ ଉଠେ ନାହିଁ । ବିପ୍ଳବର ଗୋଟିଏ ମୋହ ଥିଲା, ସେଇଟା କୌଣସି କୌଣସି ମହଲରେ ବର୍ତ୍ତମାନ ବିଦ୍ୟମାନ, କିନ୍ତୁ ସାହିତ୍ୟିକ ମହଲରେ ବଡ଼ ବେଶୀ ନାହିଁ । *

ଜଣେ ବିଶିଷ୍ଟ ଔପନ୍ୟାସିକ ଓ କୁଶଳୀ ସମାଲୋଚକଙ୍କର ସମାଲୋଚନା-ଗ୍ରନ୍ଥରୁ ଏ ଦୀର୍ଘ ଉଦ୍ଧୃତିର ଅବତାରଣାର ଉଦ୍ଦେଶ୍ୟ ହେଉଛି, ଓଡ଼ିଶାର ନାନା ସଙ୍କଟ ସମୟରେ ଫକୀରମୋହନ ଯେଉଁ କଥା-ସାହିତ୍ୟ-ଶିଳ୍ପ ଗଢ଼ିଯାଇ ଅଛନ୍ତି ତାହା କଣ କେବଳ ବାହାରରୁ ଦେଖିବାକୁ ସୁନ୍ଦର ପର ? ସେ ସୁନ୍ଦର କଣ 'ଦେବଯୋଗ୍ୟ' ନୁହଁ ? ଯେଉଁ ଅମୃତ-ରସରେ ସେ ତାଙ୍କର କଥା-ସାହିତ୍ୟକୁ ରସାପ୍ଳୁତ କରି ଯାଇଅଛନ୍ତି, ଭାବ-ସୌରଭରେ ସୁରଭିତ କରିଯାଇଅଛନ୍ତି, ତାହା କଣ ଦେବଭୋଗ୍ୟ ନୁହଁ ? ସେହି ସାହିତ୍ୟ-ସୃଷ୍ଟିର ଆୟୋଜନ କଣ କ୍ଷଣିକ, ଚିନ୍ତାହୀନ, ଶିକ୍ଷାହୀନ, ସାଧନାବିବର୍ଜିତ ଓ 'ପ୍ରାଣସଞ୍ଚାର'-ବିରହିତ ? ଫକୀରମୋହନଙ୍କର ଉପନ୍ୟାସରାଜି କଣ 'କ୍ଳାସିକ୍' ପର୍ଯ୍ୟାୟର ଅନ୍ତର୍ଭୁକ୍ତ ନୁହଁ ? ଯୁଦ୍ଧୋତ୍ତର କଥାଶିଳ୍ପୀମାନଙ୍କ ପରି ଫକୀରମୋହନ କଣ ସିନିକ୍, ପେସିମିଷ୍ଟିକ୍ କିମ୍ବା ନୈରାଶ୍ୟବାଦୀ ? ଉଦ୍ଧୃତ ଦୀର୍ଘୋକ୍ତିର ପରିପ୍ରେକ୍ଷିତରେ ଏ ପ୍ରଶ୍ନମାନଙ୍କର ଯଥାଯଥ ଉତ୍ତର ଦେବାକୁ ହେଲେ ଏଠାରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ଆମ୍ଭମାନଙ୍କୁ

* 'ସାହିତ୍ୟେ ସଙ୍କଟ'—ଅନ୍ନଦାଶଙ୍କର ରାୟ, ପୃ. ୬—୭

ଧ୍ୟାନ ଦେବାକୁ ହେବ । ପ୍ରଥମଟି ହେଉଛି, ଉଚ୍ଚ ଶ୍ରେଣୀର କଥା-ଶିଳ୍ପୀର ପ୍ରଭାବର ବୈଶିଷ୍ଟ୍ୟ, ଏବଂ ଦ୍ୱିତୀୟଟି ହେଉଛି ସାମ୍ପ୍ରତିକ ଉପନ୍ୟାସ-ଚିନ୍ତାର ରୂପରେଖ । ସାମ୍ପ୍ରତିକ ଉପନ୍ୟାସ-ଚିନ୍ତା ସମ୍ବନ୍ଧରେ ନାନା ଔପନ୍ୟାସିକ ଓ ଉପନ୍ୟାସର ରସ-ବିଶ୍ଳେଷକ ନାନା ଚିନ୍ତାପୂର୍ଣ୍ଣ ଓ ଯୁକ୍ତିସହ ସିଦ୍ଧାନ୍ତମାନଙ୍କରେ ଉପନୀତ ହୋଇ ଅଛନ୍ତି । ଫକୀରମୋହନ ଅତ୍ୟାଧୁନିକ ଶିଳ୍ପୀ ନ ହେଲେହେଁ ଆଧୁନିକ । ତାଙ୍କର ରକ୍ଷଣଶୀଳତାର ଦୁର୍ଗ ଅଭେଦ୍ୟ କିମ୍ବା ଦୁରଧିଗମ୍ୟ ନୁହେଁ, ତାହା ଆଧୁନିକତାର ଅଭିମୁଖୀ । ତାଙ୍କର ଶିଳ୍ପ-ମାନସରେ ଅନାଗତ ଭବିଷ୍ୟତର ସଙ୍କେତ ଥିଲା । ବର୍ତ୍ତମାନର ଭିତ୍ତିଭୂମି ଉପରେ ସେ ଓଡ଼ିଆ ଜାତିର ସୁଦୂର ଭବିଷ୍ୟତର ବିଚିତ୍ର ଇନ୍ଦ୍ରଧନୁର ସ୍ୱପ୍ନ ଦେଖୁଥିଲେ । ବିଶ୍ୱଯୁଦ୍ଧ ତାଙ୍କର ମୋହ ଭଙ୍ଗ କରି ନାହିଁ । ଯୁଦ୍ଧୋତ୍ତର ଅବିଶ୍ୱାସ, ସଂଶୟ, ବ୍ୟର୍ଥତାବୋଧ, ପରାଜୟର ତିକ୍ତ ଗ୍ଲାନି, କିମ୍ବା ନୈରାଶ୍ୟର ପାଣ୍ଡୁର ଧୂମ୍ରକୁଣ୍ଡଳୀ ତାଙ୍କ ମନକୁ ଆଚ୍ଛନ୍ନ କରି ନାହିଁ । ସେ ମନୁଷ୍ୟ ଜୀବନର ଦୁଃଖ ଦୁର୍ଦ୍ଦଶାର କରୁଣ ଚିତ୍ର ଅଙ୍କନ କରିଅଛନ୍ତି, କିନ୍ତୁ ଦୁଃଖବାଦୀ ନୁହନ୍ତି । ଦୁଇ ଦୁଇଟା ଯୁଦ୍ଧ ପରେ ଯେଉଁ ସମସ୍ତ ମାନବିକ ମୂଲ୍ୟବୋଧ ଉପରେ ଆମ୍ଭମାନଙ୍କର ଆସ୍ଥା ଥିଲା, ତାହା ନଷ୍ଟ ହୋଇ ଯାଇଛି । ଉଚ୍ଚସ୍ତରର ସାହିତ୍ୟ-କୀର୍ତ୍ତି ନିମନ୍ତେ ଯେଉଁ ଧ୍ୟାନର ଅବସର ଓ କର୍ମବିରତି ଏକାନ୍ତ ପ୍ରୟୋଜନ, ତାହା ଆଜି ସଂକ୍ଷିପ୍ତରୁ ସଂକ୍ଷିପ୍ତତର ହୋଇ ପଡ଼ୁଛି । କିନ୍ତୁ ଆଧୁନିକ ଶିଳ୍ପୀ ହୋଇ ସୁଦ୍ଧା ଫକୀରମୋହନ ଏ ସବୁ ତ୍ରୁଟି, ବିଚ୍ୟୁତିରୁ ସମ୍ପୂର୍ଣ୍ଣ ମୁକ୍ତ ଥିଲେ । ବିଶ୍ୱକବି ରବୀନ୍ଦ୍ରନାଥ ଥରେ କହିଥିଲେ, "ବିଶ୍ୱକୁ ନିର୍ବିକାର ଚିତ୍ତରେ ତଦ୍‌ଗତ ଭାବରେ ଦେଖିବା ହିଁ ଯଥାର୍ଥ ଆଧୁନିକ ଦୃଷ୍ଟିଭଙ୍ଗୀ । ଫକୀରମୋହନଙ୍କଠାରେ ଏହି ନିର୍ବିକାରଚିତ୍ତତା କିମ୍ବା ଶିଳ୍ପୀଜନୋଚିତ ନିସ୍ପୃହତା ଥିଲା କି

ନାହିଁ ତାହାର ବିଶ୍ଳେଷଣର ସ୍ଥାନ ଏ ନୁହଁ । କିନ୍ତୁ ସେ ଯେ ତଦାନୀନ୍ତନ ସାମାଜିକ ଓ ଧର୍ମସଂକ୍ରାନ୍ତ ସଂସ୍କାର ନିକଟରେ ନିଜକୁ ଆହୁତ ଦେଇ ନାହାନ୍ତି, ଏଥିରେ ସନ୍ଦେହ ନାହିଁ । ସେ ସମସାମୟିକ ଜୀବନ-ନୀତିକୁ ସର୍ବଥା ଅନୁକରଣ କରି ନାହାନ୍ତି । ସେ ଉଦ୍ଦେଶ୍ୟ-କେନ୍ଦ୍ରିକ ଲେଖକ ସତ, କିନ୍ତୁ କୌଣସି ଦୃଢ଼ତାର ସହିତ କହି ହେବ ନାହିଁ—ଫକୀରମୋହନଙ୍କର ଉଦ୍ଦେଶ୍ୟ ଏକଦେଶଦର୍ଶୀ, ରକ୍ଷଣଶୀଳ, ସୁନିର୍ଦ୍ଦିଷ୍ଟ ଏବଂ ସେହି କାରଣରୁ ସଂକୀର୍ଣ୍ଣ । ବରଂ ତାଙ୍କର ସମସାମୟିକ ବଙ୍ଗୀୟ ସାହିତ୍ୟର ଉପନ୍ୟାସ-ସମ୍ରାଟ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ-ଶିଳ୍ପରେ ଏହି ଶୈଳ୍ପିକ ନିସ୍ପୃହତାର ଅଭାବ ପରିଲକ୍ଷିତ କରି କୌଣସି କୌଣସି ବିଜ୍ଞ ସମାଲୋଚକ ଆକ୍ଷେପ ପ୍ରକାଶ କରିଅଛନ୍ତି । ବଙ୍କିମଚନ୍ଦ୍ରଙ୍କ ସମ୍ବନ୍ଧରେ ସୁ-ସମାଲୋଚକ ହୁମାୟୁନ କବିର କହନ୍ତି, "ସେଦିନର ପ୍ରଚଳିତ ନୈତିକତା ହିଁ ଥିଲା ତାଙ୍କର (ବଙ୍କିମଚନ୍ଦ୍ରଙ୍କର) ଲକ୍ଷ୍ୟ, ଏବଂ ତାରି ପ୍ରଚାରର ଦାୟିତ୍ୱ ଇ ସେ ଯେପରି ଗ୍ରହଣ କରିଥିଲେ । ତାଙ୍କଠାରେ ଶୈଳ୍ପିକ ନିସ୍ପୃହତା ନଥିବା ଯୋଗୁଁ ତାଙ୍କ ଉପନ୍ୟାସର ଯେଉଁ ସବୁ ଚରିତ୍ର ପ୍ରଚଳିତ ନୀତିର ବିରୁଦ୍ଧାଚରଣ କରିଛନ୍ତି, ସେମାନଙ୍କ ପ୍ରତି ତାଙ୍କର ବ୍ୟକ୍ତିଗତ କ୍ରୋଧ ପ୍ରକାଶ ପାଇଛି । ସେମାନଙ୍କୁ ସେ କୁତ୍ସିତରୂପେ ଅଙ୍କନ କରିଅଛନ୍ତି, ଏବଂ ଏପରି କି ସେମାନଙ୍କଠାରେ ଟିକିଏ ହେଲେ ଭଲ କିଛି ଦେଖିନାହାନ୍ତି । ଅନ୍ୟପକ୍ଷରେ, ଯେଉଁ-ମାନଙ୍କୁ ସେ (ପ୍ରଚଳିତ ନୀତିର ଧାରକ ଓ ବାହକ ରୂପେ) ଭଲ କରି ଅଙ୍କି ଅଛନ୍ତି, ସେତେବେଳେ ସେମାନେ ପ୍ରାୟ ଅବିଶ୍ୱାସ୍ୟ ହୋଇ ପଡ଼ିଛନ୍ତି ।" * ଅବଶ୍ୟ ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପରେ ବଙ୍କିମଚନ୍ଦ୍ରଙ୍କ ପରି 'ମନ୍ଦିର ଶାସ୍ତି', 'ଧାର୍ମିକର

* "ଶରତ୍-ସାହିତ୍ୟେର ମୂଳତତ୍ତ୍ୱ", ପୃ. ୪୬—୪୭ ।

ପୁରସ୍କାର' ଏବଂ 'ଈଶ୍ୱରଙ୍କ କାର୍ଯ୍ୟକଳାପ ଉପରେ ବିଶ୍ୱାସ' ଏ ତିନୋଟି ଜିନିସ ଅଛି । କିନ୍ତୁ ରବୀନ୍ଦ୍ରନାଥ କିମ୍ବା ଶରତ୍‌ଚନ୍ଦ୍ର ଗୋର୍କିଙ୍କ ପରି ସେ ଆନ୍ତର୍ଜାତିକ ପ୍ରସିଦ୍ଧି ଲାଭ କରିନଥିଲେ ମଧ୍ୟ, ରବୀନ୍ଦ୍ରନାଥଙ୍କ ପରି ତାଙ୍କର ଅନ୍ୟତମ ଲକ୍ଷ୍ୟ ଥିଲା ସୌନ୍ଦର୍ଯ୍ୟ ସୃଷ୍ଟି । ଶରତ୍‌ଚନ୍ଦ୍ରଙ୍କ ପରି ସେ ଶିଳ୍ପୀ, କିନ୍ତୁ ତାଙ୍କର ପ୍ରଧାନ ଲକ୍ଷ୍ୟ ହେଉଛି ସାମାଜିକ ଗୁରୁତ୍ୱ । ସେ ଶରତ୍‌ଚନ୍ଦ୍ରଙ୍କ ପରି ସାମାଜିକ ଜୀବନର ପାରମ୍ପରିକ ସମ୍ପର୍କର ଅଭ୍ୟନ୍ତରରେ ପ୍ରବେଶ କରିଅଛନ୍ତି, ଏବଂ ଶରତ୍‌ଚନ୍ଦ୍ରଙ୍କ ପରି ଫକୀରମୋହନଙ୍କର ଅଚଳ ବିଶ୍ୱାସ ଥିଲା, ସାମାଜିକ ଜୀବନର ଏହି ପାରମ୍ପରିକ ସମ୍ପର୍କର ଅଭ୍ୟନ୍ତରରେ ଅନୁପ୍ରବେଶ କରିବାଦ୍ୱାରା କେବଳ ଶୈଳ୍ପିକ ସୌନ୍ଦର୍ଯ୍ୟ ପ୍ରକଟିତ ହେବ ନାହିଁ, ମନୁଷ୍ୟ ମନୁଷ୍ୟ ମଧ୍ୟରେ ଯେଉଁ ସଂଘର୍ଷ ଏବଂ ଯେଉଁ ବିଦ୍ୱେଷ ଦେଖାଯାଏ, ତାହାର ଉପଶମ ହେବ । ଶରତ୍‌ଚନ୍ଦ୍ରଙ୍କ ପରି ଗୋଟିଏ ଗଭୀର ସମାଜବୋଧ, ଏବଂ ଗୋଟିଏ ବିଶାଳ ଓ ସାମଗ୍ରିକ ସାମାଜିକ ପୃଷ୍ଠଭୂମିର ସୁବିସ୍ତୃତ କଳ୍ପନା, ବିପ୍ଳବାତ୍ମକ ପ୍ରେରଣା, ମାନବତାବୋଧ ଓ ମନୁଷ୍ୟର ମର୍ଯ୍ୟାଦାବୋଧ ପ୍ରଭୃତି ନବୋଦିତ ଗଣତାନ୍ତ୍ରିକ ଭାବଧାରା, ଅଙ୍କିତ ଚରିତ୍ରମାନଙ୍କଠାରେ ଅପୂର୍ବ ଜୀବନ୍ୟାସ ଏବଂ ଜୀବନୀଶକ୍ତିର ଉଦ୍ଦୀପନା, ଫକୀରମୋହନଙ୍କ କଥାଶିଳ୍ପକୁ ମାନବତାର ଗୌରବରେ ମଣ୍ଡିତ କରିଅଛି ।

ସମାଲୋଚକମାନଙ୍କ ମତରେ *୧୯୩୯ ଖ୍ରୀଷ୍ଟାବ୍ଦରୁ ୧୯୫୯ ଖ୍ରୀଷ୍ଟାବ୍ଦ ଏହି କୋଡ଼ିଏ ବର୍ଷ ମଧ୍ୟରେ ଆଧୁନିକ ପୃଥିବୀର ଇତିହାସରେ ବାରମ୍ବାର ପଟ୍ଟ ପରିବର୍ତ୍ତିତ ହୋଇଅଛି । ବିଜ୍ଞାନ-ଗବେଷଣାର ଅବିଶ୍ୱାସ୍ୟ ଉନ୍ନତି ଘଟିଛି । ମନକ୍ଷେତ୍ରରେ ଅସମ୍ଭାବିତ

*ଅରୁଣକୁମାର ମୁଖୋପାଧ୍ୟାୟଙ୍କ 'କଥା-ସାହିତ୍ୟ ଜିଜ୍ଞାସା' ଦ୍ରଷ୍ଟବ୍ୟ ।

ପରିବର୍ତ୍ତନ ଘଟିଛି । ଏହି ସର୍ବଗ୍ରାସୀ ପରିବର୍ତ୍ତନ ଭାରତୀୟ କଥା-ସାହିତ୍ୟକୁ ଅଭାବନୀୟ ଭାବରେ ପ୍ରଭାବିତ କରିଅଛି । ଏହି କଥା-ଶିଳ୍ପର ଅନ୍ତସ୍ଥଳରେ ଅଛି ଶିଳ୍ପୀର ମନନଶୀଳ, ପର୍ଯ୍ୟବେକ୍ଷଣକ୍ଷମ ବିଜ୍ଞାନୀ ମନ, ଅଭିଜ୍ଞତାର ସତତା, ବିଶ୍ଳେଷଣୀ ପ୍ରତିଭା ଏବଂ ସର୍ବୋପରି ପ୍ରକୃତିପ୍ରେମୀ ଓ ଆବେଗଗର୍ଭିତ କବିମାନସ । 'ଆଧୁନିକ ଉପନ୍ୟାସ' କହିଲେ ଯେଉଁ ଭାବ ମନରେ ଉଦ୍ରିକ୍ତ ହୁଏ, ତାହା ହେଉଛି—ଅଧୁନା ଉପନ୍ୟାସ ଆଉ କେବଳ ଅବସର ବିନୋଦନ ନିମନ୍ତେ କିମ୍ବା ରମଣୀମୋହନ ସୁଖପାଠ୍ୟ କାହାଣୀ ପରିବେଷଣ ନିମନ୍ତେ ରଚିତ ହେଉ ନାହିଁ । ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ପାଶ୍ଚାତ୍ୟ ଉପନ୍ୟାସରେ ଏ କଥାର ସମର୍ଥନ ମିଳେ । ଟମାସ ମାନ୍, ଜେମେସ ଜୟସ, ମାର୍ସେଲ ପ୍ରୁସ୍ତ, ଅର୍ଣ୍ଣେଷ୍ଟ ହେମିଂୱେ, ଲକ୍ସଟନେସ୍, କାମୁ, ସାର୍ତ୍ର ଏବଂ ବରିସ୍ ପାସ୍ତେରନାକ୍ ପ୍ରଭୃତି ଦଶଜଣ ପ୍ରଥମ ଶ୍ରେଣୀର ଔପନ୍ୟାସିକ ଆଧୁନିକ ପାଶ୍ଚାତ୍ୟ ଉପନ୍ୟାସର ଧାରକ ଓ ବାହକ । ଏମାନେ ଯେଉଁ ଭାବରେ ମନୁଷ୍ୟ ଜୀବନକୁ ଦେଖି ଅଛନ୍ତି, ତାହା ସେହି ରବୀନ୍ଦ୍ର-କଥିତ ବିଶ୍ୱକୁ ନିର୍ବିକାର ଓ ନିସ୍ପୃହ ଚିତ୍ତରେ ଦେଖିବାର ଆଧୁନିକ ଦୃଷ୍ଟିଭଙ୍ଗୀ । ଏହାର ପଶ୍ଚାତରେ ଅଛି,ଊନବିଂଶ ଶତକର ମହତ୍ ଉତ୍ତରାଧିକାରର ସୂତ୍ର—ଡ଼ଷ୍ଟଏଭସ୍କି, ତୁର୍ଗେନିୟେଫ, ଟଲଷ୍ଟୟ, ସ୍ତାଁଦାଲ, ବାଲଜାକ ଓ ଫ୍ଲୋବେଅର । ଏ ଯୁଗର ମାନବ ସମାଜର ମହାକାବ୍ୟ ହେଲା ଉପନ୍ୟାସ । ସେଥିରେ ଧରାପଡ଼ୁଛି ଏ ଯୁଗର ସମସ୍ତ ଚିତ୍ତବିକ୍ଷୋଭ, ସଂଶୟ, ବେଦନା, ନୈରାଶ୍ୟ, ଆନନ୍ଦ, ଦର୍ଶନ, ସମାଜତତ୍ତ୍ୱ, ଇତିହାସ, ମନସ୍ତତ୍ତ୍ୱ, ଅର୍ଥନୀତି, ଶିଳ୍ପଶାସ୍ତ୍ର, ବିଜ୍ଞାନ ଓ ନୈତିକ ସମସ୍ୟା । ଏ ଯାବତୀୟ ବିଷୟର ଆଲୋଚନା ଓ ବିଶ୍ଳେଷଣ ଏ କାଳର ଉପନ୍ୟାସରେ ଦେଖିବାକୁ ମିଳେ । ଆଧୁନିକ ଉପନ୍ୟାସ

ଏକ ସର୍ବଗ୍ରାସୀ ଶିଳ୍ପ-କୀର୍ତ୍ତି । ଏହା ନିକଟରେ ଅନ୍ୟ ସବୁ ନିଷ୍ପ୍ରଭ । ତେଣୁ ଏ କାଳର ସାର୍ଥକ ସାହିତ୍ୟିକ ପ୍ରତିନିଧି ଔପନ୍ୟାସିକ ଏବଂ ଏ କାଳର ସାର୍ଥକ ଶିଳ୍ପକର୍ମ ଉପନ୍ୟାସ । ଆଧୁନିକ ଉପନ୍ୟାସର ଶିଳ୍ପବୈଶିଷ୍ଟ୍ୟ କେବଳ ମହତ୍ କିମ୍ବା ବ୍ୟାପ୍ତ କଳ୍ପନାରେ ପର୍ଯ୍ୟବସିତ ନୁହଁ, ଗଭୀର ମନନଶୀଳତା ଓ ସୁତୀବ୍ର ଜୀବନ-ଜିଜ୍ଞାସା ଏହାର ଅପରିହାର୍ଯ୍ୟ ଅଙ୍ଗିକ ଅଙ୍ଗ । ଆଧୁନିକ କଥା-ଶିଳ୍ପର ମାନ ନିରୂପଣ କରିବାବେଳେ ଆମ୍ଭମାନଙ୍କୁ ଏହି ବୌଦ୍ଧିକ ନିକଷରେ ପରୀକ୍ଷା କରି ନେବାକୁ ହେବ— କଥାଶିଳ୍ପୀ କେବଳ କାହାଣୀକାର, ନା ଜୀବନ-ଶିଳ୍ପୀ ? ଏହା ମନନ, ଚିନ୍ତା କିମ୍ବା ବୌଦ୍ଧିକ ଅନୁଶୀଳନର ଆଲୋକରେ ପରିଶୁଦ୍ଧ ଜୀବନ-ଭାଷ୍ୟ, ନା ପ୍ରଧାନତଃ କାହାଣୀସର୍ବସ୍ୱ ? ଆଧୁନିକ ଉପନ୍ୟାସ ଅଜି ରୂପକଥା କିମ୍ବା ରୋମାନ୍ସଧର୍ମୀ ଅବାସ୍ତବ ସୁକୁମାର ଘଟନାର ଶିଥିଳ ସମନ୍ୱୟ ନୁହଁ—ଆଧୁନିକ ଉପନ୍ୟାସ-ଶିଳ୍ପ ବୁଦ୍ଧିଜୀବୀ, ବୟସ୍କ ଓ ପ୍ରବୀଣ ପାଠକ ପାଠିକାମାନଙ୍କୁ ଯୋଗାଏ ଗଭୀର ଚିନ୍ତାର ମାନସିକ ଓ ଆଧ୍ୟାତ୍ମିକ ଅଶନ-ସାମଗ୍ରୀ । ଯୁଦ୍ଧୋତ୍ତର ଆଧୁନିକ ଓଡ଼ିଆ କଥା-ସାହିତ୍ୟ କାହାଣୀସର୍ବସ୍ୱ କି ମନନପ୍ରଧାନ, ସେ ବିଚାର ସର୍ବଶେଷରେ । କାହାଣୀ, ଚରିତ୍ର, ହୃଦୟାବେଗ ଓ ଘଟନାପ୍ରବାହ ଏସବୁ ତ କଥା-ଶିଳ୍ପର ଅପରିହାର୍ଯ୍ୟ ଉପାଦାନ । କିନ୍ତୁ ଜଣେ ବିଶିଷ୍ଟ ସମାଲୋଚକ ଆଧୁନିକ ଉପନ୍ୟାସର ସ୍ୱଧର୍ମ ଉପରେ ଗୁରୁତ୍ୱ ଦେଇ ଯେଉଁ ଚିନ୍ତାଗର୍ଭକ ମତର ଅବତାରଣା କରିଅଛନ୍ତି, ତାହା ଓଡ଼ିଆ କଥା-ସାହିତ୍ୟର ପଥିକୃତ୍ ଫକୀରମୋହନଙ୍କ ପ୍ରତି କେତେଦୂର ପ୍ରଯୋଜ୍ୟ ତାହା ଚିନ୍ତା କରିବାର ସମୟ ଆସିଛି । ସେ ଉକ୍ତିଟି ହେଉଛି, "ଆଧୁନିକ ଉପନ୍ୟାସ ଅଭିଜ୍ଞତାସମୃଦ୍ଧ, ବିଶ୍ଳେଷଣଧର୍ମୀ, ମନନପ୍ରଧାନ ତତ୍ତ୍ୱ-

ଜିଜ୍ଞାସୁ ପରିଣତ ଶିଳ୍ପକୀର୍ତ୍ତି—ଜୀବନ ଜିଜ୍ଞାସାର କୌତୁହଳୀ ଶିଳ୍ପକାର ।" ଫକୀରମୋହନଙ୍କ କଥା-ସାହିତ୍ୟ ତାଙ୍କର ବ୍ୟାପକ ଓ ବିଶାଳ ଅଭିଜ୍ଞତାରୁ ପ୍ରସୂତ । କେବଳ ଚରିତ୍ର ନୁହେଁ, ତୁଚ୍ଛାଦପି ତୁଚ୍ଛ ଘଟଣାବଳୀର ମନୋଜ୍ଞ ବିଶ୍ଳେଷଣ-ଗୁରୁତ୍ୱ ତାଙ୍କର ପ୍ରତ୍ୟେକ ଉପନ୍ୟାସ ଓ ଗଳ୍ପରେ ବିଚ୍ଛୁରିତ । ଚିନ୍ତାଶୀଳତା, ତତ୍ତ୍ୱାନୁଶୀଳନ ଓ ଜୀବନ-ଜିଜ୍ଞାସାରୁ ତାଙ୍କର କଥା-ଶିଳ୍ପ ମୁକ୍ତ ନୁହଁ । ଅନ୍ୟ ପ୍ରସଙ୍ଗ ବାଦ ଦେଇ ତାଙ୍କର ଅପରୂପ ଶିଳ୍ପ-ସୃଷ୍ଟି 'ରେବତୀ' ଓ 'ଗ୍ରାମ୍ୟପୁଅ ଅନନ୍ତା' ଗଳ୍ପକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଫକୀରମୋହନଙ୍କର ଗଭୀର ଜୀବନବୋଧ, ଆତ୍ମସଂଯମ ଓ ପର୍ଯ୍ୟବେକ୍ଷଣନୈପୁଣ୍ୟର ପରିଚୟ ମିଳେ ।

ସେହି ସମାଲୋଚକଙ୍କର 'ଉପନ୍ୟାସ-ଚିନ୍ତା'ର ଅନୁଧାବନ କରି ଫକୀରୋତ୍ତର ଅତ୍ୟାଧୁନିକ କଥା-ସାହିତ୍ୟ ସମ୍ବନ୍ଧରେ କିଞ୍ଚିତ୍ ପରିମାଣରେ ରୁକ୍ଷତା ପ୍ରକାଶ କରି କୁହାଯାଇପାରେ, "ଯେ କୌଣସି ଉପନ୍ୟାସର ଆଲୋଚନା ସମୟରେ ଯେଉଁ ପ୍ରସଙ୍ଗକୁ କୌଣସିରୂପେ ଉପେକ୍ଷା କରାଯାଇନପାରେ ତାହା ହେଲା ଜୀବନ ସମ୍ପର୍କରେ ଲେଖକଙ୍କର ମନୋଭଙ୍ଗୀର ସ୍ୱରୂପ ନିର୍ଣ୍ଣୟ । ଏବେ ଯେଉଁ ଉପନ୍ୟାସ କିମ୍ବା ଗଳ୍ପ ଆମ ଓଡ଼ିଆରେ ଲେଖାଯାଉଛି ତାହାର ଅନ୍ତରାଳରେ ଯେଉଁ ମନୋଭଙ୍ଗୀ କ୍ରିୟାଶୀଳ, ତାହାର ସ୍ୱରୂପ-ନିର୍ଣ୍ଣୟ ଅଳ୍ପ କେତେକ ବହିକୁ ବାଦ୍ ଦେଲେ ସମାଲୋଚକ ପକ୍ଷରେ ସୁଖକର ନୁହେଁ, ଏବଂ ଏହାଠାରୁ ଅଧିକ ଦୁଃଖର କଥା ଆଉ କିଛି ହୋଇପାରେନା ଯେ ଜୀବନବୋଧର ଅଭାବ ବା ବିକୃତ ମନୋଭଙ୍ଗୀ ଆମ କଥା-ସାହିତ୍ୟର ଅଗ୍ରଗତିକୁ ବ୍ୟାହତ କରୁଛି । ପ୍ରଗତିବାଦ ନାମରେ 'ମାଗୁଅ ତେଲ, ଯା ପେଲ୍' ଏ ନୀତିର ସମର୍ଥନ ବଡ଼ ଦୁରୂହ ବ୍ୟାପାର । ହେନେରି ଜେମ୍‌ସଙ୍କର ସେହି

ସ୍ମରଣୀୟ ଉକ୍ତି କଥା-ସାହିତ୍ୟିକମାନଙ୍କ ସ୍ମରଣପଥରୁ ଯେପରି କଦାପି ଅପସାରିତ ନହୁଏ । ସେ ଉକ୍ତିଟି ହେଉଛି—"No good novel will ever proceed from a superficial mind." ଫକୀରମୋହନଙ୍କ ଶିଳ୍ପୀ-ମାନସ ଏ ଦୁରପନେୟ କଳଙ୍କରୁ ବିମୁକ୍ତ ଥିଲା । ମନୁଷ୍ୟ ଜୀବନ ସମ୍ବନ୍ଧରେ ଗଭୀର ନ ହେଲେହେଁ ପ୍ରସାରିତପରିଧିପୂର୍ଣ୍ଣ ଅନୁଭୂତି ଓ ଅଭିଜ୍ଞତାହିଁ ତାଙ୍କ କଥା-ଶିଳ୍ପର ଅନମନୀୟ ମେରୁଦଣ୍ଡ ।

ଫକୀରମୋହନଙ୍କ ଶିଳ୍ପ-ସୃଷ୍ଟିର ଦ୍ୱିତୀୟ କଥା ହେଲା ତାଙ୍କର ସୃଜନୀ ପ୍ରତିଭା । ଏ ପ୍ରତିଭାର ମୂଳ ଉତ୍ସ ସନ୍ଧାନ କରିବାକୁ ହେଲେ ଆମ୍ଭମାନଙ୍କୁ ତାଙ୍କୁ ତୁଳନା କରିବାକୁ ହେବ ଜଣେ ଅସାମାନ୍ୟ ଶକ୍ତିସମ୍ପନ୍ନ ଇଂରେଜ ଔପନ୍ୟାସିକଙ୍କ ସହିତ । ଯେ ଫକୀର-ମୋହନଙ୍କ ପରି ଗୁରିଖଣ୍ଡି ମାତ୍ର ଉପନ୍ୟାସ ରଚନା କରି ଏ ଦିଗରେ ଖ୍ୟାତିମାନ୍ ହୋଇ ପାରିଛନ୍ତି, ଏବଂ ଯେ ଫକୀରମୋହନଙ୍କ ପରି ଥିଲେ ହାସ୍ୟରସର ଜଣେ ସୁନିପୁଣ ରୂପକାର, ସେ ହେଉଛନ୍ତି ହେନେରି ଫିଲ୍‌ଡିଂ (Henry Fielding, 1707—1754) । ଏହି ସୁପ୍ରତିଷ୍ଠିତ ଔପନ୍ୟାସିକ ସାର୍ଥକ ଉପନ୍ୟାସ ରଚନା କରିବା ନିମନ୍ତେ ସୃଜନୀ ପ୍ରତିଭାକୁ ଆବାହନ କରି ଲେଖିଥିଲେ, "Do thou kindly take me by the hand, and lead me through all the mazes, the winding labyrinth of nature. Initiate me into all these mysteries of nature which profane eyes never beheld. Teach me, which to thee is no difficult task, to know mankind better than they know themselves × × ×, fill, my pages with humour;

**till mankind learn the good nature to laugh, only at the follies of others, and the humility to grieve at their own."**

ଏ ସବୁରେ ଯେପରି ଫକୀରମୋହନଙ୍କ ଶୈଳ୍ପିକ ଆକାଂକ୍ଷା ଓ ଅଭିରୁଚିର ସ୍ପଷ୍ଟ ପ୍ରତିଧ୍ୱନି। ଫିଲ୍‌ଡ଼ିଂ ସୃଜନୀ ପ୍ରତିଭାର ଚରଣ ତଳେ ଆତ୍ମନିବେଦନ କରି ଭିକ୍ଷା କରିଅଛନ୍ତି, "ମନୁଷ୍ୟ ଜୀବନର ଏ ଗ୍ରନ୍ଥିଳ ରହସ୍ୟ ଉନ୍ମୋଚନ କରିବାକୁ ମୋତେ ପଥ ଦେଖାଅ, ଜନନୀ ! ମନୁଷ୍ୟ ନିଜେ ନିଜକୁ ଠିକ୍ କରି ଚିହ୍ନିପାରୁ ନାହିଁ । ମତେ ସେହି ଶକ୍ତିରେ ସଞ୍ଜୀବିତ କର, ଯାହାଦ୍ୱାରା ମୁଁ ମନୁଷ୍ୟ ଜୀବନକୁ ଭଲରୂପେ ଚିହ୍ନି ପାରିବି ଓ ଚିହ୍ନାଇ ପାରିବି । ମୋତେ ସେହି କୌତୁକ ରସରେ ଅନୁପ୍ଲାବିତ କର, ଯାହା ଫଳରେ ମୁଁ ପାଠକପାଠିକାଙ୍କୁ ହସାଇ ପାରିବି । ଅଗୋ ଚିରକୌତୁକମୟୀ, ମୋତେ ସେହି ଶକ୍ତିରେ ଉଦ୍ଦୀପିତ କର ଯେଉଁ ଶକ୍ତିର ଅନନ୍ତ ପ୍ରେରଣାରେ ମୁଁ ଏପରି କଥା-ସାହିତ୍ୟ ସୃଷ୍ଟି କରିବି, ଯାହା ପାଠ କରି ମନୁଷ୍ୟ ଅନ୍ୟର ଦୁର୍ବଳତା ଓ ମୂଢ଼ତା ଦେଖି ହୃଦୟ ଖୋଲି ହସିବ ଏବଂ ନିଜର ଦୋଷ ଦୁର୍ବଳତାରେ ଆତ୍ମସଙ୍କୋଚଜନିତ ଗ୍ଳାନି ଅନୁଭବ କରିବ ।"

କେବଳ ଫିଲ୍‌ଡ଼ିଂଙ୍କ ସହିତ ଫକୀରମୋହନଙ୍କର ସାମଞ୍ଜସ୍ୟ ଏହିଠାରେ ନିଃଶେଷ ନୁହେଁ । ଫିଲ୍‌ଡ଼ିଙ୍ଗ୍ କେବଳ ସ୍ରଷ୍ଟା ନୁହନ୍ତି—ସୃଷ୍ଟିର ବିଶ୍ଳେଷକ । ସେ ନିଜେ ଯେପରି ସାର୍ଥକ ଉପନ୍ୟାସ ରଚନା କରିଅଛନ୍ତି, ସେହିପରି ଉପନ୍ୟାସ ସମ୍ବନ୍ଧରେ କେତେ-ଗୁଡ଼ିଏ ସାଧାରଣ ସତ୍ୟ ମଧ୍ୟ ଲିପିବଦ୍ଧ କରିଯାଇଅଛନ୍ତି । ତାଙ୍କ ମତରେ ଔପନ୍ୟାସିକ କେବଳ ଘଟନା-ପ୍ରବାହର ଲିପିକାର ନୁହନ୍ତି—ସେ ଜଣେ ଐତିହାସିକ । ସେ ସାମ୍ବାଦିକ ନୁହନ୍ତି ଯେ

ଷ୍ଟେଟ ବଡ଼ ସବୁ ପ୍ରକାର ସମ୍ବାଦକୁ ସେ ସମାନ-ସଂଖ୍ୟକ ଅକ୍ଷରରେ ପ୍ରକାଶ କରିବ । ଔପନ୍ୟାସିକକୁ ବହୁଜ୍ଞ ହେବାକୁ ପଡ଼ିବ । ସାମାଜିକ ଓ ରାଜନୈତିକ ଚିନ୍ତାଧାରାର ପରିବର୍ତ୍ତନ ତାଙ୍କୁ ଲକ୍ଷ୍ୟ କରିବାକୁ ହେବ । ବ୍ୟକ୍ତିଗତ ଓ ସାମାଜିକ ଜୀବନର ଜଟିଳ ଦ୍ୱନ୍ଦ୍ୱ ଓ ସଂଘାତର ଚିତ୍ର ତାଙ୍କୁ ଉପନ୍ୟାସରେ ରେଖାୟିତ କରିବାକୁ ହେବ, ଘଟଣାର କାର୍ଯ୍ୟ କାରଣ ସମ୍ବନ୍ଧ ଆବିଷ୍କାର କରିବାକୁ ହେବ—ତାଙ୍କୁ କେବଳ ଭାବନିଷ୍ଠ ନହୋଇ ବସ୍ତୁନିଷ୍ଠ ହେବାକୁ ପଡ଼ିବ ।

ଫିଲ୍‌ଡିଂଙ୍କ ମତରେ ମାନବ ଜୀବନର 'ଐତିହାସିକ'-ଔପନ୍ୟାସିକର ପ୍ରଧାନତଃ ଗୁଟିଏ ଗୁଣ ଥିବା ଆବଶ୍ୟକ । ପ୍ରଥମଟି ହେଲା ପ୍ରତିଭା **(Genius)** । ଏହି ପ୍ରତିଭା ଯାହାର ନାହିଁ ତାର କୌଣସି ସୃଷ୍ଟିଧର୍ମୀ ରଚନାରେ ହାତ ଦେବା ଉଚିତ ନୁହେଁ । ଫିଲ୍‌ଡିଂଙ୍କ ମତରେ ଏହି 'ପ୍ରତିଭା'ର ଅର୍ଥ ହେଉଛି ଆବିଷ୍କାର ଓ ବିବେଚନା କରିବାର ଶକ୍ତି ( **the powers of invention and judgment** ) । ଏହି ଦୁଇଟି ଶକ୍ତି ସାହାଯ୍ୟରେ ଲେଖକ ମନୁଷ୍ୟ ଜୀବନର ଗଭୀର ରହସ୍ୟର ଅତଳ ପ୍ରଦେଶରେ ପ୍ରବେଶ କରିପାରେ । ଏହି ମାନସିକ ଶକ୍ତିବଳରେ ତାର ପାର୍ଥକ୍ୟ-ବୋଧ ଓ ସଦସତ୍ ବିଗ୍ଭର କରିବାର ଶକ୍ତିର ସ୍ଫୁରଣ ହୁଏ ।

କିନ୍ତୁ କେବଳ ଏହି ପ୍ରତିଭାର ଅଧିକାରୀ ହେଲେ କିଏ କଦାପି ଉଚ୍ଚକୋଟିର ଉପନ୍ୟାସ ସର୍ଜନା କରିପାରିବ ନାହିଁ । ଏହା ସହିତ ସଂଯୁକ୍ତ ହେବ ବିଦ୍ୟାଲବ୍ଧ ଜ୍ଞାନ **(a good share of learning)** । ହୋମର ଓ ମିଲ୍‌ଟନ ତାଙ୍କ ସମୟର ସକଳ ବିଦ୍ୟାରେ ନୈପୁଣ୍ୟ ଅର୍ଜନ କରିଥିଲେ । ଔପନ୍ୟାସିକକୁ ତେଣୁ

ଇତିହାସ, ଭୂଗୋଳ, ଅର୍ଥନୀତି, ମନସ୍ତତ୍ତ୍ୱ ଓ ସମାଜନୀତି ଏ ସକଳ ବିଷୟରେ ଜ୍ଞାନ ଅର୍ଜନ କରିବାକୁ ହେବ ।

ଲୋକଚରିତ୍ର ଅଧ୍ୟୟନ କରିବାକୁ ହେଲେ, ଏହି ଶାସ୍ତ୍ରଗତ ଜ୍ଞାନ ସହିତ ଔପନ୍ୟାସିକଙ୍କୁ ଆଉ ଗୋଟିଏ ଉନ୍ମୁକ୍ତ ପନ୍ଥା ଅବଲମ୍ବନ କରିବାକୁ ହେବ । ସେ ପନ୍ଥାଟି ହେଉଛି **'Conversation'** ଅର୍ଥାତ୍ ସାନ, ବଡ଼, ଧନୀ, ନିର୍ଦ୍ଧନ, ଅଭିଜାତ କିମ୍ବା ଉପେକ୍ଷିତ ସମାଜର ସକଳ ଶ୍ରେଣୀର ଲୋକମାନଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସି ସେମାନଙ୍କର ଅନ୍ତର ଓ ବାହାରର ସମସ୍ତ ଅନୁଭୂତି ଓ ଆଚରଣ ସମ୍ବନ୍ଧରେ ଅଭିଜ୍ଞତା ଅର୍ଜନ କରିବା । ଫିଲ୍ଡିଂଙ୍କ ମତରେ **"which in our historian must be universal, that is, with all ranks and degrees of men."**, ଅର୍ଥାତ୍ ଏହି ପରିଚୟ କିମ୍ବା ବ୍ୟକ୍ତିଗତ ସମ୍ପର୍କ ଯେତିକି ସାର୍ବଜନୀନ ଓ ବ୍ୟାପକ ହେବ, ଉପନ୍ୟାସ ସେତିକି ଅମ୍ଳାନ ସୃଷ୍ଟିରୂପେ ବିରାଜିତ ହେବ ।

କିନ୍ତୁ ଏସବୁ ଗୁଣ ବ୍ୟର୍ଥତାରେ ପର୍ଯ୍ୟବସିତ ହେବ, ଯଦି କଥାଶିଳ୍ପୀର 'ହୃଦୟ' ବୋଲି ଗୋଟିଏ ଜିନିସ ନଥାଏ, ତାର ଅନୁଭବ ଶକ୍ତି ନଥାଏ ଏବଂ ଅନ୍ୟର ସୁଖ ଦୁଃଖରେ ତାର ଚିତ୍ତ ସମ୍ବେଦନାରେ ସ୍ପନ୍ଦିତ ହୋଇ ନ ଉଠେ । ସେ ଯଦି ଏପରି ଆତ୍ମକେନ୍ଦ୍ରିକ ଓ ଅହଂଭାବାପନ୍ନ ହୁଏ ଯେ ନିଜର ସଂକୀର୍ଣ୍ଣ ସ୍ୱାର୍ଥକୁ ଅତିକ୍ରାନ୍ତ କରି ସେ ବୃହତ୍ତର ସମାଜର ସୁଖ ଦୁଃଖରେ ନିଜକୁ ମିଶାଇଦେଇ ଦୃଷ୍ଟିକୋଣକୁ ସମ୍ପ୍ରସାରିତ କରିନପାରେ, ସେ ହୃଦୟହୀନ, ତାର ସମ୍ବେଦନଶୀଳତା ନାହିଁ, ତେଣୁ ତାହାପ୍ରତି ସ୍ନେହ ସୌହାର୍ଦ୍ଦ୍ୟ ନାହିଁ, ଫଳରେ ସେ ହୁଏ ସ୍ୱାର୍ଥପରାୟଣ ଓ ଆତ୍ମମଗ୍ନ, ତେଣୁ ସର୍ବୋପରି ରସସମ୍ଭାର ବଞ୍ଚିତ—ନିପଟ ଅରସିକ ।

ଏପରି ହୃଦୟହୀନ ଲେଖକ ଉପନ୍ୟାସ ସୃଷ୍ଟି କରିବାକୁ ଅସମର୍ଥ । ତେଣୁ ଫିଲ୍‌ଡ଼ିଂ ଯଥାର୍ଥ କହିଅଛନ୍ତି, "Nor will all these qualities I have hitherto given my historian avail him, unless he have what is generally meant by a good heart and be capable of feeling. The author who will make me weep, says Horace, must first weep himself." ନିଜେ ନ କାନ୍ଦିଲେ ଔପନ୍ୟାସିକ ଅନ୍ୟକୁ କନ୍ଦାଇବ କିପରି ? ଏହି ସମବେଦନା କିମ୍ବା ହୃଦୟବତ୍ତା ହିଁ ଔପନ୍ୟାସିକର ପ୍ରଧାନ ଅବଲମ୍ବନ—ସୃଷ୍ଟି ପ୍ରେରଣାର ଅଫୁରନ୍ତ ଉତ୍ସ । କିନ୍ତୁ ଏ କାନ୍ଦିବାରେ ଆତ୍ମସଂଯମ ଅବଲମ୍ବନ ନକଲେ ଲେଖକ ଯାହା ସୃଷ୍ଟି କରିବ ତାହା ତାର କ୍ଷଣିକ ଆବେଗରେ ନିୟନ୍ତ୍ରିତ ହୋଇ ସତ୍ୟକୁ ବିକୃତ କରିପାରେ । ଭାବାତିଶଯ୍ୟରେ ଉପନ୍ୟାସର ବାସ୍ତବତା କ୍ଷୁଣ୍ଣ ହୋଇପାରେ । *

ଫିଲ୍‌ଡ଼ିଂ ଔପନ୍ୟାସିକର ଏ ଯେଉଁ ଚତୁର୍ଭୁଜ ସୃଷ୍ଟି-ଧର୍ମ ଉପରେ ଗୁରୁତ୍ୱ ଦେଇଅଛନ୍ତି, ଯଥା—ପ୍ରତିଭା, ବିଦ୍ୟା, ମାନବ-ପ୍ରକୃତି ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଓ ଅଭିଜ୍ଞତା ଏବଂ ହୃଦୟବତ୍ତା, ତାହା ଫକୀରମୋହନଙ୍କ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ ସମ୍ପୂର୍ଣ୍ଣରୂପେ ପ୍ରତିଭାତ । ଏଥିପାଇଁ ପ୍ରମାଣର ଆବଶ୍ୟକତା ନାହିଁ—ଏହାର ଜ୍ୱଳନ୍ତ ସାକ୍ଷୀ ଫକୀରମୋହନଙ୍କର ଅଗଣିତ ପାଠକପାଠିକାମାନଙ୍କର ହୃଦୟ ଓ ରସାନୁଭୂତି ।



* 'Studies in Novelists'—Vol. I by B. R. Mullik, p. 5 and 'The Making of Literature' by R. A. Scott James, p. 371-372.

# ଇତିହାସ ଓ ଐତିହାସିକତା

୧। "The writer who undertakes to rehabilitate the past has in a measure to accept the responsibilities of the Chronicler. He has thus to satisfy at once the claims of history and the claims of art." (Hudson).

୨। "ବର୍ତ୍ତମାନ କର୍ତ୍ତବ୍ୟ କଣ ? ଇତିହାସ ପଢ଼ିବ ନା ଆଇଭ୍ହାନ ହୋ (Ivan-hoe—Scott) ପଢ଼ିବ ? ଏହାର ଉତ୍ତର ସହଜ। ଉଭୟ ପଢ଼। ସତ୍ୟ ନିମନ୍ତେ ଇତିହାସ ପଢ଼। ଆନନ୍ଦ ପାଇଁ ଆଇଭ୍ହାନ ହୋ ପଢ଼। କାଳେ ଭୁଲ ଶିଖିବ, ଏହି ସତର୍କତାରେ ନିଜକୁ କାବ୍ୟରସରୁ ବଞ୍ଚିତ କଲେ ସ୍ୱଭାବଟା ଶୁଖି ଶୀର୍ଣ୍ଣ ହୋଇପଡ଼େ। କାବ୍ୟରେ ଯଦି ଭୁଲ ଥାଏ ଇତିହାସ ପଢ଼ି ତାହା ସଂଶୋଧନ କରିନିଅ। କିନ୍ତୁ ଯେଉଁ ବ୍ୟକ୍ତି ଇତିହାସ ପଢ଼ିବାର ସୁଯୋଗ ପାଇବ ନାହିଁ, କେବଳ କାବ୍ୟ ପଢ଼ିବ, ସେ ହତଭାଗ୍ୟ। କିନ୍ତୁ ଯେଉଁ ବ୍ୟକ୍ତି କାବ୍ୟ ପଢ଼ିବାର ଅବକାଶ ପାଇବ ନାହିଁ, କେବଳ ଇତିହାସ ପଢ଼ିବ, ସମ୍ଭବତଃ ତାହାର ଭାଗ୍ୟ ଅଧିକ ଖରାପ।

'ରବୀନ୍ଦ୍ରନାଥ—ଐତିହାସିକ ଉପନ୍ୟାସ'

ଏ ପର୍ଯ୍ୟନ୍ତ ଫକୀରମୋହନ-ସାହିତ୍ୟର ସମୀକ୍ଷକମାନଙ୍କର ଦୃଷ୍ଟି କେବଳ ନିବଦ୍ଧ ହୋଇ ରହିଛି ତାଙ୍କର ଐତିହାସିକ-ଉପନ୍ୟାସ 'ଲଛମା' ଉପରେ । କିନ୍ତୁ ଫକୀରମୋହନଙ୍କ ଇତିହାସ-ପ୍ରୀତି ଓ ବଳିଷ୍ଠ ଐତିହ୍ୟବୋଧ ଯେ ତାଙ୍କର ଅନ୍ୟାନ୍ୟ କୃତି-ମାନଙ୍କରେ ଏହାର ପ୍ରୋଜ୍ଜ୍ୱଳ ସ୍ୱାକ୍ଷର ବହନ କରିଅଛି, ଏପରି କି ତାଙ୍କର ଗୀତ-କବିତା ଏବଂ କ୍ଷୁଦ୍ର ଆଲୋଚନାତ୍ମକ ସନ୍ଦର୍ଭମାନଙ୍କରେ ପ୍ରତିବିମ୍ବିତ ହୋଇ ଉଠିଛି, ଏଥିପ୍ରତି କେହି ସମାଲୋଚକ ଏପର୍ଯ୍ୟନ୍ତ ସେହିପରି ବ୍ୟାପକ ଓ ଗଭୀର ପ୍ରଣିଧାନ ଦେଇଥିବାର ମନେ ହୁଏ ନାହିଁ । 'ସ୍ତବ୍ଧ ଓ ମୌନ ଅତୀତ' 'ଗୋପନଗୃହ' ଭାବରେ ତାଙ୍କର ମର୍ମମଧ୍ୟରେ ସଞ୍ଚାର କରି ଗୋପନେ ଗୋପନେ କେତେ ଅକୁହା କଥା ତାଙ୍କୁ କହିଯାଇଛି ! ତାଙ୍କ ପ୍ରାଣରେ କିପରି ସୁଦକ୍ଷ ଶିଳ୍ପୀ ପରି ଲୋକଲୋଚନର ଅଗୋଚର ସେହି ସୁଦୂର ଅତୀତର କେତେ ସମ୍ମୋହନ ଚିତ୍ର ଅଙ୍କନ କରିଯାଇଛି । କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କର ଅଚେତନ ଅତୀତ ପ୍ରତି ଏହି ଯେଉଁ କରୁଣ-କାତର ବିନମ୍ର-ଗମ୍ଭୀର ଉଦ୍‌ବୋଧନ—

"ହେ ଅତୀତ, ତୁମି ଭୁବନେ ଭୁବନେ,
କାଜ କ'ରେ ଯାଏ ଗୋପନେ ଗୋପନେ,

ମୁଖର ଦିନେର ଚପଲତା ମାଝେ ସ୍ଥିର ହ'ୟେ ତୁମି ରଓ
ହେ ଅତୀତ, ତୁମି ଗୋପନେ ହୃଦୟେ, କଥା କଓ, କଥା କଓ ।"

ତାହାର ପ୍ରତିଧ୍ୱନି ଆମେ ଶୁଣିବାକୁ ପାଉ, ଫକୀରମୋହନଙ୍କ 'ଯୋଷେ ଫାଇନ', 'ତାରବାଈ', 'ଶାକ୍ୟସିଂହ ବୈରାଗ୍ୟ', 'କ୍ଲିଓପେଟ୍ରା', 'ଜଗାଇ ମାଧାଇ', 'ତୁକାରାମ', 'ସତୀ ଲୁକ୍ରେସିଅ', 'ଜାପାନ-ଚିତ୍ର', 'ଜାପାନ', 'କଳାପାହାଡ଼', 'ଯୀଶୁକୃଷ୍ଣ', 'ଅଦମ ନରଦମତର

ଧର୍ମଜ୍ଞାନ' ପ୍ରଭୃତି ବର୍ଣ୍ଣନା ସମୟରେ ରଚିତ କ୍ଷୁଦ୍ର କବିତା; 'ଉତ୍କଳ ଭ୍ରମଣର ଭୂତ ଭବିଷ୍ୟତ', 'ସିରାଜ ଉଦ୍ଦୌଲାଙ୍କ ଗୃହଶାଳୀ' ଏବଂ 'ଗୁରୁଦକ୍ଷିଣା' ପ୍ରଭୃତି ଗଦ୍ୟ-ନିବନ୍ଧମାନଙ୍କରେ, ଏବଂ 'ବାଲେଶ୍ୱର ବନ୍ଦରଯାନ' ଗଳ୍ପରେ କଲିକତାଠାରୁ ପୁରୀ ପର୍ଯ୍ୟନ୍ତ ସଡ଼କର ଐତିହାସିକ ବିବରଣୀରେ, 'କାଳିକା ପ୍ରସାଦ ଗୋଟାପ', 'କମଳା ପ୍ରସାଦ ଗୋଟାପ'ରେ ଓଡ଼ିଶାର ତଥା ବାଲେଶ୍ୱରର ସାମୁଦ୍ରିକ ବାଣିଜ୍ୟର ଅବଲୁପ୍ତିର ହୃଦୟସ୍ପର୍ଶୀ ଚିତ୍ରରେ ।

ଫକୀରମୋହନଙ୍କର କଳ୍ପନା ଥିଲା ସର୍ବତ୍ରଗାମୀ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନକୁ ନେଇ ଯେଉଁ ଅଖଣ୍ଡ ଓ ବିରାଟ ମାନବସତ୍ତା, ତାହା ସହିତ ଫକୀରମୋହନଙ୍କର ଥିଲା ନିବିଡ଼ ଏକାତ୍ମବୋଧ । ଏହି ବିରାଟ ଓ ଅଖଣ୍ଡରୁ ଯେ ଯେତିକି ବିଚ୍ଛିନ୍ନ, ସେ ସେତିକି କ୍ଷୁଦ୍ର । ତାର ପ୍ରତିଭା ଓ ସୃଜନଶକ୍ତିର ପରିସର ସେତିକି ସଙ୍କୀର୍ଣ୍ଣ ଓ ସୀମାବଦ୍ଧ । କେବଳ ଦୈନନ୍ଦିନ ଜୀବନର ପ୍ରବାହରେ ଯେଉଁ କବି କିମ୍ବା ଲେଖକ ନିଜକୁ ଅସହାୟ ଭାବରେ ଭସାଇଦିଏ, ସେ ନିଜକୁ ନିରବଚ୍ଛିନ୍ନ କାଳର ଅବ୍ୟାହତ ସ୍ରୋତରୁ ନିଜକୁ ପୃଥକ୍ କରି ନେଇ ଦୃଷ୍ଟିକୁ କେବଳ ସୀମାୟିତ କରେ ବର୍ତ୍ତମାନ ଉପରେ । କିନ୍ତୁ ଫକୀରମୋହନଙ୍କଠାରେ ଥିଲା ଜୀବନର ଅଖଣ୍ଡତାର ସମ୍ୟକ୍ ଉପଲବ୍ଧି । ସେ ଯେପରି ତାଙ୍କର ଚତୁଃପାର୍ଶ୍ୱରେ ବହୁ ବିଚିତ୍ର ଭାବରେ ପ୍ରବାହିତ ସମସାମୟିକ ଜୀବନଧାରାକୁ ସୂକ୍ଷ୍ମ ଭାବରେ ପର୍ଯ୍ୟବେକ୍ଷଣ କରି ତାହା ତାଙ୍କର କଥା-ସାହିତ୍ୟରେ ସୂକ୍ଷ୍ମ ଭାବରେ ରୂପାୟିତ କରିଅଛନ୍ତି, ସେହିପରି ଅନାଗତ ଭବିଷ୍ୟତର ମଙ୍ଗଳମୟ ସଙ୍କେତ ଓ ଦିଗ୍‌ଦର୍ଶନ ଦେବା ସଙ୍ଗେ ସଙ୍ଗେ ବିସ୍ମୃତିଗର୍ଭରୁ କ୍ରମବିଲୀୟମାନ ଐତିହ୍ୟ ସମ୍ପଦ ଉଦ୍ଧାର କରି ତାଙ୍କର ଇତିହାସପ୍ରବଣତାଦ୍ୱାରା ତାକୁ ରସମୟ ଓ ଜୀବନ୍ତ

କରିଅଛନ୍ତି । ଏହି ଗୋପନ ଅତୀତ ତାଙ୍କ ପ୍ରାଣକୁ ନିରବଧି ଅଭିଭୂତ ଓ ଆଲୋଡ଼ିତ କରୁଥିଲା ବୋଲି ସେ ସର୍ବଦା ଅତୀତ ଇତିହାସର ପୃଷ୍ଠପଟ ଉପରେ ବର୍ତ୍ତମାନକୁ ଅବସ୍ଥାପିତ କରିଅଛନ୍ତି । ତାଙ୍କର ସାହିତ୍ୟ-ସାଧନାର ଶୈଶବ ହିଁ ଏହି ଇତିହାସ-ଚେତନାର ସାକ୍ଷ୍ୟ ଦିଏ । ୧୮୭୭ ମସୀହାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଜୀବନଚରିତ ସେ ବଙ୍ଗଳାରୁ ଅନୁବାଦ କରି ତାର ତିନିବର୍ଷ ପରେ 'ଯାବତ୍ ବହୁ ପରିଶ୍ରମ ସ୍ୱୀକାର' ପୂର୍ବକ ଭାରତବର୍ଷର ଇତିହାସର ପ୍ରଥମଖଣ୍ଡ ପ୍ରଣୟନ କରିଥିଲେ । ଅତୀତରୁ କ୍ରମେ କ୍ରମେ ନାନା ସ୍ତର ଏବଂ ପର୍ଯ୍ୟାୟ ଅତିକ୍ରମ କରି ତାଙ୍କର ବର୍ତ୍ତମାନ କିମ୍ବା ସମସାମୟିକ ଇତିହାସ ପ୍ରତି ପଦକ୍ଷେପ ଓ ଅଗ୍ରସରଣ ।

କେବଳ 'ଲଛମା' ନୁହେଁ, ତାଙ୍କର ସାମାଜିକ ଉପନ୍ୟାସ-ମାନଙ୍କରେ ମଧ୍ୟ ଏହି ଇତିହାସ-ଚେତନା ଓ ଅତୀତବୋଧର ପରିଚୟ ମିଳେ । 'ମାମୁଁ'ରେ ଦାଶରଥି ଦାସଙ୍କ ପରିବାରର ବିସ୍ତୃତ ବିବରଣୀ ନଦେଲେ ଫକୀରମୋହନଙ୍କର ସନ୍ତୋଷ ନାହିଁ । ଉତ୍ତରାୟ ବଂଶର କେବଳ ଉତ୍ପତ୍ତିର ବିକାଶଧାରା ଦର୍ଶାଇ ସେ ତୃପ୍ତ ନୁହନ୍ତି । ମହାରାଜାଙ୍କ ନିଯୁକ୍ତ ପ୍ରଥମ ସେନାପତି ବୀରବର ମଲ୍ଲ ମର୍ଦ୍ଦରାଜଙ୍କ ବଂଶଲତା ମଧ୍ୟ ସେ ଐତିହାସିକଙ୍କ ପରି ଦେବାକୁ ଭୁଲି ନାହାନ୍ତି । ଖଣ୍ଡାୟତମାନଙ୍କର ଉତ୍ଥାନ, ପତନ, ବୀରତ୍ୱ ଓ ଉଦ୍ଦୀପ୍ତିର ଜୀବନ୍ତ ଇତିହାସ ତ ଫକୀରମୋହନଙ୍କ ପରି କୌଣସି ଓଡ଼ିଆ ଐତିହାସିକ କିମ୍ବା ଔପନ୍ୟାସିକ ଲିପିବଦ୍ଧ କରିଥିବା ଜଣା ପାଏ ନାହିଁ । ଫକୀରମୋହନଙ୍କଠାରେ ଦୁଇଟି ଉପାଦାନର ମଧୁର ସମନ୍ୱୟ ଦେଖିବାକୁ ମିଳେ—କାଳ୍ପନିକ ଇତିହାସବୋଧ ଓ ଐତିହାସିକ କଳ୍ପନାବୋଧ । 'ଲଛମା'ରେ ଏହି ଐତିହାସିକ

କଳ୍ପନାବୋଧ ବିଦ୍ୟମାନ । କିନ୍ତୁ କାଳିନ୍ଦୀଙ୍କ ଇତିହାସବୋଧର ଚରମ ନିଦର୍ଶନ ଦେଖିବାକୁ ମିଳେ 'ଛ ମାଣ ଆଠ ଗୁଣ୍ଠ' ଉପନ୍ୟାସର ଗୋବିନ୍ଦପୁର ମୌଜାର ଅସୁରଦୀଘି ବର୍ଣ୍ଣନାରେ । ଫକୀରମୋହନ ତାଙ୍କର ସ୍ୱଭାବସୁଲଭ ହାସ୍ୟମୟୀ ଭଙ୍ଗୀରେ ଏହି ବର୍ଣ୍ଣନାର ପ୍ରାକ୍-କଥନରେ ଜଣେ ଆଧୁନିକ ଗବେଷଣାତତ୍ପର ଐତିହାସିକଙ୍କ ପରି ଲେଖିଅଛନ୍ତି, 'ଗ୍ରାମର ପଞ୍ଚାନବେ ବର୍ଷର ବୁଢ଼ା ଏକାଦୁଣିଆ ତନ୍ତୀ ମୁହଁରୁ ପୁଷ୍କରିଣୀ ସମ୍ବନ୍ଧରେ ଯେଉଁ ଇତିହାସ ସାରସଂଗ୍ରହ କରିଅଛୁ, ତାହାର ସଂକ୍ଷିପ୍ତ ବୃତ୍ତାନ୍ତ ଏହି'— ଏଠାରେ ଏହି ବ୍ୟଙ୍ଗୋକ୍ତି ମଧ୍ୟରେ ବି ଫକୀରମୋହନଙ୍କ ଇତିହାସ-ଚେତନା ସୁସ୍ପଷ୍ଟ । ଇତିହାସର ଉପାଦାନ କିମ୍ବା ବିଷୟବସ୍ତୁକୁ ସତ୍ୟତାର ଦୃଢ଼ଭିତ୍ତି ଉପରେ ସ୍ଥାପନ କରିବାକୁ ହେବ, ସେଥିରେ କଳ୍ପନା କିମ୍ବା ଅବାସ୍ତବତାର ସ୍ଥାନ ରହିବ ନାହିଁ । ସନ୍ଦେହାତୀତ ଐତିହାସିକ ବସ୍ତୁର ଏକାନ୍ତ ନିର୍ଭରଶୀଳ ସହାୟକ ହେଉଛି ସମସାମୟିକ ବିବରଣୀ, ଏହି ଯେପରି ହର୍ଷବର୍ଦ୍ଧନଙ୍କ ରାଜତ୍ୱର ଇତିହାସ ନିମନ୍ତେ ଚୀନପରିବ୍ରାଜକ ହୁଏନସାଂଙ୍କ ବିବରଣୀ । ତା ନଥିଲେ ଜନଶ୍ରୁତି କିମ୍ବା କିମ୍ବଦନ୍ତୀ । ଏ କିମ୍ବଦନ୍ତୀ ସଂଗ୍ରହ କରିବାକୁ ପଡ଼େ ବର୍ଷୀୟାନ୍ ଲୋକମାନଙ୍କଠାରୁ । ସେମାନେ ହୁଏତ ବର୍ଣ୍ଣିତ ଘଟନା ପ୍ରତ୍ୟକ୍ଷ ଦେଖିପାରିଥାନ୍ତି, କିମ୍ବା କାହାଠାରୁ ଶୁଣି ପାରିଥାନ୍ତି । ସ୍ୱର୍ଗତ କୃପାସିନ୍ଧୁ ମିଶ୍ର ତାଙ୍କର 'କୋଣାର୍କ' ଗ୍ରନ୍ଥ ରଚନା କଲାବେଳେ କୋଣାର୍କ ନିକଟରେ ବହୁଦିନ ରହି ସ୍ଥାନୀୟ ଲୋକଙ୍କଠାରୁ କୋଣାର୍କ ମନ୍ଦିରର ନିର୍ମାଣ ଏବଂ ପତନ ସମ୍ବନ୍ଧରେ ବହୁ କିମ୍ବଦନ୍ତୀ ସଂଗ୍ରହ କରିଥିଲେ । ଅବଶ୍ୟ ସେହି ସବୁ ଜନ-ପ୍ରବାଦ କିମ୍ବା କିମ୍ବଦନ୍ତୀଗୁଡ଼ିକ ଯେ ସଂପୂର୍ଣ୍ଣ ବିଶ୍ୱାସଯୋଗ୍ୟ ତାହା ନୁହେଁ । କିନ୍ତୁ ପ୍ରଚ୍ଛନ୍ନ ଭାବରେ ବହୁ ଅଲୋକସମ୍ପାତୀ ଐତିହାସିକ

ସତ୍ୟ ସେଥିରେ ନିହିତ ଥାଏ । ସତ୍ୟାନୁସନ୍ଧିତ୍ସୁ ଐତିହାସିକ ସେଥିରୁ ନାନା ତଥ୍ୟ ଆବିଷ୍କାର କରିପାରେ । ତେଣୁ ଫକୀର-ମୋହନ ଅସୁରଦୀଘି ପୋଖରୀର ଇତିହାସ ବୁଢ଼ା ଏକାଦୁଶିଆ ଭଣ୍ଡୀଠାରୁ ଶୁଣି ଯାହା ଲେଖିଛନ୍ତି ବୋଲି କହିଛନ୍ତି, ସେଥିରେ ଯେପରି କୌଣସି ଐତିହାସିକ ସତ୍ୟ ନାହିଁ—କେବଳ କଳ୍ପନା-ପ୍ରସୂତ, ସେହିପରି ବାଣାସୁର ଏହି ପୋଖରୀ ଖୋଳାଇଥିଲେ, ସେହିପରି ଉକ୍ତି କଳ୍ପନାରେ ଆମୂଳଚୂଳ ଅନୁରଞ୍ଜିତ । କିନ୍ତୁ ଐତିହାସିକଙ୍କୁ ଯେ ସମୟେ ସମୟେ ଜନଶ୍ରୁତି ଏବଂ କିମ୍ବଦନ୍ତୀ ଉପରେ ନିର୍ଭର କରିବାକୁ ହେବ, ଏହି ଇତିହାସ-ଚେତନାହିଁ ଏଠାରେ ଲକ୍ଷ୍ୟ କରିବାର ବିଷୟ । ସେ ଅସୁରଦୀଘି ବର୍ଣ୍ଣନାରେ ତାଙ୍କର କାଳ୍ପନିକ ଇତିହାସବୋଧର ସ୍ପଷ୍ଟ ନିଦର୍ଶନ ଦେବା ସଙ୍ଗେ ସଙ୍ଗେ, ତାଙ୍କର ଏହି ଯେଉଁ ପରିହାସ-ଛଳଛଳ ଉକ୍ତି, 'ଇଂରେଜୀ ପଢ଼ୁଆ ବାବୁମାନେ ସାବଧାନ । ଆମ୍ଭମାନଙ୍କ ଏକାଦୁଶୀ ଚନ୍ଦଙ୍କ ଇତିହାସ ଶୁଣି ହସିବେ ନାହିଁ, ତାହାହେଲେ ମାର୍ଶମାନ ଅଜ୍ ଟଡ୍‌ଙ୍କ ଲେଖାର ଅଠପଣି କାହିଁ ଉଡ଼ିଯିବ ?' ଫକୀର-ମୋହନଙ୍କର ବିଜ୍ଞାନସମ୍ମତ ଇତିହାସ-ଅନୁସନ୍ଧିତ୍ସାର ପରିଚୟ ଦିଏ । ଫକୀରମୋହନ ଜାଣିଥିଲେ, ଇତିହାସ ଓ କିମ୍ବଦନ୍ତୀ ମଧ୍ୟରେ ଗୋଟିଏ ସୁସ୍ପଷ୍ଟ ସୀମାରେଖା ଅଛି । କିନ୍ତୁ ନିର୍ଭରଶୀଳ ଐତିହାସିକ ଉପାଦାନ ପ୍ରତ୍ନତତ୍ତ୍ୱବିତ୍ କିମ୍ବା ଗବେଷକମାନଙ୍କଦ୍ୱାରା ଆବିଷ୍କୃତ ନହେବା ପର୍ଯ୍ୟନ୍ତ ବଡ଼ ସତର୍କତାର ସହିତ ଏହି କିମ୍ବଦନ୍ତୀମାନଙ୍କ ଉପରେ ଐତିହାସିକ ଘଟନାର ସଙ୍ଗଠନ ନିମନ୍ତେ ଐତିହାସିକ-ମାନଙ୍କୁ ନିର୍ଭର କରିବାକୁ ହେବ ।

ଏଥିରୁ ଜଣାଯାଏ ଫକୀରମୋହନଙ୍କ ପର୍ଯ୍ୟନ୍ତ ଇତିହାସର ଗବେଷଣା ଓ ପ୍ରତ୍ନତତ୍ତ୍ୱର ଆଲୋଚନାର ଯେଉଁ ଧାରା ପ୍ରଚଳିତ

ଥିଲ, ତାହା ତାଙ୍କ ସମ୍ପୂର୍ଣ୍ଣ ବିଦିତ ଥିଲ । ସେ କଥା-ସାହିତ୍ୟରେ ମନ ପ୍ରାଣ ନ ଢ଼ାଳି, ଯଦି ଇତିହାସ ଲେଖାରେ ଶକ୍ତି ନିୟୋଜିତ କରିଥାନ୍ତେ, ତେବେ ସେ ସମୟକୁ ଗୃହୀଁ ସେ ଜଣେ ଯେ ସୁଦକ୍ଷ ଐତିହାସିକ ହୋଇ ପାରିନଥାନ୍ତେ ତାହା କିଏ କହି ପାରିବ ?

ଫକୀରମୋହନଙ୍କ ଐତିହାସିକତା ଓ ତଥ୍ୟାନୁସନ୍ଧିତ୍ସାର ଅଭିମୁଖ୍ୟ କିପରି ପ୍ରଗତିଶାଳୀ ଇତିହାସ-ଚିନ୍ତା ଏବଂ ଅତ୍ୟାଧୁନିକ ଗବେଷଣା-ପଦ୍ଧତି ପ୍ରତି ଉନ୍ମୁକ୍ତ ଥିଲ, ତାହାର ପ୍ରମାଣ ମିଳେ ତାଙ୍କର ଗୋଟିଏ କ୍ଷୁଦ୍ର ଐତିହାସିକ ନିବନ୍ଧ 'ସିରାଜ ଉଦ୍ଦୌଲାଙ୍କ ଗୃହଶାଳୀ ଏବଂ ଗୁରୁଦକ୍ଷିଣା'ରେ । ଇତିହାସରେ ଦେଖିବାକୁ ମିଳେ, ଜଣେ ଐତିହାସିକ ଯାହା କହିଯାଇଥାନ୍ତି, ଅନ୍ୟ ଜଣେ ଐତିହାସିକ ଖଣ୍ଡିଏ ପ୍ରାଚୀନ ତାଳପତ୍ର ପୋଥି କିମ୍ବା ଶିଳାଲେଖ ପାଇଲେ ପୂର୍ବବର୍ତ୍ତୀ ଐତିହାସିକମାନଙ୍କ ମତକୁ ଖଣ୍ଡିତ କରିଦଅନ୍ତି । ଏଇତ, ଏପର୍ଯ୍ୟନ୍ତ ମାଦଳାପାଞ୍ଜିର ରଚନାକାଳ ଓ ଏଥିରେ ବର୍ଣ୍ଣିତ ଘଟଣାମାନଙ୍କର ସତ୍ୟତା ଓ ସମସାମୟିକତା ନେଇ ଆମର ଐତିହାସିକମାନଙ୍କ ମଧ୍ୟରେ ନାନା ବାଗ୍‌ବିତଣ୍ଡା । ଏହିପରି ନାନା କାରଣରୁ ଇଂରେଜିରେ ଗୋଟିଏ କୌତୁକପୂର୍ଣ୍ଣ କଥନୀ ପ୍ରଚଳିତ ଅଛି **"Bring history, bring the liar"** । ସେହିପରି ଫକୀରମୋହନ ବଙ୍ଗଳାର ନବାବମାନଙ୍କ କାଳର ଇତିହାସ ଅନୁଶୀଳନ କରି ଦେଖିବାକୁ ପାଇଲେ, ତାଙ୍କ ସମୟର "କୌଣସି ବଙ୍ଗ ଲେଖକ (ଅବଶ୍ୟ ଇତିହାସବେତ୍ତା) ସିରାଜ ଉଦ୍ଦୌଲାଙ୍କ ନ୍ୟାୟପରାୟଣତା ଓ ମହତ୍ତ୍ୱ ପ୍ରତିପନ୍ନ କରିବା ନିମନ୍ତେ ବିବିଧ ଯୁକ୍ତି ପ୍ରୟୋଗପୂର୍ବକ ନାନା ପ୍ରସ୍ତାବର ଅବତାରଣା କରୁଅଛନ୍ତି ।" ସେମାନେ କହିବାକୁ ଗୃହାନ୍ତି—ଇତିହାସ ସେହି ନବାବଙ୍କୁ ଯେପରି କଦର୍ଯ୍ୟ ଏବଂ କୁତ୍ସିତ ଭାବରେ ଏତାବତ୍‌କାଳ ଚିତ୍ରଣ

କର ଅସିନ୍ତୁ ତାହା 'ସର୍ବୈବ ମିଥ୍ୟା' । ଏପରି କି ସିରାଜ ଉଦ୍ଦୌଲ୍ଲଙ୍କ ସମ୍ବନ୍ଧରେ ପ୍ରଚଳିତ ଅନ୍ଧକୂପହତ୍ୟା କାଣ୍ଡ ବି ସମ୍ପୂର୍ଣ୍ଣ ଅଳୀକ । ସେମାନଙ୍କର ଯୁକ୍ତି, ଅନ୍ଧକୂପ ପରି ଗୋଟିଏ ଘର ଥିଲେ ତାହାର କାନ୍ଥବାଡ଼ ତ ଥାନ୍ତା ? ଉଚ୍ଛ୍ୱସିତ ସ୍ୱଦେଶପ୍ରୀତିରେ ଭାବପ୍ରବଣ ହୋଇ ଯେଉଁମାନେ ସତ୍ୟକୁ ଏହିପରି ମିଥ୍ୟା ପ୍ରମାଣ କରିବାକୁ ଚାହାନ୍ତି, ଫକୀରମୋହନ ସେମାନଙ୍କ ପ୍ରତି ବିମୁଖତା ପ୍ରକାଶ କରି ତାଙ୍କର ଐତିହାସିକ ସତ୍ୟନିଷ୍ଠାର ପ୍ରମାଣରୂପି ଏହିପରି ଭାବରେ ଦେଇଅଛନ୍ତି:—

"ଅମ୍ଭେମାନେ ବୋଲୁ ତଥାସ୍ତୁ, କାରଣ ଅମ୍ଭେମାନେ ଇତିହାସଜ୍ଞ ନୋହୁଁ, ମଧ୍ୟ ସିରାଜ ମାମଲାର ପୁରୁଣା ନଥିପତ୍ର କିଛି ଦେଖିବାକୁ ସୁଯୋଗ ପାଇ ନାହୁଁ, ଏ କ୍ଷେତ୍ରରେ ସପକ୍ଷରେ ବା ବିପକ୍ଷରେ କିଛି କହିବା କଥା ନିତାନ୍ତ ଅପରିଣାମଦର୍ଶିତାର କାର୍ଯ୍ୟ ଅଟେ । ତେବେ ଏତିକିମାତ୍ର କଥା ସର୍ବବାଦୀସମ୍ମତ ଯେ, ସେ (ନବାବ ସିରାଜ ଉଦ୍ଦୌଲ୍ଲା) ନିତାନ୍ତ ତୁଚ୍ଛ କାରଣରେ ତାହାଙ୍କ ମାତୃସ୍ଥାନୀୟା ପୂଜନୀୟା ଖୁଡ଼ୀଗୁଡ଼ାକୁ ପାଣିରେ ବୁଡ଼ାଇ ମାରି ପକାଇଥିଲେ ।"

ନବାବ ସିରାଜଙ୍କ ସମ୍ବନ୍ଧରେ ଏ ତଥ୍ୟ ଫକୀରମୋହନ କେଉଁଠାରୁ ପାଇଲେ ? ଏବଂ କିପରି ଭାବରେ ସେ ସେହି ତଥ୍ୟକୁ ସର୍ବବାଦୀସମ୍ମତ ବୋଲି ଦୃଢ଼ଭାବରେ ପ୍ରତିପାଦନ କରିବାର 'ଦୁଃସାହସିକତା' ଦେଖାଇ ପାରିଲେ ? ତେବେ କଣ ଫକୀର-ମୋହନ ଅଲିବର୍ଦ୍ଦି ଓ ସିରାଜଙ୍କ ଜୀବନଚରିତ କୌଣସି ବିଶ୍ୱାସ-ଯୋଗ୍ୟ ଇତିହାସରୁ ଅନୁଶୀଳନ ଓ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲେ ? ସେ ମୌଳିକ ଗ୍ରନ୍ଥ କଣ, ଏ ବିଷୟରେ କିଏ

ଅକ୍ଷେପାତ କରିବ ? ଯେଉଁ ସୂତ୍ରରୁ ସେ ସିରାଜଙ୍କ ନୃଶଂସତାର ଇତିହାସ ସହିତ ପରିଚିତ ଥିଲେ ତାଙ୍କର ମାତାମହ ଅଲିବର୍ଦ୍ଦିଙ୍କର ମରହଟ୍ଟା-ସଂଘର୍ଷର ତଥ୍ୟ କଣ ସେହି ସୂତ୍ରରୁ ଲଭ କରି 'ଲଛମା' ଉପନ୍ୟାସ ରଚନା କରିଥିଲେ ?

'ଲଛମା' ଉପନ୍ୟାସର ପ୍ରଧାନ ଚରିତ ଅଲିବର୍ଦ୍ଦିଖାଁଙ୍କ ଚରିତଚିତ୍ରଣ ଓ କାର୍ଯ୍ୟକଳାପ ଉପସ୍ଥାପନରେ ସେ ଯେଉଁ ଐତିହାସିକ ଯଥାର୍ଥବାଦ ଓ ତଥ୍ୟପ୍ରବଣତାର ପରିଚୟ ଦେଇ ଅଛନ୍ତି, ତାହା ଦେଖିଲେ ପାଠକ ଅବାକ୍ ହୋଇ ଭାବେ—'ଲଛମା' ଗୋଟିଏ ଐତିହାସିକ ଉପନ୍ୟାସ, ନା ଏହା ଅଷ୍ଟାଦଶ ଶତାବ୍ଦୀର ପୂର୍ବଭାରତର ରାଜନୈତିକ ଘଟଣାର ଏକ ଜୀବନ୍ତ ଓ ଇତିହାସାନୁସାରୀ ଚିତ୍ର ? ଏହି ଉପନ୍ୟାସରେ ବର୍ଗି-ଉତ୍ପୀଡ଼ନ, ନବାବୀ କୁଚକ୍ର ଓ ନୃଶଂସତାର ଧାରାବାହିକ ଇତିହାସ ଲେଖକଙ୍କର ବାଦଲସିଂହ ଓ ଚାନ୍ଦରାର ଅପୂର୍ବ ମିଳନ ନିମନ୍ତେ ଏକ ପନ୍ଥା, ନା ଏହି ହୃଦୟସ୍ପର୍ଶୀ ଇତିହାସ ତାଙ୍କର ପ୍ରଧାନ ଉପଜୀବ୍ୟ ବିଷୟ ? ଏଥିରେ ବାଦଲସିଂହ ଓ ଚାନ୍ଦରାଙ୍କ ବିଷୟ ସେତେ ପ୍ରାଧାନ୍ୟ ଲଭ କରି ନାହିଁ, ଯେତେ ପ୍ରାଧାନ୍ୟ ଲଭ କରିଛନ୍ତି ଅଲିବର୍ଦ୍ଦିଖାଁଙ୍କର ସମରାୟୋଜନ, ଭାସ୍କର ପଣ୍ଡିତଙ୍କ ସହିତ ତାଙ୍କର ତୁମୂଳ ସଂଘର୍ଷ, ତାଙ୍କର ଚକ୍ରରେ ଗୃହୀତ ନୀତି ଏବଂ ତାହିଁ ସହିତ ଓଡ଼ିଶାର ଜମିଦାରମାନଙ୍କ ରାଜ୍ୟ ଓ ସୂତ୍ର ଏବଂ ଦୁର୍ଗାଧିପତିଙ୍କର ଦେଶାତ୍ମବୋଧ, ଦୁଃସାହସ ଓ ଅମିତ ବୀରତ୍ୱର ଶେଷ ବର୍ଣ୍ଣ ।
ଏପରି ଗୋଟିଏ ଉପନ୍ୟାସ ରଚନା କରିବାକୁ ଫକୀରମୋହନଙ୍କୁ ପ୍ରେରଣା ଯୋଗାଇଥିଲା କିଏ ? ବଙ୍ଗ-ନବାବୀ ଅମଳର ଇତିହାସର ଶୁଷ୍କ ପଞ୍ଜରରେ ଜୀବନ୍ତ କଳ୍ପନାର ପ୍ରୟୋଜନରୁ କଣ ଆଜି 'ଲଛମା'ର ସୃଷ୍ଟି ? ଆମ୍ଭେମାନେ ଜାଣୁ, ଐତିହାସିକ ଉପନ୍ୟାସ

ରଚନା କରିବା ଯାହା 'ତୀକ୍ଷ୍ଣ ଅସିଧାରେ ପଥଚାଲିବା' ଠିକ୍ ତାହା । ଐତିହାସିକ ଉପନ୍ୟାସ ଅବଶ୍ୟ ଇତିହାସ ନୁହେଁ, କିନ୍ତୁ ଯେଉଁ ଯୁଗର ଐତିହାସିକ ବସ୍ତୁକୁ ନେଇ ଉପନ୍ୟାସ ରଚନା କରାଯିବ, ସେ ଯୁଗର ଐତିହାସିକ ପରିମଣ୍ଡଳରେ ଲେଖକଙ୍କୁ ନିର୍ଭୀକ ଭାବରେ କଳ୍ପନାରେ ବିଚରଣ କରିବାକୁ ହେବ । ଇତିହାସର ମର୍ମଗତ ସତ୍ୟକୁ ନିଜର କଳ୍ପନା-ଜାଲରେ ବିଭ୍ରାନ୍ତ ଓ ବିକୃତ କରିବାର ଅଧିକାର ଐତିହାସିକ ଔପନ୍ୟାସିକର ନାହିଁ । ଦେଖିବାକୁ ହେବ, ଔପନ୍ୟାସିକ ଐତିହାସିକ ସତ୍ୟପରାୟଣତାର ଆଦର୍ଶ ରକ୍ଷା କରିଅଛନ୍ତି କି ନାହିଁ, ଯେଉଁ ବ୍ୟକ୍ତିଗତ କିମ୍ବା ପାରିବାରିକ ଜୀବନର ଚିତ୍ର ଔପନ୍ୟାସିକ ଇତିହାସର ପୃଷ୍ଠଭୂମି ଉପରେ ଅଙ୍କନ କରିବାକୁ ଯାଉଛନ୍ତି, ତାହା ସେହି ସମୟର ଐତିହାସିକ ଘଟନା, କିମ୍ବା ଯୁଗସତ୍ୟ ସହିତ ନିବିଡ଼ ଭାବରେ ସମ୍ମିଶ୍ରିତ ହୋଇ ପାରିଛି କି ନାହିଁ । ଜଣେ ସମାଲୋଚକଙ୍କ ଭାଷାରେ "ଇତିହାସର ବେଗବାନ ତରଙ୍ଗ ଯେପରି ଭାବରେ ବ୍ୟକ୍ତି ଜୀବନରେ ତୀବ୍ର ବିକ୍ଷୋଭ ଓ ବିପର୍ଯ୍ୟୟ ଆଣେ, ଏବଂ କ୍ଷୁଦ୍ର ପାରିବାରିକ ସମସ୍ୟା ଇତିହାସ-ସଂସ୍ପର୍ଶରେ ଯେପରି ଭାବରେ ବିସ୍ତୃତି ଓ ଜଟିଳତା ଲାଭ କରେ, ଐତିହାସିକ ଉପନ୍ୟାସରେ ମୁଖ୍ୟତଃ ଆମ୍ଭେମାନେ ତାହାର ପ୍ରତିଚ୍ଛବି ଦେଖିବାକୁ ଆଶା କରୁ ।"

ଇତିହାସକୁ ନିଜ କଳ୍ପନା ସାହାଯ୍ୟରେ ରୂପାନ୍ତରିତ ନକରି, ଗୋଟି ଐତିହାସିକ ସତ୍ୟକୁ ଅବିକୃତ ଭାବରେ ଅନୁସରଣ କରି ଯେଉଁମାନେ ଐତିହାସିକ ଉପନ୍ୟାସ ରଚନା କରିଅଛନ୍ତି, ବିଶ୍ୱ-ସାହିତ୍ୟରେ ସେମାନଙ୍କର ସଂଖ୍ୟା ମୁଷ୍ଟିମେୟ । କାବ୍ୟୋତ୍କର୍ଷ, ଅର୍ଥାତ୍ ଇତିହାସ-ରସ ସୃଷ୍ଟି, ଏବଂ ଐତିହାସିକ ସତ୍ୟର ଅନୁବର୍ତ୍ତନ ଏହି ଉଭୟର ସଂମିଶ୍ରଣରେ ରଚିତ ଐତିହାସିକ ଉପନ୍ୟାସର

ସଂଖ୍ୟା ବଡ଼ ଅଳ୍ପ । ଏହି ନିକଷ-ପରୀକ୍ଷାରେ ଇଂରେଜୀ ସାହିତ୍ୟରେ ଐତିହାସିକ ଉପନ୍ୟାସର ଅଗ୍ରଦୂତ ସାର ୱାଲ୍‌ଟର ସ୍କଟ (୧୭୭୧-୧୮୩୨) ମଧ୍ୟ ଉତ୍ତୀର୍ଣ୍ଣତା ଲାଭ କରି ପାରି ନାହାନ୍ତି । ସମାଲୋଚକମାନେ କହନ୍ତି—ଐତିହାସିକ ଉପନ୍ୟାସ ରଚନାର ଯାହା ପ୍ରଧାନ ସମ୍ପଦ ଅର୍ଥାତ୍ ଐତିହାସିକ କଳ୍ପନାବୋଧ, (Historical imagination) ସ୍କଟଙ୍କଠାରେ ତାହାର ଅଭାବ ପୂର୍ଣ୍ଣମାତ୍ରାରେ ଥିଲା । କାଳ୍ପନିକ ଇତିହାସବୋଧ ଓ ଐତିହାସିକ କଳ୍ପନାବୋଧ ମଧ୍ୟରେ ମୌଳିକ ପାର୍ଥକ୍ୟ ବିଦ୍ୟମାନ । ଏହାଛଡ଼ା, ଐତିହାସିକ ତଥ୍ୟ ଓ ଘଟନାପଞ୍ଜିକୁ ସୁନ୍ଦର ପରିପାଟୀରେ ସଜ୍ଜିତ କରି ଲିପିବଦ୍ଧ କରିଦେଲେ ଐତିହାସିକ ଉପନ୍ୟାସ ହୁଏ ନାହିଁ । ଐତିହାସିକର ମୁଖ୍ୟ କାର୍ଯ୍ୟ ଐତିହାସିକ ତଥ୍ୟକୁ ଉପସ୍ଥାପିତ କରିବା—ବ୍ୟାଖ୍ୟା କରିବା । କିନ୍ତୁ ଐତିହାସିକ ଉପନ୍ୟାସ ରଚକର ପ୍ରଧାନ କର୍ତ୍ତବ୍ୟ ଐତିହାସିକ କଳ୍ପନାବୋଧଦ୍ୱାରା ବିଶେଷ ବିଶେଷ ଯୁଗର ସର୍ବସ୍ତରର ନରନାରୀ, ସେମାନଙ୍କର ବିପୁଳ ସାମାଜିକ ଓ ବ୍ୟକ୍ତିଗତ ଜୀବନର ବେଗ, ଘୂର୍ଣ୍ଣୀ ଓ ଘଟନାକୁ ଜୀବନ୍ତ କରି ଗଠନ କରିବା; ନିଜକୁ ବର୍ତ୍ତମାନର ପଟଭୂମିରୁ ଅପସାରିତ କରିନେଇ ସେହି ଅତୀତ ଯୁଗର ସଂବେଦନଶୀଳ ଦର୍ଶକରେ ରୂପାନ୍ତରିତ କରିବା । ସେହି କାବ୍ୟଗତ ଧର୍ମ ଏବଂ ସଂସ୍କୃତ ଅଳଙ୍କାରିକଙ୍କ ଘୋଷିତ "ଅପୂର୍ବ ବସ୍ତୁନିର୍ମାଣ କ୍ଷମା" ପ୍ରଜ୍ଞା ଯାହାର ନାହିଁ, ସେ ଐତିହାସିକ ଉପନ୍ୟାସ ରଚନା କରିବାରେ ଅପୂର୍ବ କୃତିତ୍ୱ ହାସଲ କରିପାରିବ ନାହିଁ । ସ୍କଟଙ୍କଠାରେ ଏହି ଐତିହାସିକ କଳ୍ପନାବୋଧ କିମ୍ବା ଇତିହାସନିଷ୍ଠାର ଅଭାବ ଦେଖି ଇତିହାସର ବ୍ୟତିକ୍ରମ ଅପରାଧରେ ତାଙ୍କୁ ଅଭିଯୁକ୍ତ କରି ପାଠକମାନଙ୍କୁ ଜଣେ ସତର୍କବାଣୀ ଶୁଣାଇ କହିଥିଲେ—"ଯେଉଁମାନେ

ଇଉରୋପର ଧର୍ମଯୁଦ୍ଧ-ଯାତ୍ରା ଯୁଗ (**The Age of the Crusades**) ସମ୍ବନ୍ଧରେ କିଛି ଜାଣିବାକୁ ଚାହାନ୍ତି, ସେମାନେ ଯେପରି ସ୍କଟଙ୍କ ଆଇଭାନ୍‌ହୋ ପଠନରୁ ବିରତ ହୁଅନ୍ତୁ ।” * ବଙ୍ଗଳାର ବଙ୍କିମଚନ୍ଦ୍ର ଅନେକଗୁଡ଼ିଏ ଐତିହାସିକ ଉପନ୍ୟାସ ରଚନା କରିଥିଲେ, କିନ୍ତୁ ସେମାନଙ୍କ ମଧ୍ୟରେ ରାଜସିଂହ ହିଁ ଐତିହାସିକ ଉପନ୍ୟାସର ପର୍ଯ୍ୟାୟଭୁକ୍ତ, ଏ କଥା କେବଳ ସମାଲୋଚକଙ୍କର ମତ ନୁହେଁ, ନିଜେ ସ୍ରଷ୍ଟା ବଙ୍କିମଚନ୍ଦ୍ର ତାହା ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି । ‘ରାଜସିଂହ’ର ଦୀର୍ଘ ଭୂମିକାରେ ସେ ଏହି ଉପନ୍ୟାସ ରଚନାର ଉଦ୍ଦେଶ୍ୟ ଓ ଉପାଦାନ ସମ୍ବନ୍ଧରେ ଯେଉଁ ସବୁ ଉପାଦେୟ ବିଷୟର ଅବତାରଣା କରିଥିଲେ, ସେଥିରେ ସେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଲେଖିଥିଲେ, “ମୁଁ ଏହା ପୂର୍ବରୁ କୌଣସି ଐତିହାସିକ ଉପନ୍ୟାସ ରଚନା କରି ନାହିଁ । ‘ଦୁର୍ଗେଶ ନନ୍ଦିନୀ’ ବା ‘ଚନ୍ଦ୍ରଶେଖର’ ବା ‘ସୀତାରାମ’କୁ ଐତିହାସିକ ଉପନ୍ୟାସ କୁହାଯାଇପାରେ ନା । ଏ ହିଁ ପ୍ରଥମ ଐତିହାସିକ ଉପନ୍ୟାସ ଲେଖିଲି । ଏ ପର୍ଯ୍ୟନ୍ତ ଐତିହାସିକ ଉପନ୍ୟାସ ପ୍ରଣୟନରେ କୌଣସି ଲେଖକ ସଂପୂର୍ଣ୍ଣ କୃତକାର୍ଯ୍ୟ ହୋଇ ପାରି ନାହିଁ । ମୁଁ ଯେ ପାରିନାହିଁ ତାହା କହିବା ବାହୁଲ୍ୟ ।” ଯଥାର୍ଥରେ ବଙ୍ଗଳା ଉପନ୍ୟାସର ରସ-ବିଗ୍ରହମାନେ ବଙ୍କିମଙ୍କର ‘ରାଜସିଂହ’କୁ ଛାଡ଼ି ତାଙ୍କର ଅନ୍ୟାନ୍ୟ ‘ଐତିହାସିକ ଉପନ୍ୟାସ’-ମାନଙ୍କୁ କାବ୍ୟଧର୍ମୀ ରୋମାନ୍‌ସ ଆଖ୍ୟାରେ ଅଭିହିତ କରିଅଛନ୍ତି, ଏପରି କି, ଐତିହାସିକ ସତ୍ୟରେ ‘ରାଜସିଂହ’ ଏପରି ଭାରାକ୍ରାନ୍ତ ହୋଇ ପଡ଼ିଛି ଯେ ଏହାକୁ କେହି କେହି ‘ଐତିହାସିକ ଉପନ୍ୟାସ’ ନ କହି ‘ଇତିହାସ’ ରୂପେ ଆଖ୍ୟାୟିତ କରିଅଛନ୍ତି, କାରଣ

---

* ରବୀନ୍ଦ୍ରନାଥ-ସାହିତ୍ୟ—ଐତିହାସିକ ଉପନ୍ୟାସ—ପୃ-୧୬୫

ସ୍କଟଙ୍କ ପରେ କେହି କେହି ଏହି ମତର ପୋଷକତା କରନ୍ତି ଯେ, "It is unwise to unload too much history into the plot of a novel" କିମ୍ବା "It is not desirable to have real historical figures among the leading characters", ଅର୍ଥାତ୍ ଐତିହାସିକ ତଥ୍ୟରେ ଉପନ୍ୟାସକୁ ଭାରାକ୍ରାନ୍ତ କରିବା ଐତିହାସିକ ଉପନ୍ୟାସ-ଲେଖକର ଧର୍ମ ନୁହେଁ, ଏବଂ ଐତିହାସିକ ଉପନ୍ୟାସର ପ୍ରଧାନ ଚରିତ୍ର ଯେ ଇତିହାସରୁ ଅଣାଯିବ ଏ ବିଷୟରେ କୌଣସି ଧରାବନ୍ଧା ନିୟମ ନାହିଁ । ଐତିହାସିକ ସ୍ୱର୍ଗତ ସାର ଯଦୁନାଥ ସରକାର, ଯେ କି ମୋଗଲ ରାଜତ୍ୱ କାଳର ଇତିହାସ ତଥା ସମ୍ରାଟ ଆଉରେଙ୍ଗଜେବଙ୍କ ସମ୍ବନ୍ଧରେ ଅବିମିଶ୍ର ଓ ବୈଜ୍ଞାନିକ ପ୍ରଣାଳୀସମ୍ମତ ଗବେଷଣା ପଦ୍ଧତିରେ ବିରାଟ ଇତିହାସ ପ୍ରଣୟନ କରିଯାଇଅଛନ୍ତି, ସେ ଐତିହାସିକ ଉପନ୍ୟାସ ସମ୍ବନ୍ଧରେ ୧୯୪୫ ମସିହାରେ ଲଣ୍ଡନର ବିଖ୍ୟାତ 'Times Literary Supplement' ପତ୍ରିକାରେ ଗୋଟିଏ ସାରଗର୍ଭ ଆଲୋଚନା ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ, "ଇତିହାସ ଏବଂ ଉପନ୍ୟାସ ଏକ ବସ୍ତୁ ନୁହଁ । ଐତିହାସିକ ଉପନ୍ୟାସର ପ୍ରକୃତ ସ୍ଥାନ ସାହିତ୍ୟର ଶ୍ରେଣୀରେ—ଇତିହାସ ଶ୍ରେଣୀରେ ନୁହେଁ । ଆଜି କାଲି ଇଉରୋପରେ ଯେଉଁ ସବୁ ଐତିହାସିକ ଉପନ୍ୟାସ ଲେଖା ହେଉଛି ତାହାର ପ୍ରଧାନ ଦୋଷ ଏହି ଯେ, ତାହା ମଧ୍ୟରେ ଅତୀତ କାଳର ସତ୍ୟ ବ୍ୟକ୍ତି ଏବଂ ଘଟଣାର ଭାଗ ଅତିମାତ୍ରାରେ ବଢ଼ି ଚାଲିଛି; ଏବଂ ଗ୍ରନ୍ଥକାରର କଳ୍ପନାର ପ୍ରକୃତ ଶକ୍ତି କ୍ରମେ କମି କମି ଯାଉଛି । ଲେଖକ ଯେତିକି ବେଶୀ ପରିମାଣରେ କଳ୍ପନା-ସୃଷ୍ଟ ଚରିତ୍ର ଓ ଘଟଣା ରଙ୍ଗମଞ୍ଚରେ ଅବତୀର୍ଣ୍ଣ କରାଇବେ, ସେତିକିବେଳେ ଯାଇ ସେମାନେ ଗୋଟିଏ ସାହିତ୍ୟ-ଗ୍ରନ୍ଥ, ଏବଂ

ଗୋଟିଏ ପ୍ରକୃତ କଥାବସ୍ତୁ ରଚନା କରିପାରିବେ ।" * କବିଗୁରୁ ରବୀନ୍ଦ୍ରନାଥଙ୍କର ମତ ମଧ୍ୟ ଏକରକମ ୰ ସାର ଯଦୁନାଥଙ୍କ ପରି । ଫକୀରମୋହନ ଯେଉଁ ଇତିହାସ-ପ୍ରସିଦ୍ଧା ଅପରୂପ ଲାବଣ୍ୟମୟୀ ଓ ମାୟାବିନୀ ନାରୀ 'କ୍ଲିଓପେଟ୍ରା' ସମ୍ବନ୍ଧରେ କବିତା ରଚନା କରି ଲେଖିଅଛନ୍ତି,

"ରାଜେଶ୍ବରୀ କ୍ଲିଓପେଟ୍ରା ଟଲେମି-ନନ୍ଦିନୀ,
ଲଳନା ଲଲାମଭୂତା, ବିଶ୍ୱ ବିମୋହିନୀ ।
ଯୁବତୀ, ଲାବଣ୍ୟମୟୀ ରାଜରାଜେଶ୍ୱରୀ,
ସର୍ବାନର୍ଥମୂଳୀଭୂତା ମହାଭୟଙ୍କରୀ ।
ଶୌର୍ଯ୍ୟେ ବୀର୍ଯ୍ୟେ ଖ୍ୟାତ ରୋମ ଅବନୀ ମଣ୍ଡଳେ,
ଛାରଖାର ଭସ୍ମସାର ନାରୀରୂପାନଳେ ।
ଇତିହାସ ଗାଏ ଯେଉଁ ବୀରଙ୍କ ମହିମା,
ରମଣୀ ସୌନ୍ଦର୍ଯ୍ୟେ ନଷ୍ଟ ସମସ୍ତ ଗରିମା ।
ସୁନ୍ଦ ଉପସୁନ୍ଦ କଥା ପୁରାଣେ କଥିତ,
ହେଉଅଛି ଜଗତେ ପ୍ରତିଦିନ ଅଭିନୀତ ।
ରାଜକନ୍ୟା କ୍ଲିଓପେଟ୍ରା କିରୂପେ ସୁନ୍ଦରୀ ?
ଉତ୍ତର—'ବିଶାଳ ରୋମ ଦେଲା ଧ୍ୱଂସ କରି' ?"

ମହାକବି ଶେକ୍‌ସପିଅର ସେହି ସାମ୍ରାଜ୍ୟ-ବିଧ୍ୱଂସିନୀ କ୍ଲିଓ-ପେଟ୍ରାଙ୍କୁ ନାୟିକା କରି 'ଆଣ୍ଟନି ଏବଂ କ୍ଲିଓପେଟ୍ରା' ନାମରେ ଗୋଟିଏ ଐତିହାସିକ ନାଟକ ରଚନା କରିଥିଲେ । ଏଠାରେ କବି କୁହୁକିନୀ ନାରୀର ମାୟାଜାଲକୁ 'ସୁବିଶାଳ ଐତିହାସିକ ରଙ୍ଗଭୂମି' ଉପରେ ସ୍ଥାପିତ କରି ଅଦ୍ଭୁତ ଏବଂ କରୁଣ ରସ ସହିତ ଐତିହାସିକ

* ବଙ୍କିମ ଗ୍ରନ୍ଥାବଳୀ—ସାହିତ୍ୟ ସଂସଦ—ପୃ-୨୭ ।

ରସର ଅବତାରଣା କରିଅଛନ୍ତି ପାଠକଲେ, ପାଠକର ଚିତ୍ତ ସୁଦୂର ଅତୀତରେ ବିସ୍ତାରିତ ହୋଇପଡ଼େ । କିନ୍ତୁ ଇତିହାସବେତ୍ତା ମମ୍‌ସେନ ସାହେବ ଇତିହାସର ତୀକ୍ଷ୍ଣ ଆଲୋକରେ ଏହି ନାଟକର ସତ୍ୟତା ପରୀକ୍ଷା କରି କହିଅଛନ୍ତି, ଏହି ନାଟକରେ ଅନେକ କାଳ-ବିରୋଧ-ଦୋଷ ଅଛି, ଅନେକ ଐତିହାସିକ ଭ୍ରମ ଅଛି । କିନ୍ତୁ ରବୀନ୍ଦ୍ରନାଥ କହନ୍ତି, "କିନ୍ତୁ ଏହି ନାଟକରେ ଶେକ୍‌ସପିଅର ପାଠକମନରେ ଯେଉଁ ମୋହ ଉତ୍ପାଦନ କରିଅଛନ୍ତି, ଭ୍ରାନ୍ତ ବିକୃତ ଇତିହାସଦ୍ୱାରା ଯେଉଁ ଐତିହାସିକ ରସର ଅବତାରଣା କରିଅଛନ୍ତି, ତାହା ଇତିହାସର ନୂତନ ତଥ୍ୟ ଆବିଷ୍କାର ସଙ୍ଗେ ନଷ୍ଟ ହେବ ନାହିଁ ।"

ଐତିହାସିକ ଉପନ୍ୟାସରେ ଆଦି, କରୁଣ, ବୀର ଓ ରୌଦ୍ର ରସ ପ୍ରଭୃତି ପରି ଏହି ନୂତନ ଐତିହାସିକ ରସର ସ୍ୱରୂପ ଓ ଧର୍ମ କଣ ? ବିଶ୍ୱକବି ତାଙ୍କର 'ଐତିହାସିକ ଉପନ୍ୟାସ' ସମ୍ବନ୍ଧରେ ଏହି ରସ ଉପରେ ଆଲୋକପାତ କରିଅଛନ୍ତି, "ଏହି ଯେ ଆମ୍ଭମାନଙ୍କର ପ୍ରତିଦିନର ସାଧାରଣ ସୁଖଦୁଃଖରୁ ଦୂରତ୍ୱ, ଆମ୍ଭେମାନେ ଯେତେବେଳେ ଚାକିରି କରି, କାନ୍ଦକାଟି ଖାଇପିଇ କାଳ କଟାଉଛୁ, ସେତେବେଳେ ଯେଉଁ ଜଗତର ରାଜପଥ ଦେଇ ବଡ଼ ବଡ଼ ସାରଥିମାନେ କାଳରଥ ଚାଳନ କରି ଚାଲିଅଛନ୍ତି, ଏହାହିଁ ଅକସ୍ମାତ୍ କ୍ଷଣକାଳ ନିମିତ୍ତ ଉପଲବ୍‌ଧି କରି କ୍ଷୁଦ୍ର ପରିଧିରୁ ମୁକ୍ତିଲାଭ—ଏହାହିଁ ଇତିହାସର ପ୍ରକୃତ ରସାସ୍ୱାଦ ।" ଏହାହିଁ ଐତିହାସିକ ରସ । ଅତୀତ ସହିତ ନିଜକୁ କଳ୍ପନାରେ ମିଶାଇ କ୍ଷଣିକ ଆନନ୍ଦର ଏହି ଯେଉଁ ଉପଲବ୍‌ଧି ଓ ଉଦ୍ଦୀପ୍ତି, ହୃଦୟର ଏହି ଯେଉଁ ଦ୍ରୁତି, ଦୀପ୍ତି ଓ ବିସ୍ତାର, ତାହାର ଅନ୍ୟ ନାମ ଐତିହାସିକ ରସ । ଇତିହାସ ସତ୍ୟାଶ୍ରୟୀ—କେତେକ ଅତୀତ

ଘଟନାର ସୁସଜ୍ଜ ବିନ୍ୟାସ ମାତ୍ର । ଏଥିରେ ଯାହା ଘଟିଯାଇଛି ତାହା ଲିପିବଦ୍ଧ ହୋଇଥାଏ । 'ଲଛମା'ରେ ଅଲିବର୍ଦ୍ଦିଖାଁ ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିବା ନିମନ୍ତେ ଇଚ୍ଛା ପ୍ରକାଶ କରିବାରୁ ବାଦଲ ସିଂହ ଓ ଅନ୍ୟାନ୍ୟମାନେ ଏହି ଗୁପ୍ତହତ୍ୟାର ଆୟୋଜନ କଲେ । କିନ୍ତୁ ଅଲିବର୍ଦ୍ଦିଖାଁ ଯଦି ସେ କଥା ପ୍ରକାଶ କରିନଥାନ୍ତେ, ତେବେ ହୁଏତ ଭାସ୍କର ପଣ୍ଡିତଙ୍କର ହତ୍ୟା ଘଟିନଥାନ୍ତା, ଅଲିବର୍ଦ୍ଦିଙ୍କ ଇତିହାସ ଭିନ୍ନ ରୂପ ଧାରଣ କରିଥାନ୍ତା । କିନ୍ତୁ ଔପନ୍ୟାସିକ କେବଳ ଯାହା ଘଟିଥିଲା ସେତିକିରେ ସନ୍ତୁଷ୍ଟ ନୁହଁ, ଐତିହାସିକ ଯେଉଁଠାରେ ମୂକ, ଔପନ୍ୟାସିକ ସେହିଠାରେ ମୁଖର । ଅଲିବର୍ଦ୍ଦିଙ୍କ ମାନସିକ ଅବସ୍ଥାରୁ ସେ ତାଙ୍କର ମନ ଗହନର ଦୁରଧିଗମ୍ୟ ରହସ୍ୟ ଉଦ୍‌ଘାଟନ କରି କହିପାରେ—ଅଲିବର୍ଦ୍ଦି ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିବାର ଅଭିପ୍ରାୟ କାହା ଆଗେ ପ୍ରକାଶ କରନ୍ତୁ କି ନାହିଁ, କିନ୍ତୁ ତାଙ୍କର ଅନ୍ତର ଭିତରେ ସେହି ଉଦ୍ଦାମ ଆକାଂକ୍ଷା ପ୍ରଜ୍ଜ୍ୱଳିତ ଅଛି । ପ୍ରତିଶୋଧବହ୍ନି ଲେଲିହାନ ଜିହ୍ୱା ବିସ୍ତାର କରି ତାଙ୍କ ଅନ୍ତଃସ୍ଥଳକୁ ଜାଳି ଦେଉଛି—ଭାସ୍କର ପଣ୍ଡିତଙ୍କୁ ନ ମାରିଲେ ତାଙ୍କର ଶାନ୍ତି ନାହିଁ । ମାରିଲେ ମଧ୍ୟ ଶାନ୍ତି ନାହିଁ । କାରଣ ଚତୁର୍ଦ୍ଦିଗରେ ତାଙ୍କର ଅଶାନ୍ତିର ଝଡ଼ । ଫକୀରମୋହନ ନୀରବ ନିର୍ଜନ ନିଶୀଥରେ ମୁର୍ଶିଦାବାଦ ନଗରୀର ନିସ୍ତବ୍ଧତା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, "ସଡ଼କ ପାଖରେ ସହରର ବୁଲା କଣ୍ଢେଇ ଶୁକ୍ଳବର୍ଣ୍ଣ ବସ୍ତ୍ରସ୍ତୁପ ଆକାରରେ ପଡ଼ି ରହି ନବାବ ସାହେବଙ୍କ ପରି ଆନନ୍ଦମନରେ ପାକୁଳି କରୁଛି । ମାତ୍ର ଆମ୍ଭେ-ମାନେ ଅଲିବର୍ଦ୍ଦିଖାଁଙ୍କଠାରୁ ଏହାକୁ ଭାଗ୍ୟବାନ ମନେ କରୁଁ, କାରଣ ନବାବ ସାହେବ ଘୁବାଦାଗ୍ୱିଠା ଉଦରଗତ କରି ମଧ୍ୟ ପାକୁଳି କରିବାକୁ ଅବସର ପ୍ରାପ୍ତ ହୋଇ ନାହାନ୍ତି ।" ଅଲିବର୍ଦ୍ଦି

ଖାଁଙ୍କର ଅଶାନ୍ତ ମନର ଏ ରହସ୍ୟ ଇତିହାସରେ କାହୁଁ ମିଳିବ ? ବିସ୍ମୃତ ଐତିହାସିକ ରଙ୍ଗମଞ୍ଚ ଉପରେ ତୃପ୍ତିତୃଷ୍ଣ ହୃଦୟର ଏ ଯେଉଁ ଅତୃପ୍ତ କାମନା, ଏହା କେଉଁଠି ଦମ୍ଭମାୟୁ, କେଉଁଠି ବାଡ଼ମ୍ବିତ, ତାହାର ରହସ୍ୟ ଉଦ୍‌ଘାଟନ କରିଛି ଐତିହାସିକ ଉପନ୍ୟାସ—ଲଛମା । ଏହାର ସ୍ରଷ୍ଟା ଅତୀତମୁଖୀ ଓ ଐତିହାସିକ କଳ୍ପନାସମୃଦ୍ଧ ଫକୀରମୋହନ-ମାନସ । ଏଠାରେ ଯେଉଁ କରୁଣ ରସ ଅଭିବ୍ୟକ୍ତ ଲାଭ କରିଛି, ତାହା ଇତିହାସର ପୃଷ୍ଠଭୂମି ଉପରେ ସ୍ଥାପିତ ହୋଇଥିବାରୁ ଏହା ଆମ ଚିତ୍ତକୁ ସଂବେଦନାରେ ରସାପ୍ଲୁତ କରିବା ସଙ୍ଗେ ସଙ୍ଗେ ସୁଦୂର ଅତୀତକୁ ନେଇ ଯାଉଛି, ଐତିହାସିକ ରସର ଉଦ୍ରେକ କରୁଛି ।

ରବୀନ୍ଦ୍ରନାଥ ଐତିହାସିକ ଉପନ୍ୟାସର ଏହି ଐତିହାସିକ ରସ ଉପରେ ବହୁ ଗୁରୁତ୍ୱ ଦେଇ ଲେଖକର ତଥ୍ୟପ୍ରବଣତା ଓ ସତ୍ୟନିଷ୍ଠାକୁ ଗୌଣ ସ୍ଥାନ ଦେଇ କହିଅଛନ୍ତି, "ଇତିହାସର ସଂସ୍ରବରେ ଉପନ୍ୟାସ ଗୋଟିଏ ବିଶେଷ ରସ ସଞ୍ଚାର କରେ । ଇତିହାସର ସେହି ରସ ଟିକକ ପ୍ରତି ଔପନ୍ୟାସିକର ଲୋଭ, ତାହାର ସତ୍ୟ ପ୍ରତି ତାହାର କୌଣସି ଖାତିର ନାହିଁ । କେହି ଯଦି ଉପନ୍ୟାସରେ କେବଳ ଇତିହାସର ସେହି ବିଶେଷ ଗନ୍ଧଟିରେ ଏବଂ ସ୍ୱାଦଟିରେ ସନ୍ତୁଷ୍ଟ ନ ହୋଇ ସେଥିରୁ ଅଖଣ୍ଡ ଇତିହାସ ଉଦ୍ଧାରରେ ପ୍ରବୃତ୍ତ ହୁଏ, ତେବେ ସେ ବ୍ୟଞ୍ଜନ ମଧ୍ୟରେ କେବଳ ଜିରା, ଧନିଆ, ହଳଦି ଓ ସୋରିଷର ସନ୍ଧାନ କରେ । ମସଲା ଠିକ୍ ଠାକ୍ ଦେଇ ଯେ ବ୍ୟଞ୍ଜନକୁ ସୁସ୍ୱାଦୁସମ୍ପନ୍ନ କରିପାରେ ସେ କରୁ, ଯେ ମସଲାମସଲା ସବୁ ଘଣ୍ଟାଘଣ୍ଟି କରି ସବୁ ଏକାକାର କରିଦିଏ, ସେ ତା କରୁ, ତାହା ସହିତ ମୋର କୌଣସି ବିବାଦ ନାହିଁ; କାରଣ ସ୍ୱାଦହିଁ ଏ ସ୍ଥଳରେ ଲକ୍ଷ୍ୟ, ମସଲା ଉପଲକ୍ଷ୍ୟ ମାତ୍ର ।

ଅର୍ଥାତ୍, ଲେଖକ ଇତିହାସକୁ ଅଖଣ୍ଡ ରଖି ଗଳ୍ପ, କିମ୍ବା ଖଣ୍ଡ କରି ରଖି, ସେହି ଐତିହାସିକ ରସର ଅବତାରଣାରେ ସଫଳ ହେଲେ ହେଲା ।"

କିନ୍ତୁ ଯେଉଁଠାରେ ଇତିହାସର ସତ୍ୟକୁ ଅଖଣ୍ଡ ଓ ଅବିକୃତ ରଖି ରସର ସଞ୍ଚାର କରାଯାଏ, ତାର କୃତିତ୍ୱ ସମ୍ବନ୍ଧରେ ରବୀନ୍ଦ୍ରନାଥ କିମ୍ବା ଅନ୍ୟ କୌଣସି ସମାଲୋଚକଙ୍କର ଆପତ୍ତି କରିବାର ଅବକାଶ ନାହିଁ । କାରଣ ରବୀନ୍ଦ୍ରନାଥ ଐତିହାସିକ ତଥ୍ୟକୁ ସମ୍ପୂର୍ଣ୍ଣଭାବରେ ତାଙ୍କ ଉକ୍ତି ମଧ୍ୟରେ କେଉଁଠାରେ ବାତିଲ୍ କରିଦେଇ ନାହାନ୍ତି । ସେ ପରିଷ୍କାର କହିଅଛନ୍ତି, ଯେ 'ମସଲା' ମିଶାଇ ତରକାରୀକୁ ସୁଆଦିଆ କରିପାରିଲା, ସେ ହେଉଛି ଐତିହାସିକ ଉପନ୍ୟାସର ପ୍ରକୃଷ୍ଟ ସ୍ରଷ୍ଟା । ତେଣୁ ସେ ପାଠକମାନଙ୍କୁ ସତର୍କ କରାଇଦେଇ କହିଅଛନ୍ତି, "ସତ୍ୟ ନିମନ୍ତେ ଇତିହାସ ପଢ଼, ଆନନ୍ଦ ନିମନ୍ତେ ଅଇଭାନ୍ହୋ ପଢ଼ । କାବ୍ୟରେ (ଏଠାରେ ଐତିହାସିକ ଉପନ୍ୟାସ) ଭୁଲ ଥିଲେ ଇତିହାସ ପଢ଼ି ତାହା ସଂଶୋଧନ କରିନିଅ ।"

କିନ୍ତୁ ଫକୀରମୋହନଙ୍କ 'ଲଛମା' ଉପନ୍ୟାସ ଏକାଧାରରେ କାବ୍ୟ ଓ ଇତିହାସ । ଇତିହାସର ଅଖଣ୍ଡତା ଓ କଳ୍ପନାର ରସାଳ ବଳିଷ୍ଠତା ଉଭୟର ସମାନୁପାତରେ ଏହା ସମୃଦ୍ଧିମନ୍ତ । ଫକୀର-ମୋହନଙ୍କ 'ଲଛମା' ଇତିହାସର ପ୍ରତିପକ୍ଷ ନୁହେଁ, ଇତିହାସର ପରିପୂରକ । ଏ କ୍ଷେତ୍ରରେ ସ୍କଟଙ୍କ କୃତିତ୍ୱର ବହୁମାନ କରିବାକୁ ଯାଇ ଜଣେ ସମାଲୋଚକ କହିଥିଲେ, "He did more for history than any professed historian" ଏବଂ ଅନ୍ୟ ଜଣେ ତାଙ୍କ 'Waverly Novels' ର ପ୍ରଥମ ପ୍ରକାଶକଙ୍କୁ ବିସ୍ମିତ ହୋଇ କହିଥିଲେ, "burst upon the

world like Minerva from the head of Zeus."— ଅର୍ଥାତ୍ , ଏପରି ଐତିହାସିକ ଉପନ୍ୟାସର ସୃଷ୍ଟିର ପଶ୍ଚାତ୍‌ପୃଷ୍ଠ ଶୂନ୍ୟ, ଯାହାଠାରୁ ମଣ୍ଡଳୀରେ ଅଛନ୍ତି; ଏହା ସମ୍ପୂର୍ଣ୍ଣ ଅଭିନବ-ଅଦ୍ୱିତୀୟ-ସୃଷ୍ଟି ଛଡ଼ା ସୃଷ୍ଟି । ଏହି ଉକ୍ତି କଣ ଫକୀରମୋହନଙ୍କ 'ଲଛମା' ପ୍ରତି ପ୍ରଯୋଜ୍ୟ ନୁହେଁ ? 'ପଦ୍ମମାଳୀ' ଓ 'ହବାସିଙ୍ଗ'ର କିଛି କଣ ଐତିହାସିକ ରସ ଅଛି, ଯାହା ପାଠକ ପ୍ରାଣରେ ଆନନ୍ଦ ସଞ୍ଚାର କରିବ ? ଏଥିରେ କଣ ଲେଖକଙ୍କ ଏପରି ଐତିହାସିକ କଳ୍ପନାବୋଧ ଅଛି ଯାହା ସୁଦୂର ଇତିହାସର ରଙ୍ଗମଞ୍ଚ ଉପରକୁ ପାଠକର ମନପ୍ରାଣକୁ ଆକର୍ଷଣ କରିନେବ ? ଏ ଦିଗରେ ଫକୀରମୋହନଙ୍କ 'ଲଛମା',— ସେଥିରେ ପଣ୍ଡିତ ନୀଳକଣ୍ଠ କହିଲାପରି ଚରିତ୍ରଚିତ୍ରଣଗତ ତ୍ରୁଟି ଥାଇ ପାରେ, ଏବଂ ସୁଲେଖକ ସୁରେନ୍ଦ୍ର ମହାନ୍ତି କହିଲା ପରି ଏହାର ଶେଷ ଅଂଶଟି ଅତିନାଟକୀୟ ଦୋଷରେ ଦୁଷ୍ଟ ହୋଇ ପାରେ, ଇତିହାସର ସତ୍ୟକୁ ଅକ୍ଷୁଣ୍ଣ ରଖି ଏଠାରେ ଫକୀର-ମୋହନ ଯେଉଁ ଐତିହାସିକ ରସର ଅବତାରଣା କରିଛନ୍ତି, ଏବଂ ଆମ୍ଭମାନଙ୍କ ଦୈନନ୍ଦିନ ଜୀବନର ସୁଖ ଦୁଃଖ, ସ୍ନେହ ଓ ବାତ୍ସଲ୍ୟ ମମତା ପ୍ରଭୃତିକୁ ସୁଦୂର ଅତୀତର ପୃଷ୍ଠଭୂମି ଉପରେ ସ୍ଥାପିତ କରି ତାର ବ୍ୟାପ୍ତି, ମହତ୍ତ୍ୱ ଓ ନିଲ୍‌ପ୍ରତାର ଆବେଦନପୂର୍ଣ୍ଣ ଚିତ୍ର ଯେପରି ଅଙ୍କନ କରିଅଛନ୍ତି, ତାହା ଏହାକୁ ସକଳ ଦୋଷତ୍ରୁଟି ଓ ବିଚ୍ୟୁତି ସତ୍ତ୍ୱେ ଓଡ଼ିଆ ସାହିତ୍ୟ କାହିଁକି, ଭାରତୀୟ ସାହିତ୍ୟରେ 'କାଳର କପୋଳତଳେ ଶୁଭ୍ର ସମୁଜ୍ଜ୍ୱଳ' କରି ରଖିବ ?

ବର୍ତ୍ତମାନ 'ଲଛମା'ର ସେହି ଐତିହାସିକ ତଥ୍ୟ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରି ପରେ ଏହାର ଐତିହାସିକ ସତ୍ୟତା ବିଷୟ ଉଲ୍ଲେଖ କରାଯିବ ।

ଭାରତ ଇତିହାସ କହେ—ଭାରତ-ଇତିହାସ କାହିଁକି, ଆଜି ଠିକ୍ ଏ ନିର୍ଦ୍ଦିଷ୍ଟ ଓ ଦୃଢ଼ଭାବରେ କହିଲେ ୧୯୩୯ ମସିହାରେ ପ୍ରକାଶିତ ପାଟନା-ବିଶ୍ୱବିଦ୍ୟାଳୟର ଇତିହାସ-ଅଧ୍ୟାପକ ଶ୍ରୀ କାଳୀ-କିଙ୍କର ଦତ୍ତଙ୍କ ଦ୍ୱାରା ପ୍ରଣୀତ **'Alivardi and his Times'** ପୁସ୍ତକଟି ଏ ପର୍ଯ୍ୟନ୍ତ ବଙ୍ଗଳା ଓ ଓଡ଼ିଶାରେ ନବାବୀ ରାଜତ୍ୱ ଓ ବର୍ଗି ଉତ୍ପୀଡ଼ନର ପ୍ରାମାଣ୍ୟ ଗ୍ରନ୍ଥ । ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି, ମରହଟ୍ଟାମାନଙ୍କ ଦୌରାତ୍ମ୍ୟ ଓ ସମରକୁଶଳତାରେ ବିଳାସପ୍ରିୟ ଅଲିବର୍ଦ୍ଦି ଓ ତାଙ୍କର ସୈନ୍ୟଗଣ ବଡ଼ ବିପର୍ଯ୍ୟୟ ଭୋଗ କରିଅଛନ୍ତି । ମରହଟ୍ଟା ସୈନ୍ୟମାନେ ବାରମ୍ବାର ନବାବଙ୍କ ସୈନ୍ୟଙ୍କୁ ପରାସ୍ତ କରିଅଛନ୍ତି । ଏହା ଗୋଟି ଐତିହାସିକ ଘଟଣା । କିନ୍ତୁ ଐତିହାସିକ ଓ ଔପନ୍ୟାସିକଙ୍କ ମଧ୍ୟରେ ପାର୍ଥକ୍ୟ ଅଛି । ସେ ପାର୍ଥକ୍ୟ କଳାତ୍ମକ । ଜଣେ ସଂଗ୍ରାହକ-ଲିପିକାର, ଅନ୍ୟ ଜଣକ ସର୍ଜନାଶକ୍ତିସମ୍ପନ୍ନ ସୁନ୍ଦରର ଉପାସକ—ଶିଳ୍ପୀ । **"The historian records, whereas the novelist must create"**—ଅତୀତ ଘଟଣାରୁ ଔପନ୍ୟାସିକ ଜୀବନ୍ତ କରି ସୃଷ୍ଟି କରେ ମନୁଷ୍ୟର ଚରିତ୍ର-ରହସ୍ୟ । ତାହାର ସୁଖ ଦୁଃଖ, ଆଶା ଓ ନୈରାଶ୍ୟର ଗୋପନ ରହସ୍ୟର ଚିତ୍ରକର ହେଉଛନ୍ତି ଔପନ୍ୟାସିକ । ଇତିହାସ ଓ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟର ସୀମାରେଖା ଅତି ସୁନ୍ଦରଭାବରେ ନିର୍ଦ୍ଦେଶ କରିଛନ୍ତି **E. M. Forster** ତାଙ୍କ **'Aspects of the Novel'** ଗ୍ରନ୍ଥରେ । ସେ କହନ୍ତି, **"A memoir is history. It is based on evidence. A novel is based on evidence + or — X, the unknown quantity being the temperament of the novelist, and the unknown quantity always modifies**

the effect of the evidence, and sometimes transforms it entirely."

ଇତିହାସ ଉପାଦାନର ସାକ୍ଷ୍ୟ ଉପରେ ନିର୍ଭରଶୀଳ, ଐତିହାସିକ ଦଲିଲ ଏବଂ ପ୍ରମାଣ-ପଞ୍ଜି ଉପରେ ପ୍ରତିଷ୍ଠିତ। କିନ୍ତୁ ଉପନ୍ୟାସର ପ୍ରାଣପିଣ୍ଡ ଔପନ୍ୟାସିକର ଦୃଷ୍ଟିଭଙ୍ଗୀ, କଳ୍ପନା-ପ୍ରବଣତା, ସୃଜନୀପ୍ରତିଭା ଏବଂ ତାର ମନର ମାଧୁର୍ଯ୍ୟ । ଲେଖକର ମନର ମାଧୁର୍ଯ୍ୟର ସଂସ୍ପର୍ଶ ଲାଭ କରି ଏହା ବିଚିତ୍ର ରସାସ୍ୱାଦନର ଅଫୁରନ୍ତ ଉତ୍ସ-ଭୂମି । ଏହି ମନର ମାଧୁର୍ଯ୍ୟରୁ ଉପନ୍ୟାସ ବିଚ୍ଛିନ୍ନ ହୋଇପଡ଼ିଲେ ତାହା ରସୋଦ୍ରେକକାରୀ ହୁଏ ନାହିଁ ।

ଐତିହାସିକ ଶ୍ରୀ କାଳୀକିଙ୍କର ଦତ୍ତ ଅଭ୍ରାନ୍ତ ପ୍ରାମାଣ୍ୟ ଗ୍ରନ୍ଥ ଏବଂ ସମସାମୟିକ ଉପାଦାନ ଉପରେ ନିର୍ଭର କରି ଅଲିବର୍ଦ୍ଦିଙ୍କର ଭାଗ୍ୟ-ବିପର୍ଯ୍ୟୟର ବିବରଣୀ ଲିପିବଦ୍ଧ କରିଅଛନ୍ତି । ଥରେ ମରହଟ୍ଟାଙ୍କ ଦ୍ୱାରା ପର୍ଯ୍ୟୁସ୍ତ ହୋଇ ଅଲିବର୍ଦ୍ଦି କିପରି ଅସହ୍ୟ ଯନ୍ତ୍ରଣାର ସମ୍ମୁଖୀନ ହୋଇଥିଲେ, ତାହାର ବିବରଣୀ ଲିପିବଦ୍ଧ କରିବାକୁ ଯାଇ ଶ୍ରୀ ଦତ୍ତ ମହାଶୟ ଲେଖିଅଛନ୍ତି, "The Marhattas plundered all his provisions, tents, except three or four palanquins and his own tent. To add to his troubles, he had to halt in a paddy field, which had become muddy owing to excessive rainfall. Thus he passed the whole night in great distress." *

* Dutt-Alivardi and his Times—p. 62.

ଫକୀରମୋହନଙ୍କ 'ଲଛମା'ର 'ଅପୂର୍ବ ମିଳନ' ନାମ ନେଇ ପ୍ରଥମ ଆତ୍ମପ୍ରକାଶ 'ଉତ୍କଳ ସାହିତ୍ୟ'ର ୫।୩ ଅଷାଢ଼ ୧୩୦୮ ସାଲ, ଅର୍ଥାତ୍ ୧୯୦୧ ଜୁନ ମାସରେ । ଏହା ପୁସ୍ତକାକାରରେ ୧୯୧୩ ମସୀହାରେ ପ୍ରକାଶ ପାଏ । ଦତ୍ତଙ୍କ ପୁସ୍ତକ ଏହାର ୨୭ ବର୍ଷ ପରେ ପ୍ରକାଶ ପାଇଛି । ତେଣୁ ଦତ୍ତଙ୍କ ଦ୍ୱାରା ସେ ଅପ୍ରଭାବିତ । ତଥାପି ଅଲିବର୍ଦ୍ଦିଙ୍କ ଚରିତ୍ର, ମରହଟ୍ଟା-ସଂଘର୍ଷ, ଯୁଦ୍ଧରେ ଜୟପରାଜୟର ଆଲୋକ-ଛାୟାର ଚିତ୍ର, ଘଟନା-ବିପର୍ଯ୍ୟୟରେ ଅଲିବର୍ଦ୍ଦିଙ୍କର ଚିତ୍ତ-ନୈରାଶ୍ୟ, ଏବଂ କାତରତାପୂର୍ଣ୍ଣ ଆକୁଳତା ଓ ଉତ୍କଣ୍ଠା, ଏ ସକଳ ବିଷୟର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାରେ ଦତ୍ତଙ୍କ ସହିତ ଫକୀରମୋହନଙ୍କର ବହୁ ତଥ୍ୟଗତ ସାମଞ୍ଜସ୍ୟ ଦେଖି ଅବାକ୍ ହେବାକୁ ପଡ଼େ । କିନ୍ତୁ ଇତିହାସରୁ ଐତିହାସିକ ଉପନ୍ୟାସର କଳାତ୍ମକ କିମ୍ବା ଶିଳ୍ପଗତ ପାର୍ଥକ୍ୟ ଏହି ଗୋଟିଏ ମାତ୍ର ଦୃଷ୍ଟାନ୍ତରୁ ଅନୁମେୟ । ଯେଉଁ **'Temperament'** କିମ୍ବା ମନର ମାଧୁରୀ କଥା **Forster** ଉଲ୍ଲେଖ କରିଛନ୍ତି, ତାହା ଏଠାରେ ସ୍ପଷ୍ଟରୂପେ ପ୍ରତିଭାତ । "ସାହିତ୍ୟ କ୍ଷେତ୍ରରେ ଇତିହାସ ଚର୍ଚ୍ଚା ଏବଂ ଉପନ୍ୟାସ ରଚନା ଏହି ଦୁଇଟି ଧାରା ଯେତେବେଳେ ଶକ୍ତିସମ୍ପନ୍ନ ହୁଏ, ସେତିକି-ବେଳେ ଯାଇ ସାର୍ଥକ ଐତିହାସିକ ଉପନ୍ୟାସ ରଚିତ ହୋଇପାରେ ।"—ଜଣେ ସମୀକ୍ଷକଙ୍କର ଏହି ଉକ୍ତିର ସତ୍ୟତା ଫକୀରମୋହନଙ୍କ 'ଲଛମା'ରେ କିପରି ପ୍ରତିଭାତ, ତାହା ମଧ୍ୟ ନିମ୍ନଲିଖିତ ଦୃଷ୍ଟାନ୍ତରୁ ଅନୁମିତ ହୁଏ । ଇତିହାସ ଓ ଐତିହାସିକ ରସର ମଣିକାଞ୍ଚନ ସଙ୍ଗମରେ ଐତିହାସିକ ଉପନ୍ୟାସ କିପରି ଉତ୍କର୍ଷର ଚରମ କୋଠିକୁ ସ୍ପର୍ଶକରେ, ତାହାର ଉଜ୍ଜ୍ୱଳ ନିଦର୍ଶନ ମଧ୍ୟ ଏହି ଦୃଷ୍ଟାନ୍ତଟି ।

'ନବାବ ଏବଂ ମୁସ୍ତାଫା ଖାଁ' ଅଧ୍ୟାୟରେ ଅଲବର୍ଦ୍ଦିଙ୍କର ଭାଗ୍ୟ-ବିପର୍ଯ୍ୟୟର ଇତିହାସ ଦେବାକୁ ଯାଇ ଫକୀରମୋହନ ଲେଖିଅଛନ୍ତି, "ମନ୍ଦ ଭାଗ୍ୟ ବେଳକୁ ବିଧାତା ଅବଳକୁ ନୃପତି ଦାଣ୍ଡର ଭିଖାରି । ବଙ୍ଗ, ବିହାର-ଓଡ଼ିଶାର ସୁବାଦାର ହଜରତ୍ ଅଲବର୍ଦ୍ଦି ଖାଁ ବର୍ତ୍ତିମାନ ଭୟତ୍ରସ୍ତ, ପଳାୟିତ । ମହାଷରେଖା କ୍ଷେତ୍ରରେ ନବାବଙ୍କ ସମସ୍ତ ସମ୍ପତ୍ତି ସହିତ ତମ୍ବୁ ମଧ୍ୟ ବର୍ଗି ହସ୍ତଗତ । ଜଲବାଡ଼ିଆ ନାମକ ସ୍ଥାନରେ ଗୋଟିଏ ଅତି କ୍ଷୁଦ୍ର ପୁରାତନ ଛିନ୍ନ ମହାସ୍ରିବାସ-ଅଯୋଗ୍ୟ ତମ୍ବୁ ମଧ୍ୟରେ ନବାବ ରହି ଅଛନ୍ତି ।" ଏପର୍ଯ୍ୟନ୍ତ ଦତ୍ତଙ୍କ ବିବରଣୀ ସହିତ ଫକୀରମୋହନଙ୍କ ବର୍ଣ୍ଣନାର ସମଧିକ ସାମଞ୍ଜସ୍ୟ ଲକ୍ଷଣୀୟ । କିନ୍ତୁ ଘଟନାର ଲିପିକାର ଦତ୍ତଙ୍କର ସମାପ୍ତି ଯେଉଁଠାରେ, ଐତିହାସିକ କଳ୍ପନା-ବୋଧସମନ୍ୱିତ ଔପନ୍ୟାସିକ ଫକୀରମୋହନଙ୍କର ଆରମ୍ଭ ସେହିଠାରେ ।

'ଦାଣ୍ଡର ଭିଖାରି' ଅଲବର୍ଦ୍ଦିଙ୍କ ଚିତ୍ର ବର୍ତ୍ତିମାନ ନୈରାଶ୍ୟର କାଳସ୍ୱ । ସେ ଦୁଃଖ ଓ ମର୍ମନ୍ତୁଦ ନୈରାଶ୍ୟର ଚିତ୍ର ଦତ୍ତ ଦେଇପାରି ନାହାନ୍ତି, ଦେଇଛନ୍ତି ମନୁଷ୍ୟର ଅଦୃଷ୍ଟଲିପିର ଅନ୍ତର୍ଦ୍ରଷ୍ଟା ରହସ୍ୟଭେଦୀ ଫକୀରମୋହନ । ଏଠାରେ କେବଳ **'Evidence'** ନାହିଁ, **'Evidence'** ସହିତ ଅଛି **'Temperament'**, ଐତିହାସିକ ଉପାଦାନର ସାକ୍ଷ୍ୟ ସହିତ ଅଛି ସୃଷ୍ଟି-କାରିଣୀ କଳ୍ପନା । ସେହି ଘୋର ନୈରାଶ୍ୟ ମଧ୍ୟରେ ନିର୍ଜନ ନୀରବ ନିଶୀଥରେ ତମ୍ବୁ ମଧ୍ୟରୁ ମୁହଁ ଗଳାଇ ନବାବ ଦେଖିଲେ—"ସମସ୍ତ ଦିଗ ଅନ୍ଧକାରପୂର୍ଣ୍ଣ, ଅନ୍ଧକାର ସମୁଦ୍ର ଉପରେ ଶୁକ୍ଳ ଫେନ ନିଭ ଖଣ୍ଡ କ୍ଷୁଦ୍ର ବୃହତ୍ ଅନନ୍ତ ନକ୍ଷତ୍ର ଭାସୁଛନ୍ତି ।" ଏହି କାବ୍ୟଧର୍ମୀ ବାକ୍ୟ ମଧ୍ୟରେ ଅନ୍ତର୍ନିହିତ ଅଛି

ନବାବଙ୍କର ନୈରାଶ୍ୟ-ନିପୀଡ଼ିତ ଚିତ୍ତ-ଜଗତର ଘନଘୋର ଦୁଃଖାନ୍ଧକାର । ସେ ଦୁଃଖର ଦିଗନ୍ତପ୍ରସାରୀ ସମୁଦ୍ରପରି ସୀମାହୀନ ବିସ୍ତୃତ । କିନ୍ତୁ କାହିଁ ଆଶାର ଆଲୋକ ? ଏହି ଅଗଣିତ 'ଭ୍ରସମାନ' ନକ୍ଷତ୍ର କିଣ ତାଙ୍କର କ୍ଷୀଣ ଆଶାର ଯାତ୍ରିଛନ୍ତି ? ଏ ବିପଦରୁ ରକ୍ଷା ପାଇବାର ଅନ୍ୟ କୌଣସି ଉପାୟ ନଦେଖି ସେ ସର୍ବଶକ୍ତିମାନ୍ ପ୍ରଭୁଙ୍କ ଶ୍ରୀଚରଣ ଧ୍ୟାନକରି ତାଙ୍କର ଅମୋଘ ଆଦର୍ଶକୁ ଅପେକ୍ଷା କରି ରହିଲେ । ସଙ୍କଟ କାଳରେ ଏହି ଭଗବତ୍ ବିଶ୍ୱାସହିଁ ଥିଲା ଅଲିବର୍ଦ୍ଦିଙ୍କର ପ୍ରଧାନ ଅବଲମ୍ବନ । * ତାଙ୍କର ସେହି କାତର ପ୍ରାର୍ଥନା ଭଗବାନ୍ ଶୁଣିଲେ । ତାଙ୍କ ପ୍ରତୀତ ହେଲା, ଏ ସଙ୍କଟରୁ ତାଙ୍କୁ ରକ୍ଷା କରିପାରନ୍ତି କେବଳ ନବାବ ଫୌଜର ଦ୍ୱିତୀୟ ସେନାପତି, ନାମ ମୁସ୍ତାଫା ଖାଁ । କିନ୍ତୁ ମୁସ୍ତାଫା ଖାଁ ନାନା କାରଣରୁ ନବାବଙ୍କ ପ୍ରତି ଅପ୍ରସନ୍ନ । ସେ ପ୍ରଧାନ ସେନାପତି ନୁହନ୍ତି—ପ୍ରଧାନ ସେନାପତି ମୀର ଜଫର୍ । ତଥାପି ଗତ୍ୟନ୍ତର ନ ଦେଖି ବଙ୍ଗ-ବିହାର-ଓଡ଼ିଶାର ନବାବ ଅଲିବର୍ଦ୍ଦି ସନ୍ତର୍ପଣରେ ଦୌହିତ୍ର ସିରାଜଙ୍କୁ ସାଙ୍ଗରେ ନେଇ ସେହି ନୀରବ ନିଶୀଥରେ ମୁସ୍ତାଫାଙ୍କ ତମ୍ବୁ ପାଖକୁ ଗଲେ । ଏହି ଅଶାତୀତ ଘଟନାରେ ନାଟକୀୟତ୍ୱ ଆରୋପ କରି ଫକୀରମୋହନ ନବାବଙ୍କ ଜୀବନ-ନାଟ୍ୟର ଗୋଟିଏ କରୁଣ

---

* He (Alivardi) had also a religious turn of mind and an implicit faith in God. In critical moments, during his campaigns against his enemies, he solemnly invoked divine assistance and thus derived inspiration to fight with reckless valour.

(Alivardi and his Times—p. 170.)

ଚିତ୍ର ଅଙ୍କନ କରିଅଛନ୍ତି । ଅତି କରୁଣ ଭାଷାରେ ମୁସ୍ତାଫାଙ୍କୁ ସେ କହିଲେ, "ତୁମ୍ଭେ ମୋ ପ୍ରତି ବିରକ୍ତ । ଯେବେ ମୋର ବିନାଶ କାମନା କର ଭଲ କଥା । ସେଥି ସକାଶେ ଏତେ ହରବର କାହିଁକି ? ଏତେ ସନ୍ତ୍ରାସନ୍ତ କିଆଁ । ଏହିଠାରେ ଶେଷ କରିଦିଅ ।" ନବାବ ଏହା କହି ଆପଣା ହସ୍ତର ତରବାରି ମୁସ୍ତାଫାଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ମୁଁ ତୁମ୍ଭ ଆଗରେ ଅଛି, ଏହି ମୋ ନୟନ ପ୍ରତିମା ସିରାଜ ଉଦ୍ଦୌଲ୍ଲା ତୁମ୍ଭ ଆଗରେ ରହିଅଛି, ଦୁଇ ଜଣଙ୍କୁ ଶେଷ କରିଦିଅ, ବିଧର୍ମୀ କାଫେର୍ ହାତଯାଏ ରଖ ନାହିଁ । × × × ବର୍ତ୍ତମାନ ଭ୍ରସ୍କର ପଣ୍ଡିତ ସହିତ କିରୂପ ବ୍ୟବହାର କରିବାକୁ ହେବ, ମୋତେ ଉପଦେଶ ଦିଅ ।"

ଉଦ୍ଦେଶ୍ୟ ସାଧନ ପାଇଁ ଏହା ନବାବଙ୍କର କୁଟକାପଟ୍ୟ ନୁହଁ । ବାସ୍ତବରେ ବର୍ତ୍ତମାନ ସେ ନିରୁପାୟ—ଆଶ୍ରୟହୀନ । ତେଣୁ ତାଙ୍କ କାରୁଣ୍ୟରେ ମୁସ୍ତାଫା ବିଚଳିତ ହୋଇଗଲେ । ଏ କାରୁଣ୍ୟରେ ପାଠକର ଚିତ୍ତ ମଧ୍ୟ ଆର୍ଦ୍ର ହୋଇଉଠେ । ଅଲିବର୍ଦ୍ଦିଙ୍କ ପ୍ରତି ସମବେଦନାରେ ପ୍ରାଣ ବିଚଳିତ ହୋଇଉଠେ । ଏଠାରେ ଅଲିବର୍ଦ୍ଦିଙ୍କ ଚରିତ୍ରରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ମୁସ୍ତାଫାଙ୍କୁ ସେ କପଟାଶ୍ରୁରେ ପ୍ରତାରିତ କରିବାକୁ ପ୍ରୟାସୀ ନୁହନ୍ତି । ପାରିପାର୍ଶ୍ୱିକ ଅବେକ୍ଷଣୀ ତାଙ୍କ ପ୍ରତି ବଡ଼ ନିଷ୍ଠୁରଣ । ତେଣୁ ସିରାଜଙ୍କ ପ୍ରତି ଏଠାରେ ଯେଉଁ ଅକପଟ ବାତ୍ସଲ୍ୟ, ଏବଂ ତହିଁ ସଙ୍ଗେ ସଙ୍ଗେ ତାଙ୍କର ଏ ଯେଉଁ ନିରାଶ୍ରୟ ପରିସ୍ଥିତି ଐତିହାସିକ ପୃଷ୍ଠପଟରେ ଅବସ୍ଥାପିତ ହୋଇ ପାଠକକୁ ଦୂରତ୍ୱବୋଧର ନିର୍ଲିପ୍ତତାରେ ମୋହାଚ୍ଛନ୍ନ କରି ତା ପ୍ରାଣରେ ଆଣେ କରୁଣ ଓ ବାତ୍ସଲ୍ୟ ରସର ଏକ ସୁଦୂର ପ୍ରସାରିତ ବ୍ୟାପ୍ତିର ମହିମା, ଏହାହିଁ ଏଠାରେ ଐତିହାସିକ ରସର ଦ୍ୟୋତନା । ଏ

ଦ୍ୟୋତନା ଓ ବ୍ୟାପ୍ତିର ଅନୁଭୂତ ସାମାଜିକ ଉପନ୍ୟାସରେ ଆଶା କରିବା ବୃଥା । ଶ୍ରୀ ଦତ୍ତଙ୍କ ଉପନ୍ୟାସରେ ଏହାର ଅଭାବ । ଏ ଅଭାବ ପୂରଣ କରି ଶୁଷ୍କ ଐତିହାସିକ ଘଟନାକୁ ମାନବୀୟ ରସରେ ଉଦ୍ଭାସିତ କରେ ଔପନ୍ୟାସିକ । ମାନବ-ଇତିହାସର ଚିରନ୍ତନ ସତ୍ୟ ଇତିହାସରେ ଦେଖିବାକୁ ମିଳେ ନାହିଁ—ପ୍ରାଣର ଅକଥିତ ବାଣୀ ଇତିହାସରେ ଅବ୍ୟକ୍ତ ଥାଏ । ତାକୁ ବ୍ୟକ୍ତ କରେ ମାନବଭାବାଦୀ ଔପନ୍ୟାସିକ । ଜଣେ ଇଂରେଜ ଅଧ୍ୟାପକ ଥରେ ଐତିହାସିକ ଉପନ୍ୟାସର ଉପଯୋଗିତା ସମ୍ବନ୍ଧରେ ନିଜର ମତ ପ୍ରଖ୍ୟାପନ କରିବାକୁ ଯାଇ କହିଥିଲେ, 'ଇତିହାସର ସତ୍ୟ-ସଂଘଟିତ ବ୍ୟାପାର' ଏବଂ 'ଯାହା ଘଟିଲେ ଘଟିପାରେ',—ଏ ଦୁଇଟି ଏକ ଜିନିସ ନୁହଁ । ଔପନ୍ୟାସିକର କାରବାର **'Probable impossibilities'** ନେଇ । ଯାହା ପ୍ରକୃତ ଘଟି ନାହିଁ, କିନ୍ତୁ ଘଟିବାର ଯଥେଷ୍ଟ ସମ୍ଭାବନା ଅଛି, ଏହାହିଁ ହେଲା ଉପନ୍ୟାସ-ଶିଳ୍ପର ମର୍ମ କଥା । ସମ୍ଭାବ୍ୟତା ହିଁ ଉପନ୍ୟାସର ପ୍ରାଣପିଣ୍ଡ । ଘଟନା ବାସ୍ତବ ହୋଇପାରେ—ଅବାସ୍ତବ ହୋଇପାରେ । ଅତଏବ ଐତିହାସିକ ଉପନ୍ୟାସ ଯେତେ ଯତ୍ନରେ ଲେଖାଯାଉ, ଓ ପଣ୍ଡିତୋଚିତ ତଥ୍ୟ ପୂର୍ଣ୍ଣ ହେଉ ନା କାହିଁକି, ତାହା ଅସଲ ଇତିହାସର ସ୍ଥାନ କଦାପି ନେଇପାରିବ ନାହିଁ । ତଥାପି ଐତିହାସିକ ଉପନ୍ୟାସର ଗୋଟେ ସାର୍ଥକତା ଅଛି । ତାହାର କାରଣ, ଏହି ଇତିହାସ ମଧ୍ୟରେ କିପରି ଗୋଟେ ଅଭାବ ଲକ୍ଷିତ ହୁଏ; ଅର୍ଥାତ୍, ଅତୀତ ଯୁଗର ମୃତ ନାୟକନାୟିକାଗଣ ସେମାନଙ୍କର ପ୍ରାୟ ସବୁ ଗୋପନୀୟ ବ୍ୟାପାରଗୁଡ଼ିକ ସଙ୍ଗେ ନେଇ ତିରୋହିତ ହୋଇଥାନ୍ତି, ଏବଂ ବର୍ତ୍ତମାନ ଯୁଗ ଅତୀତ ଯୁଗକୁ ଚିରକାଳ କେବଳ ଅସ୍ପଷ୍ଟ ଭାବରେ ଚିହ୍ନେ । ପାଠକ ହୃଦୟର ଏହି ଶୂନ୍ୟ ସ୍ଥାନ (ଯଥା ପୂର୍ବ

ବର୍ଣ୍ଣିତ ଅଲବର୍ଦ୍ଧିଙ୍କ ଦୁଃସହ ହୃଦୟବେଦନା ଓ କାରୁଣ୍ୟ) ଐତିହାସିକ ଉପନ୍ୟାସ ପୂର୍ଣ୍ଣ କରେ । ଉକ୍ତ ଅଧ୍ୟାପକ ଐତିହାସିକ ଉପନ୍ୟାସରୁ ବହୁ ଦୃଷ୍ଟାନ୍ତ ଦେଇ କହିଅଛନ୍ତି, 'ଲକ୍ଷ ଲକ୍ଷ ପାଠକ ଐତିହାସିକ ଉପନ୍ୟାସ ପଢ଼ି ଇତିହାସର ଯେଉଁ ଜ୍ଞାନ ଲଭ କରିଅଛନ୍ତି, ତାହା ଅନ୍ୟ କୌଣସି ଉପାୟରେ ପାଇପାରିନଥାନ୍ତେ ।' ଅବଶେଷରେ ସେ କହିଥିଲେ—"ଐତିହାସିକ ଉପନ୍ୟାସ ସାଧାରଣର ହୃଦୟରେ ଜାତୀୟତାବୋଧକୁ ଉଦ୍ଦୀପ୍ତ ଏବଂ ସଜୀବ ରଖିବାକୁ ଅତି କ୍ରିୟାଶୀଳ ଶକ୍ତିର କାର୍ଯ୍ୟ କରିଅଛି, ଏବଂ ଏହି ଜାତୀୟତା-ବୋଧହିଁ ଊନବିଂଶ ଓ ବିଂଶ ଶତାବ୍ଦୀରେ ଇଉରୋପର ରୂପ ବଦଳାଇ ଦେଇଛି ।" *

ଉକ୍ତ ଅଧ୍ୟାପକଙ୍କର ଏ 'ଆପ୍ତବାକ୍ୟ' ଫକୀରମୋହନଙ୍କ 'ଲଛମା' ପ୍ରତି ସମ୍ପୂର୍ଣ୍ଣ ପ୍ରଯୋଜ୍ୟ । ସାଧାରଣ ପାଠକ ଏହି ଉପନ୍ୟାସଟି ପାଠ କରି ଇତିହାସଜ୍ଞାନ ଲଭିବରେ ସେହିଠାରେ ଯେଉଁଠାରେ ଔପନ୍ୟାସିକ ସାମନ୍ତରାୟ ରାଘବ ରାଉସିଂହ ବୈରି-ଗଞ୍ଜନ ମାନଧାତାଙ୍କ ଚରିତକୁ କେନ୍ଦ୍ର କରି ଉତ୍କଳ ବୀର କାଳୟର ଚରମ କାଳର ତଥା ଉତ୍କଳର ପତନର ଚରମ ସମୟର ଇତିହାସ ବିସ୍ମୃତି-ଗର୍ଭରୁ ଉଦ୍ଧାର କରି ଲିପିବଦ୍ଧ କରିଅଛନ୍ତି; ଯେଉଁଠାରେ ସେ ବ୍ୟଙ୍ଗୋକ୍ତିପୂର୍ଣ୍ଣ ଆକ୍ଷେପ ପ୍ରକାଶ କରି ଐତିହାସିକସୁଲଭ ନିର୍ଭୀକତାରେ କହିଅଛନ୍ତି, "ଏ ହିସାବରେ ମରହଟ୍ଟାମାନେ ମହାବୀର ବୋଲି ଅଭିଧାନରେ ବାଚ୍ୟ; କାରଣ ଗ୍ରାମଦାହ, ଲୋକହତ୍ୟା, ପରସ୍ୱଲୁଣ୍ଠନ, ମହାବୀରମାନଙ୍କର ଯାହା କିଛି ନିତ୍ୟ

---

* ବଙ୍କିମ ରଚନାବଳୀ—ସାହିତ୍ୟ ସଂସଦ—ଉପନ୍ୟାସ ପ୍ରସଙ୍ଗ—ପୃ—୨୭ ।

କର୍ତ୍ତବ୍ୟ, ସେମାନେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ”, ଏବଂ ପେଣ୍ଠଠାରେ ନିଷ୍ଠୁର ବର୍ଗୀ ଦସ୍ୟୁମାନଙ୍କର ଅତ୍ୟାଚ୍ଚାରକୁ ଅପରୂପ ଅଭିବ୍ୟକ୍ତି ଦେଇଛନ୍ତି ବୁଢ଼ୀ ଜଗା—ଫତେସିଂହ ମା ମୁହଁରେ । ଲଛମାକୁ ବୁଢ଼ୀ କହୁଛି—“ଆଜି କଣ ନବୁ ଅସିଛୁ ? ନାଅଁ ନେ, ପାଉଁଶ ଅଛି, ଅ; ଅ, ବୋଟେ ପାଉଁଶ ନେବୁ, ଅ ।” ବର୍ଗୀର ଏ ଅତ୍ୟାଚାରର ଇତିହାସର ନିବିଡ଼ ଅନୁବର୍ତ୍ତନରେ ରୂପାୟିତ ହୋଇଅଛି । ଏବେ ମଧ୍ୟ ଓଡ଼ିଶାର ସ୍ଥାନେ ସ୍ଥାନେ ଗୋଟିଏ ପ୍ରବଚନ ପ୍ରଚଳିତ ଅଛି

‘ବରବର୍ଣ୍ଣିନୀମାନେ ପାଇଲେ ଦୁଃଖ
ବରଗି ହଣା ହେଲେ ପାଇବେ ସୁଖ ।’

ଫକୀରମୋହନଙ୍କର ଏହି ସତ୍ୟନିଷ୍ଠ ଇତିହାସଜ୍ଞାନ ଓ ଇତିହାସାନୁବର୍ତ୍ତିତାର ଅଭ୍ରାନ୍ତ ପ୍ରମାଣ ହେଉଛି—ଅଲିବର୍ଦ୍ଦିଙ୍କ ଶିବିରରେ ଭାସ୍କର ପଣ୍ଡିତଙ୍କ ହତ୍ୟା । ଫକୀରମୋହନ ଏ ହତ୍ୟାର ଇତିହାସ କେଉଁ ଐତିହାସିକ ଉପାଦାନରୁ ଅବିଷ୍କାର କରିଥିଲେ, କିଏ ଜାଣେ, କିନ୍ତୁ ୧୯୩୯ ରେ ପ୍ରକାଶିତ ପୂର୍ବୋକ୍ତ **‘Alivardi and his Times’** ଗ୍ରନ୍ଥରେ ଏହି ହତ୍ୟା ସମ୍ବନ୍ଧରେ ପ୍ରାମାଣ୍ୟ ଗ୍ରନ୍ଥ ଉପରେ ଏକାନ୍ତ ନିର୍ଭର କରି ଲେଖକ ଯେଉଁ ବିସ୍ତାରିତ ବିବରଣୀ ଦେଇଅଛନ୍ତି, ‘ଲଛମା’ର ବିବରଣୀ ତିଳଠାରୁ ତାଳ ପର୍ଯ୍ୟନ୍ତ ସର୍ବତୋଭାବରେ ତାହା ସହିତ ସାମଞ୍ଜସ୍ୟ ରକ୍ଷା କରି ଏ ସମ୍ବନ୍ଧରେ ପାଠକମାନଙ୍କର ଇତିହାସଜ୍ଞାନକୁ ସମୃଦ୍ଧ କରିଅଛି । ପାର୍ଥକ୍ୟ ମଧ୍ୟରେ ଇତିହାସ କହେ—ଭାସ୍କର ପଣ୍ଡିତଙ୍କର ହନ୍ତା ହେଉଛନ୍ତି ସେନାପତି ମୁସ୍ତାଫା ଖାଁ । କିନ୍ତୁ ଫକୀରମୋହନ କହନ୍ତି ଏ ଘାତୁକ ଛଦ୍ମବେଶଧାରୀ ବାଦଲ ସିଂହ । ଐତିହାସିକ କହନ୍ତି, ୧୭୪୪ ମସିହା, ମାର୍ଚ୍ଚ ୩୧ ତାରିଖରେ

ମାନକରଠାରେ ଭାସ୍କରଙ୍କ ହତ୍ୟା କରାଯାଇଥିଲା । ଫକୀରମୋହନ କହନ୍ତି, କୃଷ୍ଣ ଚତୁର୍ଥୀ ଶନିବାରରେ ମାନକର ଗ୍ରାମର ନବାବ ସାହେବଙ୍କ ପ୍ରଶସ୍ତ ପ୍ରାନ୍ତର ମଧ୍ୟରେ ପଡ଼ିଥିବା ଦରବାରୀ ବିଶାଳ ତମ୍ବୁରେ ଭାସ୍କରଙ୍କ ହତ୍ୟା କରାଯାଇଥିଲା । ଫକୀରମୋହନ 'ଲଛମା' ଉପନ୍ୟାସରେ ବର୍ଣ୍ଣିତ ଘଟନାର କୌଣସି ନିର୍ଦ୍ଦିଷ୍ଟ କାଳ ଐତିହାସିକଙ୍କ ପରି ନ ଦେଇଥିଲେ ମଧ୍ୟ ଦ୍ୱିତୀୟ ଅଧ୍ୟାୟରେ କହିଅଛନ୍ତି—ପ୍ରଥମ ପରିଚ୍ଛେଦରେ ଯେଉଁ ସୀହାକାନୀ ବିଷୟ ବର୍ଣ୍ଣନା କରାଯାଇଅଛି, ତାହା ଊଣା ଅଧିକ ଦୁଇଶ ବର୍ଷ ତଳର କଥା । କିନ୍ତୁ 'ନାଗା ଜମାୟତ' ଅଧ୍ୟାୟରେ ସେକ୍ ସମର ଖାଁ ଯେଉଁ ପତ୍ର ମୀର କାସିମଙ୍କ ନିକଟକୁ ଅଣିଥିଲେ ତାହାର ସମୟ ୧୨୪୦ ମସିହା । ଏହାର ତିନି ଚାରି ବର୍ଷ ପରେ ଭାସ୍କର ପଣ୍ଡିତଙ୍କ ହତ୍ୟା । ତେଣୁ ଫକୀରମୋହନଙ୍କ ବର୍ଣ୍ଣନାନୁସାରେ ଭାସ୍କର ପଣ୍ଡିତଙ୍କ ହତ୍ୟା ପ୍ରାୟ ସେହି ୧୨୪୪ ମସିହାରେ । ପ୍ରଥମେ ପ୍ରଥମେ ସୁଚତୁର ଭାସ୍କର ପଣ୍ଡିତ ଶତ୍ରୁ ଅଲିବର୍ଦ୍ଦିଙ୍କ ସହିତ ସାକ୍ଷାତ କରିବାକୁ ଅନିଚ୍ଛା ପ୍ରକାଶ କରୁଥିଲେ । ତାଙ୍କ ମନରୁ ଏହି ସନ୍ଦେହ ଦୂର କରିବା ସକାଶେ ନବାବ-ପ୍ରେରିତ ମୁସ୍ତାଫା ଖାଁ ଏବଂ ଜାନକୀରାମ, ଦୁହେଁ କପଟତା ଅବଲମ୍ବନ କରି ଅଲିବର୍ଦ୍ଦିଙ୍କଠାରେ ପୂର୍ଣ୍ଣ ବିଶ୍ୱାସ ଓ ମୈତ୍ରୀ ସ୍ଥାପନ କରିବାକୁ ପ୍ରବର୍ତ୍ତାଇବା ଉଦ୍ଦେଶ୍ୟରେ ହିନ୍ଦୁ ଜାନକୀରାମ ପବିତ୍ର ଗଙ୍ଗାଜଳ ଓ ତୁଳସୀପତ୍ର ଏବଂ ପଠାଣ ମୁସ୍ତାଫା ଖାଁ ପବିତ୍ର ଧର୍ମଗ୍ରନ୍ଥ କୋରାନ୍ ସ୍ପର୍ଶ କରିଥିଲେ । ଐତିହାସିକ ଦତ୍ତ ଏ ସମ୍ପର୍କରେ କହନ୍ତି, "When Mr. Habib warned Bhaskar against the assertions of the Nawab's agents, both Janakiram and Mustafa Khan took solemn oaths according to the forms of their respective religions—

**Janakiram by touching the sacred water of the Ganges and Tulasi leaves and Mustafa Khan by holding a copy of the Koran in his hands."** ଏହାର ପାଦଟୀକାରେ ମଧ୍ୟ ଲେଖାଅଛି, ମୁସ୍ତାଫା ପ୍ରକୃତ କୋରାନ୍ ବହି ଆଣିନଥିଲେ । କୋରାନ୍ ପରିବର୍ତ୍ତେ ଖଣ୍ଡିଏ ସଫା କନା ଭିତରେ ଖଣ୍ଡିଏ ଇଟା ଲୁଚେଇ ଆଣିଥିଲେ । ମହାରାଷ୍ଟ୍ର ପୁରାଣରେ (ବଙ୍ଗଳା) ମଧ୍ୟ ଏ ସମ୍ପର୍କରେ ଲେଖାଅଛି—ମୁସ୍ତାଫା ଭାସ୍କର ପଣ୍ଡିତଙ୍କ ବିଶ୍ୱାସ ଉତ୍ପାଦନ କରିବା ନିମନ୍ତେ ତାଙ୍କୁ କହିଥିଲେ:—

"କିଛୁ କିନ୍ତୁ ଯଦି ମନେ କର ତୁମି
କୋରାନ ଧରିଆଁ କରେ କହିଯାଛି ଆମି
ଜାନକୀରାମ କହେ ଗଙ୍ଗାଜଳ ଶାଲଗ୍ରାମ ଲଇୟା
କିଛୁ ଚିନ୍ତା ନାହିଁ, ତୋମାକେ ଆନିବ ମିଲାଇୟା ।"

ଫକୀରମୋହନ ତେବେ କଣ ଏହି ମହାରାଷ୍ଟ୍ର ପୁରାଣ ପଢ଼ିଥିଲେ ? ଫକୀରମୋହନ ଏହି 'ଚତୁରେ ଚତୁରଙ୍ଗ' ଘଟନା ପ୍ରସଙ୍ଗରେ ଲେଖି ଅଛନ୍ତି—'ଚତୁରତାରେ କେହି କାହାକୁ ଊଣା ନୁହନ୍ତି । ଆମ୍ଭେମାନେ ଏହା ମଧ୍ୟ ଅବଗତ ଅଛୁ । ଭାସ୍କର ପଣ୍ଡିତ ଏବଂ ଜାନକୀରାମ ଦୁଇଜଣ ଯେଉଁ ଗଙ୍ଗାଜଳ ସ୍ପର୍ଶ କରିଥିଲେ, ତାହା ପ୍ରକୃତ ଗଙ୍ଗୋଦକ ନୁହେ, ଉଭୟପକ୍ଷ ଭୃତ୍ୟଦ୍ୱାରା କୌଶଳରେ ଆନୀତ କୂପୋଦକ ଅଟେ । ଅଉ ପାଠକମାନେ ଭଡ଼ା ଗୋଲେସ୍ତାନ୍ କିତାପକୁ କୋରାନ ସରିଫ୍ ବୋଲି ସର୍ଦ୍ଦାର ଖାଁ ସ୍ପର୍ଶ କରିଥିଲେ ।'

ଇତିହାସ ପ୍ରତି ଯଥାସମ୍ଭବ ଅନୁଗତ୍ୟ ରକ୍ଷାକରି ଏପରି ଇତିହାସଧର୍ମୀ ଉପନ୍ୟାସ ରଚନା କରିବା ବଡ଼ ଦୁରୁହ ବ୍ୟାପାର ।

ଅଲ୍‌ବର୍ଦ୍ଦିଖାଁଙ୍କ ଗାର୍ହସ୍ଥ୍ୟ ଜୀବନର ଅଭ୍ୟାସ ଦେବାକୁ ଯାଇ ଶ୍ରୀ ଦତ୍ତ ମହାଶୟ ତାଙ୍କ ଇତିହାସରେ ଅମ୍ଭମାନଙ୍କୁ ଯେଉଁ ଧାରଣା ଦେଇ ଅଛନ୍ତି, ଫକୀରମୋହନ ଏ ବହି ପ୍ରକାଶ ପାଇବାର ପ୍ରାୟ ୪୦ ବର୍ଷ ଅଗରୁ ନବାବଙ୍କ ବ୍ୟକ୍ତିଗତ ଚରିତ ସମ୍ବନ୍ଧରେ ସେହି ଉପସଂହାରରେ ଉପନୀତ ହୋଇଥିଲେ । ଦତ୍ତ ଅଲ୍‌ବର୍ଦ୍ଦିଙ୍କର ସ୍ନେହାନୁକମ୍ପା ଓ ଉଦାର ବଦାନ୍ୟତାର ବିବରଣୀ ଦେବାକୁ ଯାଇ ଲେଖିଅଛନ୍ତି, "Alivardi entertained kind feelings for his relatives, officers and ordinary servants, and often rewarded them bountifully. He had a soft corner in his heart……." *

କ୍ଳାନ୍ତ, ଶ୍ରାନ୍ତ, ଓ ଅବସାଦନପୀଡ଼ିତ ଅଲବର୍ଦ୍ଦି ମରହଟ୍ଟାଙ୍କ ଦ୍ୱାରା ଲଣ୍ଡଭଣ୍ଡ ହୋଇ ଯେଉଁ ଦିନ ନିସ୍ତବ୍ଧ ନିଶୀଥରେ ନିଜର ପ୍ରାଣ ଓ ମାନମର୍ଯ୍ୟାଦା ରକ୍ଷିବା ନିମନ୍ତେ ଦୌହିତ୍ର ସିରାଜ ସହିତ ମୁସ୍ତାଫାଖାଁଙ୍କ ନିକଟକୁ ଯାଇଥିଲେ, ସେହି ବିଷାଦ-ଗମ୍ଭୀର ସଙ୍କଟମୟ ମୁହୂର୍ତ୍ତରେ ଅମ୍ଭେମାନେ ତାଙ୍କର ଏହି ସ୍ନେହ, ଅନୁକମ୍ପା ଓ ଉଦାରତାର ପରିଚୟ ପାଉ । ଅଲ୍‌ବର୍ଦ୍ଦି ସେ ଦିନ କାତରତା-ବିନତ କଣ୍ଠରେ ମୁସ୍ତାଫାଖାଁଙ୍କୁ କହିଥିଲେ—"ମୁଁ ଯେବେ କେବେ କିଛି ତୁମ୍ଭର ଉପକାର କରିଥାଏ, ଅଥବା କିଛି ନହେଉ, ତୁମ୍ଭେ ନିଜ ଉଦାରତା ଗୁଣରେ ମୋହର ଅପରାଧ ଯେବେ ମାର୍ଜନା କରିପାର, କାଟାୟ ଗୌରବ ରକ୍ଷା କରିବାକୁ ଯେବେ ତୁମ୍ଭର ଇଚ୍ଛା ଥାଏ, ତେବେ ଆସ, କୋରାଣ ସରିଫ୍ ସ୍ପର୍ଶ କରି ବୋଲ

* Dutta—Alivardi and his Times—p. 171.

'ମୋତେ ତ୍ୟାଗ କରିବ ନାହିଁ' ।" ଆଉ ତାଙ୍କର, ସେହି ସ୍ନେହାନୁଲିପ୍ତ ଉଦାର ବଦାନ୍ୟତାର ଚିହ୍ନ ଦେଖୁଁ ଭାସ୍କର ପଣ୍ଡିତଙ୍କ ହତ୍ୟାପରେ, ଯେତେବେଳେ ସେହି ରକ୍ତାକ୍ତ ଦୃଶ୍ୟପଟର ଉତ୍ତୋଳନ ପରେ ଆମେ ଦେଖିବାକୁ ପାଉ 'ବର୍ଗି-ବଧ-ସାଧନ ପରେ ନବାବ ଲମ୍ଫ ପ୍ରଦାନ ପୂର୍ବକ ସିଂହାସନରୁ ଓହ୍ଲାଇ ଆସି ସପ୍ରେମରେ ହାବିଲଦାର ବାଦଲସିଂହକୁ ଆଲିଙ୍ଗନ କରୁଛନ୍ତି । ଦ୍ୱିତୀୟ ଯୁବକ (ପାନରି ବେଶଧାରୀ ପତି-ବିରହିତା ଲଛମା) ଆଲିଙ୍ଗନ କରିବାକୁ ଯାଉଥିଲେ, ମାତ୍ର ସେ ଲୋକ ସଲଜ୍ଜଭାବରେ କୁର୍ନିଶ କରି ଅପସୃତ ହେଲା ।' ଆଲିଙ୍ଗନର ଦୃଶ୍ୟ ପରିବର୍ତ୍ତିତ ହୋଇ ସକିୟୁ ବଦାନ୍ୟତା ଓ ପୁରସ୍କାର ପ୍ରଦାନର ଦୃଶ୍ୟପଟ ଉତ୍ତୋଳିତ ହେଲା । ପାଠକ-ଦର୍ଶକ ଉପନ୍ୟାସର ପ୍ରଶସ୍ତ ପ୍ରେକ୍ଷାଳୟରେ ଦେଖିବାକୁ ପାଇଲା—ନବାବ ଭାସ୍କର ପଣ୍ଡିତଙ୍କ ପ୍ରାଣବିନାଶକାରୀ ବାଦଲକୁ ଆନନ୍ଦରେ ଅର୍ପଣ କରୁଛନ୍ତି କୃତଜ୍ଞତାସୂଚକ ଖିଲାତ-ରିକୋପାଧି ସହିତ ମେଦିନୀପୁର ଜିଲା ଅନ୍ତର୍ଗତ ବଣ ବିଷ୍ଣୁପୁର ପରଗଣା । ସେତିକି ଦେଇ ସନ୍ତୁଷ୍ଟ ନହୋଇ ବାଦଲସିଂହକୁ କହୁଛନ୍ତି, "ଆଉ ଯେବେ କିଛି ପ୍ରାର୍ଥନା ଥାଏ, ପ୍ରକାଶ କର ।" ବାଦଲସିଂହର ଆଉ କୌଣସି ପ୍ରାର୍ଥନା ନାହିଁ ଶୁଣି ନବାବ ପାନରିକୁ ପଚାରିଲେ, "ଆରେ ଛୋକରି, ତୁ ଖିଲାତ ପାଇବାର ଯୋଗ୍ୟ । କଣ ତୋର ଇଚ୍ଛା ?" ପାନରି ଇଚ୍ଛା କରିଥିଲେ ନବାବ ତାଙ୍କ ଉପରେ ଆଶାତୀତ ସୌଭାଗ୍ୟ ଅଜାଡ଼ି ଦେଇଥାନ୍ତେ । କିନ୍ତୁ ପାନରି ଏତିକି ମାତ୍ର ପ୍ରାର୍ଥନା କଲା—"ମୋ ଭଗିନୀ ସହିତ ଏହି ହାବିଲଦାରର ବିବାହ ଦିଆଯାଉ ।"

କାତିପୃତାବୋଧର ଉଦ୍ଦୀପନା 'ଲଛମା'ର ପ୍ରତି ପୃଷ୍ଠାରେ । ଦେଶାତ୍ମବୋଧର ଅନ୍ତଃପ୍ରେରଣାରୁ ତ ଫକୀରମୋହନଙ୍କର ସାହିତ୍ୟ

ସୃଷ୍ଟି । ମନେ ହୁଏ, ମରହଟ୍ଟା ତଥା ଇଂରେଜ ଅଧିକାର ପୂର୍ବରୁ ଭାରତ ତଥା ଓଡ଼ିଶାର ନଗୀରବୋଜ୍ଜ୍ୱଳ ଇତିହାସର ପୃଷ୍ଠା ପାଠକ-ସମ୍ମୁଖରେ ଉଦ୍‌ଘାଟନ କରି ଦେଖାଇଦେବା 'ଲଛମା' ଉପନ୍ୟାସ ପ୍ରଣୟନର ମୌଳିକ ପ୍ରେରଣା । ଜଣେ ସମାଲୋଚକ ଯଥାର୍ଥ କହିଅଛନ୍ତି—"ଇତିହାସର ଲଜ୍ଜା ଉପନ୍ୟାସର ଗୌରବ ।" ଇତିହାସର କଳଙ୍କମୟ ଚରିତ୍ର ଓ ବହୁନିନ୍ଦିତ ଘଟନାକୁ ଜୀବନ୍ତ ଭାବରେ ଚିତ୍ରଣ କରି ଔପନ୍ୟାସିକମାନେ ସାହିତ୍ୟର ଗୌରବ ବୃଦ୍ଧି କରନ୍ତି । କିନ୍ତୁ ସ୍ୱଦେଶପ୍ରୀତିର ଉଚ୍ଛ୍ୱସିତ ଉନ୍ମାଦନାରେ ଭାସିଯାଇ ଅନେକ ଐତିହାସିକ ବର୍ତ୍ତମାନ ଐତିହାସିକ ସତ୍ୟକୁ ବିକୃତ କରୁଅଛନ୍ତି, ସ୍ୱଜାତ୍ୟଭିମାନର ପ୍ରେରଣାରେ ଐତିହାସିକ ବ୍ୟକ୍ତିମାନଙ୍କର କଳଙ୍କ-କ୍ଷାଳନର ଚେଷ୍ଟା କରୁଅଛନ୍ତି । କିନ୍ତୁ ଫକୀରମୋହନଙ୍କର ସ୍ୱଜାତ୍ୟଭିମାନ ଏପରି ନଥିଲା ଯେ ସେ କଳାକୁ ଧଳା କରିଦେବେ । ଶିବାଜୀଙ୍କ ଚରିତ୍ର ଚିତ୍ରଣ କରିଥିଲେ, ତାଙ୍କର ସକଳ ସଦ୍‌ଗୁଣ ସତ୍ତ୍ୱେ, ତାଙ୍କଠାରେ ଯେଉଁ "ଶଠେ ଶାଠ୍ୟଂ ସମାଚରେତ୍" ରୂପକ 'ଦୁର୍ନୀତି' ଥିଲା ତାହା କ୍ଷାଳନ କରିବାକୁ ସେ ଚେଷ୍ଟା କରିନଥାନ୍ତେ । ସ୍ୱଦେଶପ୍ରୀତି ଗୋଟେ କ୍ଷଣିକ ପ୍ରତିକ୍ରିୟା କିମ୍ବା ତରଳ-ତରଙ୍ଗିତ ଏକ ସହଜ ଭାବପ୍ରବଣତା ନୁହଁ । ଏହାର ଭୂମି ବିସ୍ତୃତ—ଏ ମହୀରୁହର ଚେର ଦୃଢ଼-ପ୍ରୋଥିତ, ଏହା ସତ୍ୟାଶ୍ରୟୀ ଏବଂ ଜନକଲ୍ୟାଣବହ । ତେଣୁ ଇତିହାସର ଯାହା ଲଜ୍ଜା ତାକୁ ସେହିପରି ଚିତ୍ର କରିବାରେ ଦୋଷ କଣ ? ସୁତରାଂ ଫକୀରମୋହନ ରାୟଗୁରୁଙ୍କ ମୁହଁରେ ମରହଟ୍ଟା ତଥା ସମଗ୍ର ହିନ୍ଦୁ ଜାତିର ଯେଉଁ ତିକ୍ତ ସମାଲୋଚନା କରିଅଛନ୍ତି, ତାହା ଯଥାର୍ଥ, ଏବଂ ତାଙ୍କର 'ସ୍ଥିତପ୍ରଜ୍ଞ' ସ୍ୱଦେଶପ୍ରୀତିର ନିଦର୍ଶନ । ସେଥିରେ ହିନ୍ଦୁମାନଙ୍କୁ ପାଦ୍ରୀମାନଙ୍କଠାରୁ ନୈତିକତା ଓ

ଆଧ୍ୟାତ୍ମିକତା ଦିଗରୁ ନ୍ୟୂନରୂପେ ପ୍ରତିପାଦନ କରିବାର ଅସୀମ ସାହସିକତା ଫକୀରମୋହନଙ୍କର ଥିଲା । ତେଣୁ ମରହଟ୍ଟାଦୃତ ମାଲବୀରଙ୍କ ପ୍ରସ୍ତାବରେ ଘୋର ଅସମ୍ମତି ପ୍ରକାଶ କରି ଓ ଅଧଃପତିତ ହିନ୍ଦୁମାନଙ୍କର ଘୋର ନିନ୍ଦାବାଦ କରି ରାମ୍ବଗୁରୁ କହିଅଛନ୍ତି, "ମାଲବୀର ଅବଧାନ, ଆପଣ ତ ଜଣେ ସାଧାରଣ ଶାସ୍ତ୍ର ବ୍ୟବସାୟୀ, ବୋଲିବା ହୁଅନ୍ତୁ ସେହି ପୁରୋହିତ ପାଦୁଡ଼ି ଯାହା କହିଲି ତାହା କି ଦର୍ଶନଶାସ୍ତ୍ରର ଅନୁଶାସନ ନୁହେ ? ଆମ୍ଭେ ସେହି ପାଦୁଡ଼ିର କଥା ଶୁଣି ସ୍ଥିର କରିଛୁ ଈଦୃଶ ସତ୍ୟ-ଧର୍ମ-ବିବର୍ଜିତ ଜାତି (ମରହଟ୍ଟା) ରାଜପଦର ଅଯୋଗ୍ୟ । 'ଏକ ଏବ ପୁରା ଦେବଃ ପ୍ରଣବଃ ସର୍ବବାଙ୍‌ମୟଃ' । ହିନ୍ଦୁ ଜାତି ଯେଉଁ ଦିବସରୁ ଏହି ବୈଦିକ ବୀଜମନ୍ତ୍ର ବିସ୍ମୃତ ହୋଇ ନାନା ପ୍ରକାର କାଳ୍ପନିକ ଉପଧର୍ମର ଅନୁଷ୍ଠାନରେ ପ୍ରବୃତ୍ତ ହୋଇଅଛନ୍ତି, ସେହି ଦିବସରୁ ଏମାନଙ୍କର ପତନ ଆରମ୍ଭ ହୋଇଛି ।" ଫକୀରମୋହନଙ୍କ ସହିତ ଏ ବିଷୟରେ କାହା କାହାର ମତାନୈକ୍ୟ ଘଟିପାରେ । ସେ ଅଲଗା କଥା । ଏଠାରେ ସାହିତ୍ୟକର ଯେଉଁ ନିର୍ଭୀକ ଓ ଉଦ୍ଦୀପନାପୂର୍ଣ୍ଣ ସତର୍କବାଣୀ, ନିଜ ଜାତିର ଅଧଃପତନରେ ପ୍ରାଣର ଏହି ଯେଉଁ ଦୁଃସହ ଜ୍ୱାଳା, ଏବଂ ସେହି ଭାବାବେଗର ଏ ଯେଉଁ ଅକପଟ, ଅକୁଣ୍ଠ, ତୀକ୍ଷ୍ଣାଗ୍ର ବାକ୍‌ବୈଚିତ୍ର୍ୟରହିତ ନିରାଭରଣ ଅଭିବ୍ୟକ୍ତି, ସେଇ ତ ଇତିହାସର ଲଙ୍କାକୁ ଉପନ୍ୟାସର ଗୌରବରେ ରୂପାନ୍ତରିତ କରିଅଛି—ଜାତିର ନିସ୍ତରଙ୍ଗ, ନିଷ୍କମ୍ପ ଓ ଅନୁଦ୍‌ବେଳ ପ୍ରାଣରେ ଅସ୍ଥିରତା, ଅତୃପ୍ତି ଓ ଆତ୍ମଚେତନାର ସୁକୁମାର କମ୍ପନ ସୃଷ୍ଟି କରିବା ପାଇଁ ରାମ୍ବଗୁରୁଙ୍କର ଏହି ବାଣୀ କଣ ଯଥେଷ୍ଟ ନୁହେଁ ?

ଏହି ମହାଭାରତୀୟ ଭବରୁ ଫକୀରମୋହନ ଖସି ଆସି ଯେଉଁ ଶୂନ୍ୟ ସ୍ଥାନ ସୃଷ୍ଟି କରିଛନ୍ତି, ତାହା ପୂରଣ କରିଛି ତାଙ୍କର ବଳିଷ୍ଠ

ଉତ୍କଳୀୟ ପ୍ରୀତ। 'ଲଛମା' ଉପନ୍ୟାସ ଯେଉଁ ଐତିହାସିକ ପୃଷ୍ଠଭୂମି ଉପରେ ରଚିତ, ତାହା ପ୍ରଧାନତଃ ଉତ୍କଳ ଦେଶର ନୁହେଁ। ଯେଉଁମାନେ ଗ୍ରହାକାନନ୍ଦରେ ତୀର୍ଥଯାତ୍ରା ସମୟରେ ବିପନ୍ନ ଓ ବିଚ୍ଛିନ୍ନ ହେଲେ ସେମାନେ ପଶ୍ଚିମା ଯାତ୍ରୀ। ଭାସ୍କର ପଣ୍ଡିତଙ୍କ ହତ୍ୟା ଘଟିଛି ମୁର୍ଶିଦାବାଦ ନିକଟରେ। ବାଦଲସିଂହ ଓ ପାନଟ୍ରଙ୍କର ଭୀଷ୍ମ ପ୍ରତିଜ୍ଞା ପୂର୍ଣ୍ଣ ହୋଇଛି ସେହି ମୁର୍ଶିଦାବାଦ ନିକଟରେ। 'ଅପୂର୍ବ ମିଳନ' ଘଟିଛି ଗୟା କ୍ଷେତ୍ରରେ। କିନ୍ତୁ ଘଟନାଚକ୍ରରେ ଉତ୍କଳ ଫକୀରମୋହନଙ୍କର ଉପନ୍ୟାସର ଉପଜୀବ୍ୟ ଅନିବାର୍ଯ୍ୟ ଭାବରେ ହୋଇ ପଡ଼ିଛି। ଗ୍ରହାକାନୀର ସ୍ଥାନ ହେଉଛି ସୁବର୍ଣ୍ଣରେଖାର ଦକ୍ଷିଣରେ ଥିବା ଗୋଡ଼ଖାଲ। ଅନାଥା ଲଛମା ଆଶ୍ରୟ ପାଇଛି ଆକସ୍ମିକ ଭାବରେ ରାଇବଣିଆ ଦୁର୍ଗେଶ୍ୱରଙ୍କ ଦୁର୍ଗରେ। ତେଣୁ ଓଡ଼ିଶାର କଥା ଉଠିଛି। ଏବଂ ସେତେବେଳେ ଓଡ଼ିଶା ଘୋର ରାଜନୈତିକ ସଙ୍କଟର ସମ୍ମୁଖୀନ। ସେ ଓଡ଼ିଶାର ପତନ-କାଳ। ଏଣେ ବଙ୍ଗ ନବାବ, ତେଣୁ ବର୍ଗିଙ୍କ ଅତ୍ୟାଗ୍ଚରରେ ସେ ବ୍ୟତିବ୍ୟସ୍ତ। ହିନ୍ଦୁ ମରହଟ୍ଟାଙ୍କୁ ଛାଡ଼ି ସେ ପଠାଣ ନବାବଙ୍କୁ ସାହାଯ୍ୟ ଦେବାକୁ ପ୍ରୟାସୀ। ବର୍ଗିର ଲୁଣ୍ଠନ ଓ ଅତ୍ୟାଗ୍ଚରରେ ଦେଶ ଲଣ୍ଡଭଣ୍ଡ। ତଥାପି ରାଇବଣିଆ ଦୁର୍ଗେଶ୍ୱର ଯେପରି ଭାବରେ ହିନ୍ଦୁ ହୋଇ ସମଗ୍ର ଭାରତର ଦୁସ୍‌ମନ୍ ଅତ୍ୟାଗ୍ଚାରୀ ମରହଟ୍ଟାମାନଙ୍କ ବିରୁଦ୍ଧରେ ବୀରତ୍ୱ ସହକାରେ ନିଜ ଦୁର୍ଗମଧ୍ୟରେ ଯୁଦ୍ଧକଲେ, ପ୍ରବଳ ପ୍ରତାପ ବେହେରପତିଙ୍କୁ ଯେପରି ଗୋଟିଏ ଫୁଙ୍କାରରେ ଉଡ଼ାଇଦେବାକୁ ଚେଷ୍ଟା କରୁଥିଲେ, ଏବଂ ଯେତେବେଳେ ପରାସ୍ତ ହୋଇ ମରହଟ୍ଟାମାନଙ୍କ ହାତରେ ବନ୍ଦୀସ୍ୱରୂପ ବଗୃଗଲୟକୁ ଅଣାହୋଇ, ପ୍ରାଣଦଣ୍ଡବିଧାତା ଭାସ୍କର ପଣ୍ଡିତଙ୍କୁ ଉଦ୍ଦୀପନାମୟୀ ଭାଷାରେ କହିଲେ, "ଦୋଷ ପାଇଁ କ୍ଷମା ପ୍ରାର୍ଥନା କରିବି ?" କ୍ଷମା ?

କ୍ଷମା ? କିଏ ବିଗୁରିକ ? କାହାଠାରେ କ୍ଷମା ପ୍ରାର୍ଥନା କରିବୁ ? ସେତେବେଳେ ଯେ କୌଣସି ପାଠକର ପ୍ରାଣ ଜାତୀୟ ସ୍ପନ୍ଦନରେ ଚଞ୍ଚଳ ହୋଇ ଉଠେ । ଶୀତଳ ରକ୍ତରେ ଉନ୍ମାଦନାର ଉତ୍ତାପ ସଞ୍ଚାରିତ ହୁଏ । ଓଡ଼ିଶାର ଲୁପ୍ତ ଗୌରବ ସ୍ମୃତିପଥରେ ଆରୂଢ଼ ହୋଇ ଚକ୍ଷୁକୁ ସଜଳ କରିଦିଏ । ମୃତ୍ୟୁକୁ ଭୟ ନକରି ସେଦିନ ମାନଧାତା କହିଥିଲେ "ମୁଁ ରାଜଦ୍ରୋହୀ ? ରାଜା କିଏ ? ଗଜପତି ଗୌଡ଼େଶ୍ୱର ଚଳନ୍ତି_ବିଷ୍ଣୁ, ରାଜରାଜେଶ୍ୱର । ଉତ୍କଳର ସମସ୍ତ ଦୁର୍ଗପତି, ସମସ୍ତ ଖଣ୍ଡାୟତ ରାଜରାଜେଶ୍ୱର ଗଜପତି ଗୌଡ଼େଶ୍ୱରଙ୍କ ଦତ୍ତ ସମ୍ପତ୍ତିରେ ପ୍ରତିପାଳିତ । ଖଣ୍ଡାଏତମାନେ ରାଜଦ୍ରୋହୀ ନୁହନ୍ତି ।" କିନ୍ତୁ ଏ ଜାତୀୟଭିମାନ ଓ ନିର୍ଭୀକତାର ପୁରସ୍କାର ତାଙ୍କୁ ଯାଙ୍ଗେ ସାଙ୍ଗେ ଭାସ୍କରଙ୍କ ଦରବାରରେ ମିଳିବାରେ ବିଳମ୍ବ ହେଲା ନାହିଁ । ପାଷାଣ-କଠୋର ଭାସ୍କର ସଭାସଦ୍‌ମାନଙ୍କ ସମ୍ମୁଖରେ ତାଙ୍କୁ ମୃତ୍ୟୁଦଣ୍ଡ ଦେଲେ । "ସଭାସ୍ଥ ସମସ୍ତେ ନୀରବ ନିଃଶ୍ୱାସ ପକାଇ ମସ୍ତକ ଅବନତ କଲେ । ମାନଧାତା ଅଚଳ ଭାବରେ ଉଭା ହୋଇ ଇଷ୍ଟଦେବ ନାମ ସ୍ମରଣରେ ନିମଗ୍ନ । ଘାତକ ଉପସ୍ଥିତ । ସେହି ମୁହୂର୍ତ୍ତରେ ରାଇବଣିଆ ବୀର ବଂଶର ଶେଷ ପୁରୁଷ ସହିତ ନାମ ବିଲୁପ୍ତ ହେଲା"—ମାନଧାତାଙ୍କ ସହିତ ଓଡ଼ିଶାର ଗୌରବ-ରବି ଅସ୍ତମିତ ହେଲା !

କିନ୍ତୁ ଗୋଟିଏ ପ୍ରଶ୍ନ ଏ କ୍ଷେତ୍ରରେ ବାରମ୍ବାର ସତର୍କ ପାଠକ ଚିତ୍ତକୁ ଉନ୍ମାଦିତ କରେ—କେଉଁ ଭାବାଦର୍ଶର ଭିତ୍ତିଭୂମି ଉପରେ ଏହି ଐତିହାସିକ ଉପନ୍ୟାସ ପ୍ରତିଷ୍ଠିତ ? କେଉଁ ପ୍ରେରଣାର ମଧୁର ମୋହନ ଆବେଶରେ ସାମାଜିକ ଉପନ୍ୟାସକାର ଫକୀର-ମୋହନ ଏହି ଉପନ୍ୟାସରେ ହାତ ଦେଲେ ? ଓଡ଼ିଆ ସାହିତ୍ୟରେ "ପ୍ରଭାତର ସୂର୍ଯ୍ୟୋଦୟ ବିକାଶ କରି ଅମ୍ଭମାନଙ୍କ ହୃଦପଦ୍ମକୁ ଏପରି

ଭାବରେ ଯେ ଉଦ୍‌ଘାଟିତ କଲେ", ତାହାର ଏକମାତ୍ର କାରଣ କଣ "ସାମନ୍ତବାଦୀ ସଭ୍ୟତାର ଏକ ପତନର ଇତିହାସ ରଚନା କରିବା ?" ଏ ପ୍ରଶ୍ନର ଉତ୍ତର ବଡ଼ ଦୁରୂହ ।

'ରାଜସିଂହ' ଉପନ୍ୟାସର ଭୂମିକାରେ ବଙ୍କିମଚନ୍ଦ୍ର ଲେଖିଥିଲେ, "ହିନ୍ଦୁମାନଙ୍କର ବାହୁବଳ ମୋର ପ୍ରତିପାଦ୍ୟ । ଏହି ବାହୁବଳ ମାତ୍ର ମୋର ପ୍ରତିପାଦ୍ୟ ହେଉଥିବାରୁ ଉପନ୍ୟାସର ଅଙ୍ଗହାନି ହୋଇପାରେ ।" ଫକୀରମୋହନଙ୍କର ସମସାମୟିକ 'ମହାରାଷ୍ଟ୍ର ଜୀବନ-ପ୍ରଭାତ' (୧୮୭୮) ଓ 'ରାଜପୁତ ଜୀବନ ସନ୍ଧ୍ୟା' (୧୮୭୯) ପ୍ରଭୃତି ଐତିହାସିକ ଉପନ୍ୟାସର ପ୍ରଣେତା ସିଭିଲିୟାନ୍ ରମେଶ-ଚନ୍ଦ୍ର ଦତ୍ତ (୧୮୪୮-୧୯୦୯) ତାଙ୍କର ସୃଷ୍ଟି-ପ୍ରେରଣାର ଉତ୍ସ ସନ୍ଧାନ କରିବାକୁ ଯାଇ ଲେଖିଥିଲେ, "ସାର ୱାଲଟର୍ ସ୍କଟ୍ ଚାଳିଶି ବର୍ଷ ପୂର୍ବେ ମୋର ଅନ୍ତରର ଗ୍ରନ୍ଥକର୍ତ୍ତା ଥିଲେ । ମୁଁ ତାଙ୍କର ଉପନ୍ୟାସ ପଢ଼ି କେତେ ଦିନରାତି କଟାଇ ଦେଇଛି ତାର ଠିକଣା ନାହିଁ । ମୁଁ ସେହି ଦିନଯାକ କଳ୍ପନାରେ ତାଙ୍କର ଐତିହାସିକ ଦୃଶ୍ୟମାନଙ୍କ ମଧ୍ୟରେ ମଜ୍ଜି ରହୁଥିଲି । ସ୍କଟ୍ ବାସ୍ତବରେ ଇଉରୋପର ମଧ୍ୟଯୁଗର ଗୋଟିଏ ଜୀବନ୍ତ ଚିତ୍ର ଅଙ୍କନ କରିଯାଇ ଅଛନ୍ତି । କିନ୍ତୁ ଏ କଥା ମୁଁ କହିପାରୁ ନାହିଁ, ସେହି ସ୍କଟ୍ ମୋର ଇତିହାସ ପ୍ରତି ଅଭିରୁଚି ଆଣିଦେଲେ, ନା ମୋର ଇତିହାସ ପ୍ରତି ମମତା ମୋତେ ସ୍କଟ୍-ପ୍ରିୟ କରିଥିଲା । କିନ୍ତୁ ଆଉ ଗୋଟିଏ ଗ୍ରନ୍ଥ ଯାହା କି ପ୍ରଥମେ ମୋତେ ମନ୍ତ୍ରମୁଗ୍‌ଧ କରି ପକାଇଥିଲା ତାହା ହେଉଛି **Gibbon's "Roman Empire."** * ଏହି ଉକ୍ତିରୁ ରମେଶ ଦତ୍ତଙ୍କର ସମାଲୋଚକମାନେ ସୂତ୍ର ବାହାର କଲେ—

---

* ଉପନ୍ୟାସେର କଥା—ଦେବୀପଦ ଭଟ୍ଟାଚାର୍ଯ୍ୟ—ପୃ. ୧୮୧-୧୮୨

"ସ୍କଟ୍ ଓ ଗିବନ ଅଧ୍ୟୟନଜାତ ପ୍ରବଣତା ରମେଶଚନ୍ଦ୍ରଙ୍କର ସାହିତ୍ୟସୃଷ୍ଟିର ମୂଳ ପ୍ରେରଣା—ତା ଉପରେ ଥିଲା ବଙ୍କିମଚନ୍ଦ୍ରଙ୍କର ଉପନ୍ୟାସ, ବଙ୍କିମଙ୍କର ଉତ୍ସାହ ଓ ନିର୍ଦ୍ଦେଶ ।" ଫକୀରମୋହନଙ୍କ ଉପରେ ସେପରି ପ୍ରଭାବ କିଣ ପଡ଼ିପାରିଥାଏ ? ସ୍କଟଙ୍କର ଉପନ୍ୟାସ ସେ ପଢ଼ି ନାହାନ୍ତି—ଏହା ନିଶ୍ଚିତ । ବଙ୍କିମଚନ୍ଦ୍ରଙ୍କଠାରୁ ରମେଶ-ଚନ୍ଦ୍ର ପ୍ରେରଣା ପାଇଲା ପରି ସେ ଉମେଶ ସରକାର କିମ୍ବା ରାମଶଙ୍କର ରାୟଙ୍କଠାରୁ କିଛି ପ୍ରେରଣା ପାଇନାହାନ୍ତି, ସତ୍ୟ, କିନ୍ତୁ ଐତିହାସିକ ଉପନ୍ୟାସର ପରମ୍ପରାର ଧାରା ଅବ୍ୟାହତ ରଖିଛନ୍ତି । ତେବେ କିଣ ଅଲିବର୍ଦ୍ଦିଙ୍କର ଇତିହାସ ସେ ଅଣିଛନ୍ତି ବଙ୍ଗଳାରେ ରଚିତ ରାଖାଲଦାସ ଗାଙ୍ଗୁଲିଙ୍କର 'ପାଷାଣମୟୀ' (୧୮୭୯) ଐତିହାସିକ ଉପନ୍ୟାସରୁ, ଯାହାର ଉପଜୀବ୍ୟ ବିଷୟ ହେଉଛି—ଅଲିବର୍ଦ୍ଦିଙ୍କ ରାଜତ୍ୱ କାଳରେ ବଙ୍ଗରେ ବର୍ଗି-ଆକ୍ରମଣ ସହିତ ସଂପୃକ୍ତ ପ୍ରେମ-କାହାଣୀ । କିନ୍ତୁ ଏ ବହିରୁ ସେ ଲଛମା ଲେଖିବାର ପ୍ରେରଣା ପାଇଥିଲେ, ଏବଂ ଏହାରି ଅନୁକରଣରେ ସେ ଏ କାର୍ଯ୍ୟରେ ଅଗ୍ରସର ହୋଇଥିଲେ, ଐତିହାସିକ ଉପନ୍ୟାସ ରଚନାରେ ସେ ଏତେ ଅମ୍ଳାନ କୃତିତ୍ୱ ଲଭ କରି ପାରିନଥାନ୍ତେ । କାରଣ ବଙ୍ଗୀୟ ସମାଲୋଚକଙ୍କ ମତରେ "ପ୍ରାକ୍-ବଙ୍କିମ ଯୁଗର ଏ ସକଳ ଉପନ୍ୟାସ ଗ୍ରନ୍ଥ ମଧ୍ୟରେ ଐତିହାସିକ ଉପନ୍ୟାସ ରଚନାର ବ୍ୟର୍ଥ ପ୍ରୟାସ ହିଁ ଲିପିବଦ୍ଧ ହୋଇଅଛି ।"

ଅନୁମାନରୁ ଉପଲବ୍ଧି ହୁଏ, ଏହି ଉପନ୍ୟାସ ରଚନାର ଅନ୍ତରାଳରେ ଥିଲା ଫକୀରମୋହନଙ୍କର ଗୋଟିଏ ଜୀବନାଦର୍ଶ, ଗୋଟିଏ ସମୁଜ୍ଜ୍ୱଳ ଦୃଷ୍ଟିଭଙ୍ଗୀ, ତାଙ୍କ ବ୍ୟକ୍ତିଗତ ଅନୁଭୂତିର ଗୋଟିଏ ପରମ ବିଭୂତି । ସେଇଟି ହେଉଛି ସ୍ୱାମୀ ସ୍ତ୍ରୀ ମଧ୍ୟରେ ଥିବା ବିଶୁଦ୍ଧ ଓ ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରଣୟ । ଫକୀରମୋହନ ଜୀବନରେ

ଏହାର ସ୍ୱାଦୁ ଆସ୍ୱାଦନ କରି ସେଥିରୁ ମୃତ୍ୟୁର ୨୫ ବର୍ଷ ପୂର୍ବରୁ ସେ ବଞ୍ଚିତ ହୋଇଥିଲେ । ତାଙ୍କ ଆତ୍ମଚରିତରୁ ଜଣାଯାଏ ଆଦର୍ଶ ପତ୍ନୀ କୃଷ୍ଣକୁମାରୀଙ୍କୁ ହରାଇ ତାଙ୍କର ଜୀବନ ଶୂନ୍ୟମୟ ହୋଇ ପଡ଼ିଥିଲା । ସେହି ସର୍ବସୁଖମୟ ନିଷ୍କପଟ ଦାମ୍ପତ୍ୟ ପ୍ରେମରୁ ବଞ୍ଚିତ ହୋଇ ତାଙ୍କର ଜୀବନ ଯେପରି ହାହାକାରମୟ ହୋଇଥିଲା, ତାହାର ମର୍ମବିଦାରୀ ବର୍ଣ୍ଣନା ସେ ଅନେକ କବିତାରେ ଦେଇ-ଅଛନ୍ତି । "ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ" କବିତାର ଉପଲକ୍ଷ୍ୟ ହେଉଛନ୍ତି ବୋଧହୁଏ ସେହି ସ୍ୱର୍ଗତା କୃଷ୍ଣକୁମାରୀ । କି କାରୁଣ୍ୟ ରସରେ ପ୍ଲାବିତ କରି କବି ସେ କବିତାଟି ରଚନା କରିଅଛନ୍ତି, ତାହା କଥାରେ ପ୍ରକାଶ କରି ହେଉନାହିଁ । ଶୋକାଚ୍ଛନ୍ନ ହୃଦୟର କରୁଣ ରାଗିଣୀରେ ତାହା ଝଙ୍କାରିତ । ତାହାର ପ୍ରତ୍ୟେକ ଶବ୍ଦ କବିଙ୍କର ଅଶ୍ରୁ-ଶୋଣିତରେ ରଚିତ । କିପରି ଦୁଃଖାନୁଭୂତିକୁ ସତେ ଯେପରି ଉଜାଡ଼ି କରିଦେଇ ଏ କବିତାରେ ଲେଖିଛନ୍ତି—

ହୃଦୟ କଷଟିଶିଳେ କାଞ୍ଚନର ରେଖା,
ନୀଳାକାଶେ ଇନ୍ଦ୍ରଧନୁ ଚିତ୍ରମୟ ଲେଖା ।
ବେଦରୁ ଗାୟତ୍ରୀ ମନ୍ତ୍ର କେ ଦେଲା ଲିଭାଇ
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ବେଦ ଓ ଗାୟତ୍ରୀ ମନ୍ତ୍ର ମଧ୍ୟରେ ସମ୍ପର୍କ ଯେମିତି ଅବିଚ୍ଛେଦ୍ୟ, ଏବଂ ଏଥିମଧ୍ୟରେ ପୂତପାବନତାର ଯେପରି ଗୋଟିଏ ଚିତ୍ତସମ୍ମୋହନ-କାରୀ ମୂର୍ତ୍ତି ଅଛି, କବି ଓ ତାଙ୍କ ସ୍ନେହସହାନୁଭୂତିଶୀଳା ପତ୍ନୀଙ୍କ ମଧ୍ୟରେ ଯେଉଁ ସମ୍ପର୍କ ଥିଲା, ତାହା ଥିଲା ସେହିପରି ଅଚ୍ଛେଦ୍ୟ— ସେହିପରି ପାବନ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କବିଙ୍କର ପ୍ରାଣ ସେଥିପାଇଁ ଆକୁଳ ହେଉଥିଲା । 'ଅବସରବାସରେ'ର 'ଗୃହଲକ୍ଷ୍ମୀ' କବିତାରେ ସେହି ଦାରୁଣ ଦୁଃଖର ମର୍ମସ୍ପର୍ଶୀ ଅଭିବ୍ୟକ୍ତି—

ସତେ ସତେ ଯାଇଛୁ କି ଭୁଲି
ହୃଦୟ ଭଣ୍ଡାର କରି ଖାଲି ?
ତାହାର ମୁଁ କଲି କେଉଁ ଦୋଷ ?
ବୋଲି ବୋଲି କପାଁ ଏତେ ରୋଷ ?
ତା ପାଶେ ତ ଥାଇ ନିତି ନିତି
ମୁଁ କି ଗାଇନାହିଁ ପ୍ରେମ-ଗୀତ ?

× × ×

ମୁଁ କି ଯାଇଥିଲି ତାକୁ ଅଣି
ବଳେ ଅସିଥିଲା ଠାକୁରାଣୀ
ତାହାର ସମସ୍ତ ରୂପରାଶି
ସଙ୍ଗେ ସବୁ ଘେନିଗଲା ଭାସି ।

× × ×

ମୋ ନେତ୍ରରେ ଦେଖେ ଯେବେ ଜଳ
ନୟନ ତା ଭରେ ଛଳ ଛଳ
ନିରତେ ଯେ କରୁଥିଲା ଧ୍ୟାନ
ଏବେ ହେଲା ପାଷାଣୀ ସମାନ ।
କେବେ କରି ନାହିଁ ଅବହେଳା
ଭୁଡ଼ାଇଣ ଗଲା ମୋର ଭେଳା ।
କହ ବୋଲି ଅଛୁ ଭୁଲିଯାଇ
କପରି ଅଣିବି ବାହୁଡ଼ାଇ ?
ଯାଇ ସେ ରହିଛୁ ଯେଉଁ ଦେଶେ
ଅବଶ୍ୟ ମୁଁ ଯିବି ତା ଉଦ୍ଦେଶ୍ୟେ ।

ପ୍ରାଣର ଏହି ଅକୁଳ ବିଳାପ ଓ ବେଦନାଗର୍ଭ ମର୍ମବାଣୀ ମଧ୍ୟ ସେ ସ୍ଥିରଚିତ୍ତରେ ପ୍ରକାଶ କରିଛନ୍ତି ତାଙ୍କର 'ମାମୁଁ' ଉପନ୍ୟାସରେ ।

ସେହି ଦାମ୍ପତ୍ୟ ପ୍ରଣୟରୁ ଚିରକାଳ ପାଇଁ ବଞ୍ଚିତ ହୋଇ ବିଧବା ଗୃହମଣି ଦୁଃଖରେ ମୁହ୍ୟମାନା । ଫକୀରମୋହନଙ୍କ ଭାଷାରେ ସ୍ୱାମୀଙ୍କ ହରିଇ "ଗୃହମଣି ଦେଈଙ୍କ ଜୀବନ-ଗ୍ରନ୍ଥି ସମସ୍ତ ଯେମନ୍ତ ଛିନ୍ନଭିନ୍ନ ହୋଇଯାଇଛି । ଇନ୍ଦ୍ରିୟ ସମସ୍ତ ଅନାୟତ୍ତ ଏବଂ କର୍ମକ୍ଷମ । ପୃଥିବୀ ସହିତ ପଦପୁଗଳର ସମ୍ପର୍କ ରହିତ ହେବାପରି ଜଣାଯାଏ ।" ଏ ଦାମ୍ପତ୍ୟ ପ୍ରଣୟର ପବିତ୍ର ସ୍ମୃତିକୁ ହୃଦୟ ସିଂହାସନରେ ଅଭିଷିକ୍ତ କରି ରଖିବା ନିମନ୍ତେ ପୁରୁଷମାନେ ସାଧାରଣତଃ ଏକପତ୍ନୀବ୍ରତ ପାଳନ କରିଥାନ୍ତି । ତେଣୁ 'ଲଛମା'ରେ ପାନିର୍ ଯେତେବେଳେ ନବାବ ଅଲିବର୍ଦ୍ଦିଙ୍କୁ କହିଲା, "ମୋର କିଛି ପାରିତୋଷିକ ଦରକାର ନାହିଁ, ମୋର ଏତିକି ମାତ୍ର ପ୍ରାର୍ଥନା, ମୋ ଭଗିନୀ ସହିତ ଏହି ହାବିଲଦାରଙ୍କ ବିବାହ ଦିଆଯାଉ", ସେତେବେଳେ ହାବିଲଦାର (ଲଛମାର ସ୍ୱାମୀ) ଉତ୍ତର କରିଥିଲା, "ହଜୁର ! ମୋ କସୁର ମାଫ ହେଉ, ମୁଁ ମୋ ସ୍ତ୍ରୀଠାରେ ପ୍ରତିଜ୍ଞା କରି ଏକପତ୍ନୀବ୍ରତ ଗ୍ରହଣ କରିଅଛି । ଅନ୍ୟ ସ୍ତ୍ରୀର ମୁଖାବଲୋକନ କରିବି ନାହିଁ, ଯାବଜ୍ଜୀବନ ମୋ ସ୍ତ୍ରୀକୁ ଧ୍ୟାନ କରିବି ।" ପବିତ୍ର ଦାମ୍ପତ୍ୟ ପ୍ରଣୟର ଉପାସକ ଫକୀରମୋହନ ଯାବଜ୍ଜୀବନ ତାଙ୍କ ଦ୍ୱିତୀୟ ସ୍ତ୍ରୀ କୃଷ୍ଣକୁମାରୀଙ୍କି ଧ୍ୟାନ କରିଥିଲେ । 'ଲଛମା'ର ପ୍ରଧାନ ଉପଜୀବ୍ୟ ବିଷୟ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଥିବା ଦାମ୍ପତ୍ୟ ପ୍ରେମ, ଅନ୍ୟାନ୍ୟ ଐତିହାସିକ ରୋମାନ୍ସ ପରି ଗୁପ୍ତ ପ୍ରେମ, ଗୁରୁଜନଙ୍କୁ ମିଳନର ପ୍ରେମ, ପ୍ରାକ୍‌ବିବାହ ପ୍ରେମ, ବା ଯୁଦ୍ଧଶିବିର ମଧ୍ୟରେ ପ୍ରେମ ନିବେଦନ 'ଲଛମା'ର ଉପଜୀବ୍ୟ ବସ୍ତୁ ନୁହେଁ । ବିଚ୍ଛେଦ-କାତର ବାଦଲସିଂହ ଓ ଲଛମାର ପ୍ରଗାଢ଼ ଦାମ୍ପତ୍ୟ ପ୍ରଣୟ ହିଁ ଏହି ଉପନ୍ୟାସର କେନ୍ଦ୍ର ବିନ୍ଦୁ । ଏହି ଘଟନାକୁ କେନ୍ଦ୍ର କରି ଅନ୍ୟାନ୍ୟ ପ୍ରାସଙ୍ଗିକ ଘଟନାମାନଙ୍କର ଅବତାରଣା । ତା ସହିତ ପ୍ରଧାନ ନ ହେଲେହେଁ ଗୌଣଭାବରେ ଜଡ଼ିତ ହୋଇଛି ଅର୍ଥ

ସଂସ୍କୃତର ଧାରକ ଫକୀରମୋହନଙ୍କ ଜୀବନର ଆଉ ଗୋଟିଏ ଭାବ । ତାହା ହେଉଛି ପିତୃତର୍ପଣ—ପିତୃପିତାମହଙ୍କର ସ୍ମୃତି-ତର୍ପଣ । ହିନ୍ଦୁର ଶ୍ରାଦ୍ଧବିଧାନ ଓ ପିତୃପକ୍ଷ ତର୍ପଣରେ ଅର୍ଥର ଯେଉଁ ସନାତନ ଆଦର୍ଶ ନିହିତ ଅଛି, ତାହା ହେଉଛି ବ୍ୟକ୍ତିର ସଂକୀର୍ଣ୍ଣ ଗଣ୍ଡିରୁ ମୁକ୍ତି ଓ ବ୍ୟାପକ ବିସ୍ତୃତ ପରିବେଶରେ ତା'ର ବ୍ୟାପ୍ତି । ତେଣୁ ତର୍ପଣ କଲାବେଳେ ହିନ୍ଦୁ କେବଳ ତାହାର ପିତୃପୁରୁଷଙ୍କୁ ପାଣି ଦିଏ ନାହିଁ, ଦିଏ ଅପୁତ୍ରିକ ଭୀଷ୍ମ ବର୍ମାଙ୍କୁ, ଦିଏ ପଶୁପକ୍ଷୀଙ୍କୁ, ଦିଏ ପୂର୍ବଜନ୍ମର ଶତ୍ରୁ ଓ ମିତ୍ରଙ୍କୁ । ହିନ୍ଦୁର ଏ ବିଶ୍ୱମୈତ୍ରୀ ଭାବ ତାର ସଂସ୍କୃତିର ଏକ ଜ୍ୱଳନ୍ତ ନିଦର୍ଶନ । ଫକୀରମୋହନ ପ୍ରାଚୀନ ଅଗ୍ରୃଷିମାନଙ୍କର ଏହି ମନ୍ତ୍ରରେ ବିଶ୍ୱାସୀ ଥିଲେ—'ଆତ୍ମା ବୈ ପୁତ୍ରନାମାସି'—ପୁଅର ନାମ ଆତ୍ମଜ । ପିତା ପୁତ୍ର ଅଭିନ୍ନ । ଏପରି ଥିଲେ ପୁଅ ଯେତେ ଯୋଗ୍ୟ ହୋଇପଡ଼ନ୍ତୁ ତାର କ'ଣ ସ୍ୱର୍ଗତ ପିତା ପ୍ରପିତାଙ୍କୁ ଭୁଲିଯିବା ଉଚିତ ? ତର୍ପଣ, ଗୟାରେ ପିଣ୍ଡଦାନ ଓ ଶ୍ରାଦ୍ଧବିଧି—ଏସବୁ କୁସଂସ୍କାର ହୋଇପାରେ । କିନ୍ତୁ ଯେ କୌଣସି ରୂପେ ପିତା ପ୍ରପିତାମହଙ୍କର ସ୍ମୃତିରକ୍ଷା କରିବାକୁ ହେବ । ତା ନହେଲେ ପୁଅ ଝିଅ ଅଯୋଗ୍ୟ ବୋଲି ବିବେଚିତ ହେବେ । ସଂସ୍କାରମୁକ୍ତ ପିତୃତର୍ପଣରେ ଫକୀରମୋହନଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତେଣୁ ପିତୃ-ତର୍ପଣ ଶୀର୍ଷକ କବିତାରେ ସେ ଲେଖିଛନ୍ତି—

"ଆଗଚ୍ଛନ୍ତୁ ମହାଭାଗା ବିଶ୍ୱେଦେବା ବରପ୍ରଦାଃ ।"

"ଆଗଚ୍ଛ, ଆଗଚ୍ଛ, ମୋର ପିତୃଦେବଗଣ
ଆପଣମାନଙ୍କ ପାଇଁ କରିବି ତର୍ପଣ ।
ଯବାଙ୍କୁର, ତିଳପୁଷ୍ପ, ଆତପ ତଣ୍ଡୁଳେ
କରିବି ଭକ୍ତିରେ ପୂଜା ପିତୃଦେବକୁଳେ ।

ଘେନିବେ କି ପୂଜା ମୋର ପିତୃଦେବଗଣ ?
ମାନି ମୁଁ କରିବି ତାଙ୍କୁ ଭକ୍ତିରେ ସ୍ମରଣ ।
ସେମାନଙ୍କ ଯୋଗେ ମୁହିଁ ପାଇଛି ଜୀବନ
କେତେ କଷ୍ଟ ସହି କରିଅଛନ୍ତି ପାଳନ ।

× × ×

ଜନକ ଜନନୀ ପଦେ ନାହିଁ ଯାର ଭକ୍ତି
ନିର୍ବୋଧ ପାଷଣ୍ଡ ସେହି ବର୍ବର ଦୁର୍ମତି ।”

ଏଇ ପିତୃତର୍ପଣପାଇଁ ବ୍ୟାକୁଳ ହେଉଥିବାରୁ ସେଦିନ ରାତିରେ ଲଛମା ସ୍ୱପ୍ନ ଦେଖିଥିଲା—“ପିଣ୍ଡହୀନ ଅପବିତ୍ର ଆତ୍ମା ପ୍ରେତ ସଭା ପ୍ରବେଶ ନିଷେଧ” । ତାର ପିତା ଧୈର୍ଯ୍ୟକଲସିଂହଙ୍କ ଆତ୍ମା ଦେବ-ସଭାରେ ପ୍ରବେଶ କରିପାରୁ ନାହାନ୍ତି । ତାଙ୍କର ଏକମାତ୍ର କୁଳବଂଶଧର ଲଛମାର ଏପର୍ଯ୍ୟନ୍ତ ନିଦ୍ରାଭଙ୍ଗ ହୋଇନାହିଁ । ସେ ପିତାର ଅଯୋଗ୍ୟ ସନ୍ତାନ । ଗୟାରେ ପିଣ୍ଡଦାନ କରି ସେ ସ୍ୱର୍ଗତ ପିତାଙ୍କ ଆତ୍ମାକୁ ତୃପ୍ତ କରିପାରି ନାହିଁ । ସ୍ୱପ୍ନଦର୍ଶନ ପରେ ଲଛମା ନିଜକୁ ଧିକ୍‌କାର କରି କହିଲା, “ମୁଁ ଯେ କୁଳର ଏକମାତ୍ର ବଂଶଧର, ପିତୃଆତ୍ମା ଉଦ୍ଧାରକାରୀ ଆଉ ଦ୍ୱିତୀୟ କେହି ନାହିଁ । ହା ! ମୁଁ କର୍ତ୍ତବ୍ୟକର୍ମରେ ତ୍ରୁଟି କରିଛି । ପିତାଙ୍କ ଆତ୍ମାକୁ ଉଦ୍ଧାର କରିବା ମୋ ପକ୍ଷରେ ଅବଶ୍ୟ କର୍ତ୍ତବ୍ୟ ।”

ତେବେ କଣ ବିଶୁଦ୍ଧ ଓ ଦିବ୍ୟ ଆନନ୍ଦପ୍ରଦ ଦାମ୍ପତ୍ୟ ପ୍ରେମ ଏବଂ ପିତୃ-ତର୍ପଣର ଉତ୍ତୁଙ୍ଗ ଆଦର୍ଶ ଫକୀରମୋହନଙ୍କୁ ଏହି ଉପନ୍ୟାସ ରଚନା କରିବାର ପ୍ରେରଣା ଦେଇଛି ? ତେବେ ଏଥିପାଇଁ ଏହି ଐତିହାସିକ ପୃଷ୍ଠଭୂମିର ପ୍ରୟୋଜନ କଣ ଥିଲା ? ଯୁଦ୍ଧର ପୃଷ୍ଠପଟ ଉପରେ ପତିପତ୍ନୀର ବିଚ୍ଛେଦ ଯେପରି ଗାଢ଼ତର

ଗାଢ଼ତର ହୋଇଅଛି, ସେହିପରି ମିଳନାଶା ବଳବତୀ ହୋଇ ଉଠିଛି—ପିତୃହନ୍ତା ଉପରେ ପ୍ରତିଶୋଧ ନିମନ୍ତେ ସୁବର୍ଣ୍ଣ ସୁଯୋଗ ଆସି ପହଞ୍ଚିଛି । ସଂଘର୍ଷମୁଖର ପରିବେଶ ମଧ୍ୟରେ ଦାମ୍ପତ୍ୟ ପ୍ରଣୟ ଅଧିକ ଦୀପ୍ତିମନ୍ତ ହୋଇ ଉଠିଛି । ଦ୍ୱିତୀୟ ପ୍ରୟୋଜନଟି ହେଉଛି, ଆଧୁନିକ ମନୋବୈଜ୍ଞାନିକମାନେ ଯାହାକୁ କହନ୍ତି "ସାହିତ୍ୟକ ଉପଲବ୍ଧିର ନିର୍ଲିପ୍ତତା" ତାହା । ଏହାର ଅନ୍ୟ ନାମ ମାନସିକ ଦୂରତ୍ୱବୋଧ କିମ୍ବା **Psychical distance** । ଏହି ଦୂରତ୍ୱବୋଧର ରସାନୁଭୂତି ଅନ୍ୟ ସକଳ ରସାନୁଭୂତିଠାରୁ ପୃଥକ୍ । ଏହି ଦୂରତ୍ୱବୋଧର ବ୍ୟାଖ୍ୟା କରିବାକୁ ଯାଇ ଜଣେ ମନସ୍ତାତ୍ତ୍ୱିକ ରସବିଚାରକ ଲେଖିଅଛନ୍ତି, "ବାସ୍ତବ ଜଗତର ଯେଉଁ ସକଳ ବସ୍ତୁର ସଂସ୍ପର୍ଶରେ ଆସି ଆମ୍ଭମାନଙ୍କର ଅନୁଭୂତି ଜାଗ୍ରତ ହୁଏ, ଆମ୍ଭେମାନେ ସେହି ସକଳ ବସ୍ତୁ ସହିତ ସଂପୃକ୍ତ ହୋଇଥାଉ । ଆମ୍ଭମାନଙ୍କ ମନରେ ଯେଉଁ ଭୟର ସଞ୍ଚାର ହୋଇଅଛି, ତାହା ଭୟର ବସ୍ତୁ ଉପରେ ଯେପରି ଲିଖିତ ଅଛି । ତେଣୁ ତାହା ଭୟାନକ ବା ଭୀଷଣ । ଆମର ଅନୁଭବ ଅନୁଭୂତ ବସ୍ତୁର ବିଶେଷଣ ସ୍ୱରୂପ । ସେ ଅନୁଭବ କୌଣସି ମୁକ୍ତିର ଆସ୍ୱାଦ ପାଇ ନାହିଁ, ବସ୍ତୁର ଗୃହରେ ସେ ଭାରାକ୍ରାନ୍ତ । କିନ୍ତୁ ଏହା ସହିତ ଯଦି ତୁଳନା କରି ସେହି ସବୁ ଅନୁଭବକୁ ଯେଉଁମାନଙ୍କର ବିଷୟ ଅପରର ଅନୁଭବ, କୌଣସି ବସ୍ତୁ ନୁହଁ, ତାହାହେଲେ ଦେଖି ପାରିବ ଅନୁଭବ ଅପେକ୍ଷାକୃତ ବସ୍ତୁନିରପେକ୍ଷ ଭାବରେ ବିଦ୍ୟମାନ । ସହାନୁଭୂତି ଏହି ଜାତୀୟ ଅନୁଭୂତି । ଏହାର ନାମରୁ ପ୍ରତୀୟମାନ ହୁଏ ଯେ ଏହାର ବିଷୟ ଅପରର ଅନୁଭୂତି । ନିହତ କ୍ରୌଞ୍ଚୀ କ୍ରୌଞ୍ଚର ଶୋକର ବିଷୟ; ଋଷି ବାଲ୍ମୀକିଙ୍କ ଶୋକର ବିଷୟ ନିହତା କ୍ରୌଞ୍ଚୀ ନୁହଁ, ରୋରୁଦ୍ୟମାନ କ୍ରୌଞ୍ଚ । କ୍ରୌଞ୍ଚର ଶୋକ

ଯେପରି ନାଟକୀ ସହଚରୀ ସଙ୍ଗେ ଅବିଚ୍ଛେଦ୍ୟଭାବେ ଯୁକ୍ତ ଓ ତାହାଦ୍ୱାରା ଭାରାକ୍ରାନ୍ତ ହୋଇ ପଡ଼ନ୍ତି, ଋଷିଙ୍କ ଶୋକ ସେପରି ଭାବରେ କୌଣସି ସଙ୍ଗରେ ଯୁକ୍ତ ହୋଇପାରି ନାହିଁ । ଏହା ମଧ୍ୟରେ ମୁକ୍ତିର ସ୍ପର୍ଶ ଅଛି—କାରଣ ଏହା ଭାବଜଗତର ସାମଗ୍ରୀ । ଏହା ଯେପରି ଆକାଶ ସମୀରଣରେ ସଞ୍ଚରଣ କରି ବୁଲୁଛି, ବସ୍ତୁର ବନ୍ଧନ ଏହାକୁ ସୀମିତ କରିପାରୁନାହିଁ । ତେଣୁ ସହାନୁଭୂତି ଅନୁଭୂତିଠାରୁ ବଡ଼, କାରଣ ଏହା ଅପେକ୍ଷାକୃତ ମୁକ୍ତ ।”* ଦାମ୍ପତ୍ୟ ପ୍ରଣୟର ଏହି ଆଦର୍ଶକୁ ଅବଲମ୍ବନ କରି ଫକୀରମୋହନ ଯଦି ଗୋଟିଏ ସାମାଜିକ ଉପନ୍ୟାସ ରଚନା କରିଥାନ୍ତେ, ତାଙ୍କର ପାରିପାର୍ଶ୍ୱିକ ଜଗତରୁ ଏହାର ଉପଜୀବ୍ୟ ବସ୍ତୁ ଆହରଣ କରିଥାନ୍ତେ, ତେବେ ତାହା ବର୍ତ୍ତମାନର ପ୍ରତ୍ୟକ୍ଷ ଅନୁଭୂତିରେ ଭାରାକ୍ରାନ୍ତ ହୋଇ ପଡ଼ିଥାନ୍ତା, ସେ ଆଉ ସେପରି ଭାବଜଗତର ସାମଗ୍ରୀ ହୋଇପାରିନଥାନ୍ତା । ସୁଦୂର ଅତୀତର ଘଟନା ସହିତ ବାଦଲ-ସିଂହ-ଲଛମାର ବିଚ୍ଛେଦ-ମିଳନ କାହାଣୀ ଦୃଢ଼ଭାବରେ ଗ୍ରଥନ କରି ଫକୀରମୋହନ ସାହିତ୍ୟର ରସଭୋଗରେ ମାନସିକ ଦୂରତ୍ୱବୋଧର ଉପଯୋଗିତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଅତୀତ ପ୍ରତି ତାଙ୍କର ଯେଉଁ ବିସ୍ମୃତ ସହାନୁଭୂତି, ତାହାଦ୍ୱାରା ଆମ୍ଭମାନଙ୍କ ରସାମୃତପିପାସୁ ଚିତ୍ତ-ଚକୋରକୁ ସୀମାହୀନ ମୁକ୍ତି ଓ ବ୍ୟାପ୍ତିର ସ୍ୱାଦୁ ଦେଇଅଛନ୍ତି ।



---

* ସାହିତ୍ୟପାଠେର ଭୂମିକା—ଡକ୍ଟର ସୁବୋଧଚନ୍ଦ୍ର ସେନଗୁପ୍ତ— (ପୃ. ୧୯—୨୦)

( ୭ )

# ସମାଜ ଓ ସମାଜ-ସଚେତନତା

ଫକୀରମୋହନ ପ୍ରଣୟନ କରିଛନ୍ତି ଛଅଗୋଟି ସାମାଜିକ ଉପନ୍ୟାସ—'ଛମାଣ ଅଠଗୁଣ୍ଠ', 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' । ଛଅଗୋଟିଯାକ ସମାଜସମସ୍ୟାମୂଳକ ଏବଂ ଏମାନଙ୍କର ବିଷୟବସ୍ତୁ ଉଦ୍ଭଟ କଳ୍ପନାପ୍ରସୂତ ନୁହେଁ, ଫକୀରମୋହନଙ୍କର ଜୀବନବ୍ୟାପୀ ପ୍ରତ୍ୟକ୍ଷ ଅନୁଭୂତ, ଅଭିଜ୍ଞତା ଓ ସୂକ୍ଷ୍ମ ପର୍ଯ୍ୟବେକ୍ଷଣର ବାସ୍ତବ ଭିତ୍ତିକ ରୂପାୟନ । ଘଟନାର ପରିଧି ସଙ୍କୀର୍ଣ୍ଣ ନୁହଁ । ଚରିତ୍ରମାନଙ୍କର ସଂଖ୍ୟା ମଧ୍ୟ ଅଳ୍ପ ନୁହଁ । ଯାହା କହନ୍ତି, 'ଏ ଯୁଗର ମାନବ-ସମାଜର ମହାକାବ୍ୟ ହେଲା ଉପନ୍ୟାସ । ସେଥିରେ ଦେଖିବାକୁ ମିଳେ ଏ ଯୁଗର ସମସ୍ତ ଚିତ୍ତବିକ୍ଷୋଭ, ସଂଶୟ, ବେଦନା, ନୈରାଶ୍ୟ, ଦର୍ଶନ, ସମାଜତତ୍ତ୍ୱ, ଇତିହାସ, ମନସ୍ତତ୍ତ୍ୱ, ଅର୍ଥନୀତି, ଶିଳ୍ପଶାସ୍ତ୍ର, ବିଜ୍ଞାନ ଓ ନୈତିକ ସମସ୍ୟାର ଆଲୋଚନା ଓ ବିଶ୍ଳେଷଣ । ଉପନ୍ୟାସ ତେଣୁ ସର୍ବଗ୍ରାସୀ ଶିଳ୍ପକୀର୍ତ୍ତି' । ତାହା ଫକୀରମୋହନଙ୍କ ଉପନ୍ୟାସ-ସୃଷ୍ଟି ପ୍ରତି ସମ୍ୟକ୍ ପ୍ରଯୋଜ୍ୟ ।

ଫକୀରମୋହନଙ୍କ ଉପନ୍ୟାସରେ ଦେଖୁ ଗୋଟିଏ ଅଖ୍ୟାତ ପଲ୍ଲୀଅଞ୍ଚଳର ଅର୍ଥଲୋଲୁପ ଜମିଦାରଙ୍କଠାରୁ ଚୌକିଦାର ଗୋବିନ୍ଦ ଜେନା ପର୍ଯ୍ୟନ୍ତ ଏ ସମସ୍ତଙ୍କର ବିଚିତ୍ର କାର୍ଯ୍ୟକଳାପ ଓ ଦୈନନ୍ଦିନ ଜୀବନ-ଯାତ୍ରାର କାହାଣୀ, କଟକ କଲେଜରେ ଏଫ୍.ଏ.

ପଢ଼ୁଥିବା ନବ୍ୟସଭ୍ୟ ତଥାକଥିତ ସଂସ୍କାର-ପ୍ରୟାସୀ ରାଜୀବଲୋଚନ ଓ କମଲଲୋଚନଠାରୁ ପ୍ରଭୁଭକ୍ତ ସଇତାନ ସାଧୁତା, ଏବଂ ନାଜର ନଟବର ଦାସଙ୍କର ଲୁଣ୍ଠନ-ପ୍ରକ୍ରିୟାଠାରୁ ହରବୋଲ ବାଉଳର ମୁଖରତା । ଘଟଣାର ସ୍ଥାନ କେବଳ ଓଡ଼ିଶାର ଚତୁଃସୀମା ମଧ୍ୟରେ ଆବଦ୍ଧ ନୁହେଁ । ବୃନ୍ଦାବନ, ବଙ୍ଗ ଓ ବିହାର ପର୍ଯ୍ୟନ୍ତ ମଧ୍ୟ ବିସ୍ତୃତ । ସ୍ଥୂଳତଃ ଫକୀରମୋହନଙ୍କ ଉପନ୍ୟାସରେ ଆମ୍ଭେମାନେ ଯେପରି ବହୁ ଘଟଣାର ସଂସ୍ପର୍ଶରେ ଆସୁ, ସେହିପରି ଦେଖୁ ବହୁ ଲୋକଙ୍କର ପ୍ରବେଶ ଓ ପ୍ରସ୍ଥାନ । ଶୁଣୁ ବହୁଲୋକଙ୍କର କାହାଣୀ, ହୃଦୟର ନିଭୃତ କନ୍ଦରରେ ଅନୁଭବ କରୁ ବହୁଲୋକଙ୍କର ମର୍ମବେଦନା । ଦେଖୁ ବାଘସିଂହ ବଂଶର ଦୁର୍ଦ୍ଦଶା, ଘରପୋଡ଼ିର ହୃଦୟବିଦାରକ ଦୃଶ୍ୟ, ବାଘସିଂହ ପରିବାରର ବୋହୂମାନଙ୍କର ନିର୍ବିବରଣ ଓ ନିଷ୍କପଟ ସରଳତା, ପୋଖରୀତୁଠରେ ଶୁଣୁ ଗାଁ ମାଇପିଙ୍କର ଅଯଥା ପରକୁତ୍ସାରଟନା, ବ୍ରାହ୍ମଣସମାଜର ଅଧଃପତନର ଚିତ୍ର ଦେଖି ହେଉ ଲଜ୍ଜାରେ ଅଭିଭୂତ, ଗୋବିନ୍ଦା ଭଣ୍ଡାରିର ନିର୍ମମ ହତ୍ୟାକାଣ୍ଡ ଦେଖି ପ୍ରାଣ ଭୟରେ ଶିହରି ଉଠେ । ସେହିପରି 'ମାମୁଁ'ରେ ଦାଶରଥି ଦାସଙ୍କ ପରିବାରର ଦୈନନ୍ଦିନ ଜୀବନ-ଯାତ୍ରାଠାରୁ ଆରମ୍ଭ କରି ଚୂଡ଼ାମଣିର ଜନ୍ମକାତକ, ଗେଣ୍ଡେଲିଇର ଆଈପଣିଆ, ଚିତ୍ରକଳାର ଛଳନାମୟୀ ଚୁଡ଼ୁରି, ନାକଫୋଡ଼ିଆମାର ସମରଲୀଳା, ପଣ୍ଡିତସଭାର ସରଗରମ ଦାର୍ଶନିକ ତର୍କବିତର୍କ, ଟୀକାଏତବାବୁଙ୍କର ମାଇନର ପାସ୍, ରାଘବ ମହାନ୍ତିର ନିପଟ ମଫସଲ୍ ଚାଲିଚଳଣି, ନନ୍ଦୁବାବୁଙ୍କ ବୈଠକଖାନାରେ ଯୁଗଳକିଶୋର ମନ୍ଦିରରେ ହରିଲୁଟ୍, ସଂକୀର୍ତ୍ତନ ମଣ୍ଡଳୀର ସମାରୋହ ଓ ପ୍ରସାଦସେବାର ବିରାଟ ଅୟୋଜନ, ଏବଂ 'ପ୍ରାୟଶ୍ଚିତ୍ତ'ରେ ଭୂମ୍ୟଧିକାରୀ ସାମନ୍ତମାନଙ୍କର ମାଲିମକଦମା ନିଶାଠାରୁ ଆରମ୍ଭ

କର ଶ୍ରୀକରଣଗୋଷ୍ଠୀ ସହିତ କୃଷ୍ଣପକ୍ଷିଆ ମହାନ୍ତିଙ୍କ ତୀବ୍ର ସଂଘର୍ଷ, କଟକ ରେଭେନ୍‌ସା କଲେଜର ପାଠପଢ଼ାଠାରୁ କବିକନ୍ୟା ଇନ୍ଦୁମତୀର ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀର ଚିତ୍ର ଅଙ୍କନ, ବା ନବ୍ୟସଭ୍ୟ କଲେଜଛାତ୍ରମାନଙ୍କର ଆଲୋଚନାସଭାରେ ସମାଜ-ସଂସ୍କାର ଉଦ୍ଦେଶ୍ୟରେ ଲମ୍ବା ଲମ୍ବା ବକ୍ତୃତା ପ୍ରଦାନ, ଶ୍ୱଶୁରାଳୟର ପ୍ରୀତି-ମଧୁର ଆକର୍ଷଣ, ଏବଂ କଟକ ଜେନେରଲ ହାସ୍‌ପିଟାଲରେ ଡାକ୍ତରମାନଙ୍କର ରୋଗୀପରିଚର୍ଯ୍ୟା ପର୍ଯ୍ୟନ୍ତ ଛୋଟ, ବଡ଼, ଜ୍ଞାତ, ଅଜ୍ଞାତ, ପରିଚିତ ଓ ଅପରିଚିତ କେତେ ମନୁଷ୍ୟର ଚିତ୍ର ଓ କେତେ ଘଟନାର ଅଣୁ ପରମାଣୁ ଆଲେଖ୍ୟ ଫକୀରମୋହନ ଜୀବନ୍ତ ଭାବରେ ଅଙ୍କନ କରିଛନ୍ତି, ଦେଖିଲେ ବିସ୍ମୟରେ ଅବାକ୍ ହେବାକୁ ପଡ଼େ ।

ଜଣେ ବ୍ୟକ୍ତିପକ୍ଷରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସି ଏତେ ବିସ୍ତୃତ ଓ ବହୁମୁଖୀ ଚିତ୍ର କଳ୍ପନା କରିବା କିପରି ସମ୍ଭବ ? ଲେଖକର ସୃଜନୀଶକ୍ତିର ଓ ରହସ୍ୟର ଅପ୍ରକଟ ଇତିହାସ କିଏ ଉଦ୍‌ଘାଟନ କରିବ ? ସମାଲୋଚକର ଅଧୀତ ବିଦ୍ୟା, ତାର ସୂକ୍ଷ୍ମ ବିଶ୍ଳେଷଣୀ ଶକ୍ତି, ତାର ପ୍ରଜ୍ଞାର ରଞ୍ଜନ-ରଶ୍ମି, ଏ ସକଳ, ସ୍ରଷ୍ଟାର ସେ ଦିବ୍ୟୋନ୍ମାଦନା ନିକଟରେ ପରାଭୂତ । ଔପନ୍ୟାସିକଙ୍କର ସମାଜଚେତନା ଉପରେ ଆଲୋକ ସମ୍ପାତ କରିବାକୁ ଯାଇ କେଉଁ ସମାଲୋଚକ ଆଗେ ଅଙ୍କ କଷି ଅବିଷ୍କାର କରୁଛନ୍ତି ତାଙ୍କ ଉପନ୍ୟାସ ରଚନା ଏବଂ ଉପନ୍ୟାସବର୍ଣ୍ଣିତ ଘଟନାର କାଳ, କିଏ ତତ୍କାଳୀନ ସମାଜର ପରିସ୍ଥିତି ଓ ରୂପରେଖର ପୃଷ୍ଠପୀଠ ଉପରେ ଉପନ୍ୟାସ-ବର୍ଣ୍ଣିତ ଘଟନାକୁ ପରଖି କରି କହୁଛନ୍ତି—ସମାଜର ପରିସ୍ଥିତି ସେତେବେଳେ ଏହିପରି ଥିଲା, ତେଣୁ ଔପନ୍ୟାସିକ ସେହି ଯୁଗଜୀବନର ଚିତ୍ର ଅଙ୍କନ କରିପାରିଅଛନ୍ତି, ସତେ ଯେପରି

ଫକୀରମୋହନ ବର୍ଗି ଅତ୍ୟାଗ୍ଭରକୁ ଅବଲମ୍ବନ କରି ତାଙ୍କର ଐତିହାସିକ ଉପନ୍ୟାସ 'ଲଛମା' ଲେଖିଲାପରେ ପାରିପାର୍ଶ୍ୱିକ କମ୍ପା ଗ୍ଭଳଶି ପଚିଶ ବର୍ଷ ତଳର ସମାଜର ଇତିହାସ ଲିପିବଦ୍ଧ କରି 'ଛମାଣ ଆଠଗୁଣ୍ଠ' ଓ 'ମାମୁଁ' ଲେଖିଅଛନ୍ତି । ତା ଯଦି ହୁଏ, ତେବେ ଫକୀରମୋହନ 'ସମାଜର ହାଲଗ୍ଭଲ' ବୋଲି ଗୋଟିଏ ଦୀର୍ଘ ହାସ୍ୟରସାତ୍ମକ ଗ୍ରନ୍ଥ ନ ଲେଖି, ଏପରି ସ୍ୱଭାବ-ସୃଷ୍ଟିଧର୍ମୀ ଏବଂ କଳାତ୍ମକ ତିନୋଟି ଉପନ୍ୟାସ ଲେଖିଲେ କାହିଁକି ? ତେବେ କଣ ସାହିତ୍ୟ-ଶିଳ୍ପୀ ସାମାଜିକ ଇତିହାସର ଅଙ୍କାବଦ୍ଧ, ସାମାଜିକ ପରିସ୍ଥିତିର ଦାସ ? 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ'ରେ ସେ ଅବକ୍ଷୟୀ ସାମନ୍ତବାଦୀ ସଭ୍ୟତାର ଯବନିକା-ପାତର ଚିତ୍ର ଅଙ୍କନ କରିଅଛନ୍ତି । 'ଛମାଣ ଆଠଗୁଣ୍ଠ'ରେ ସେ ଅର୍ଥଲୋଲୁପ ଭୂମ୍ୟଧିକାରୀର ନିର୍ମମ ଶୋଷଣ ନୀତିର ବଳିଷ୍ଠ ପ୍ରତିବାଦ କରିଅଛନ୍ତି, ଓ ପଲ୍ଲୀସମାଜର ନାନା ଦୋଷ ଦୁର୍ବଳତାର ଚିତ୍ର ପ୍ରଦାନ କରିଅଛନ୍ତି । କିନ୍ତୁ ସେତେବେଳେ ଓଡ଼ିଶାରେ ତ ତାଙ୍କଠାରୁ ଅଧିକ ଶିକ୍ଷିତ ବ୍ୟକ୍ତି କେହି କେହି ଥିବେ, ଉପନ୍ୟାସ ସାହିତ୍ୟରେ ସମୃଦ୍ଧ ଇଂରେଜି ସାହିତ୍ୟ ପ୍ରତି କାହାରି କାହାରି ସମ୍ୟକ୍ ପରିଚୟ ଥିବ । ପଲ୍ଲୀକବି ନନ୍ଦକିଶୋର ବଳ ତ ସେତେବେଳେ ଥିଲେ ବିଶ୍ୱବିଦ୍ୟାଳୟର ଜଣେ କୃତୀ ସନ୍ତାନ । ତାଙ୍କ ସମ୍ବନ୍ଧରେ ନିଜେ ଫକୀରମୋହନ ବ୍ୟଙ୍ଗ ଓ କୌତୁକପୂର୍ଣ୍ଣ 'ଉତ୍କଳ-ଭ୍ରମଣ'ରେ କେବଳ ଏତିକି ଲେଖି ନାହାନ୍ତି

"ଉତ୍କଳର ଯୋଗ୍ୟ ପୁତ୍ର ଶ୍ରୀ ନନ୍ଦକିଶୋର
ରୂପ ଗୁଣ ଯୋଗ୍ୟତାରେ ଶ୍ରୀ ନନ୍ଦକିଶୋର",

ତାଙ୍କର 'ଆତ୍ମଚରିତ'ରେ ହୃଦୟର ଗଭୀର କ୍ଷୋଭ ଓ ନୈରାଶ୍ୟ ପ୍ରକାଶ କରି ଲେଖିଅଛନ୍ତି, "ଗ୍ରୀଷ୍ମକାଳରେ ଘର ଅଗଣାରେ

ଯୋଡ଼ାଏ ଅରାମ୍‌ କୁରୁଚ ପକାଇ ସନ୍ଧ୍ୟାଠାରୁ ରାତ ୯—୧୦ ଘଣ୍ଟା ପର୍ଯ୍ୟନ୍ତ ଗଳ୍ପ କରୁ । ଗଳ୍ପର ଅଧିକାଂଶ ଉତ୍କଳ ସାହିତ୍ୟ ବିଷୟରେ । ଆମ୍ଭେମାନେ ଏକ ସଙ୍ଗରେ ଥିବା ସମୟରେ ଅନେକ ଗଳ୍ପ ଓ କବିତା ରଚନା କରିଅଛୁଁ । କିଛିକାଳ ମୋ ସହିତ ରହି ନନ୍ଦକିଶୋର ବାବୁ ଅନ୍ୟତ୍ର ଚାଲିଗଲେ । ସେ ପ୍ରକାର ପବିତ୍ର ସୁଖମୟ ନୈଶ ମିଳନ ମୋ ଅଦୃଷ୍ଟରେ ଆଉ ଘଟିବ ନାହିଁ ।"

ତେବେ ଏହି ବିଶ୍ୱବିଦ୍ୟାଳୟଶିକ୍ଷାପ୍ରାପ୍ତ ନନ୍ଦକିଶୋର ବଳଙ୍କ ପଲ୍ଲୀକବିତା କିମ୍ବା ତାଙ୍କର ସାମାଜିକ ଉପନ୍ୟାସ 'କନକଲତା'ରେ ପଲ୍ଲୀସମାଜର ଏତେ ବ୍ୟାପକ, ଜୀବନ୍ତ ଓ ସୂକ୍ଷ୍ମାନୁସୂକ୍ଷ୍ମ ଆଲେଖ୍ୟ କାହିଁ ? ସମସାମୟିକ ସମାଜର ପରିସ୍ଥିତି ତାଙ୍କୁ ସେପରି ପ୍ରବଳ ଭାବରେ ପ୍ରଭାବିତ କରି ପାରି ନାହିଁ କାହିଁକି ? ତାଙ୍କର ପଲ୍ଲୀପ୍ରାଣତା ଏପରି ଅପୂର୍ଣ୍ଣ ରହିଲା କାହିଁକି ? ପଲ୍ଲୀକୁ ଜୀବନ୍ତ କରିବା ନିମନ୍ତେ କବିତାରେ ନନ୍ଦକିଶୋର ଯେଉଁ ଅଭିମୁଖ୍ୟ ଦେଖାଇ ଯାଇଅଛନ୍ତି, ଉପନ୍ୟାସ ଓ ଗଳ୍ପରେ ଫକୀରମୋହନ ସେହି ପଥରେ ଗତି କରିଅଛନ୍ତି । ଏପରି ଯେ ଗୋଟିଏ କଥା ସମାଲୋଚକଙ୍କ ମୁହଁରୁ ଶୁଣାଯାଏ, ଏଥିରେ ସତ୍ୟ ଆଂଶିକ ଥାଇପାରେ, ପୂର୍ଣ୍ଣତଃ ନୁହେଁ । ଏହି ପ୍ରସଙ୍ଗ ଆଲୋଚନା କଲାବେଳେ ମନରେ ସ୍ୱତଃ ଜାଗିଉଠେ ସୃଷ୍ଟିଶୀଳ ଲେଖକମାନଙ୍କର ବ୍ୟକ୍ତିତ୍ୱର କଥା ।

ଦାର୍ଶନିକ-ସମାଲୋଚକ କହେ, ଲେଖକ ବହୁରୂପୀ । କେବଳ ଲେଖକ କାହିଁକି, ଯେ କୌଣସି ମନୁଷ୍ୟ ସେ ନିଜକୁ ଯେତେ ସ୍ୱତନ୍ତ୍ର କିମ୍ବା ସ୍ୱାଧୀନ ବୋଲି ମନେ କରୁ ନା କାହିଁକି, ସେ ବସ୍ତୁତଃ ସ୍ୱାଧୀନ ନୁହେଁ । ସେ ସମାଜର ସହସ୍ର ବନ୍ଧନରେ ବନ୍ଧା । ତା ଜୀବନର ଗତିବିଧି ସମାଜର ବିଧିନିଷେଧ ଦ୍ୱାରା ନିୟନ୍ତ୍ରିତ ।

କବି ଓୟାଡ଼ସ୍‌ଓଆର୍ଥ କୁଲ୍ ମଜୁରିଆମାନଙ୍କ ମଧ୍ୟରେ ଯେଉଁ ମହାନ୍ ଜୀବନର ପରିଚୟ ପାଇଥିଲେ ତାହା କି ପ୍ରକୃତରେ ମହତ୍ତ୍ୱରେ ମଣ୍ଡିତ ? ସେମାନଙ୍କ ଜୀବନରେ କି ଦୁଃଖ ଓ ନିର୍ଯ୍ୟାତନାର ଅଭିଶାପ ! କେବଳ ସମାଜର ନିୟନ୍ତ୍ରଣ ନୁହେଁ, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ପ୍ରଭାବରୁ ମନୁଷ୍ୟ ମୁକ୍ତ ନୁହେଁ । ଏହାପରି ସେ ନିଜ ମଧ୍ୟରେ ସଂଖ୍ୟାଧିକ୍ୟ ସତ୍ତା ଧାରଣ କରିଅଛି । ଏ ସତ୍ତା ଶିଳ୍ପୀଠାରେ ଅତ୍ୟନ୍ତ ଶକ୍ତିଶାଳୀ ଓ ବହୁମୁଖୀ । ଜଣେ ସମାଲୋଚକଙ୍କ ଭାଷାରେ ଏହାକୁ ଇଂରେଜରେ କୁହାଯାଏ **"rich and composite personality"** । ସେ ଯେପରି ସକଳ ମନୁଷ୍ୟର ପ୍ରତିନିଧି । କବି କିମ୍ବା କଥା-ଶିଳ୍ପୀର ଏ ବ୍ୟକ୍ତିତ୍ୱ ତାର ବ୍ୟକ୍ତିସ୍ୱାତନ୍ତ୍ର୍ୟ **( Individuality )** ନୁହେଁ, ଯାହା ତାହାକୁ ଅନ୍ୟବ୍ୟକ୍ତିଠାରୁ ପୃଥକ୍ କରି ଚିହ୍ନିତ କରେ । "ଏ ବ୍ୟକ୍ତିତ୍ୱ ଗୋଟିଏ ପୁରୁଷ ଚରିତ୍ର ଆଧାରରେ ସକଳ ପୁରୁଷ ଚରିତ୍ର ସମାନ ସ୍ଫୂର୍ତ୍ତି ।" ଏଥିପାଇଁ ଜଗତର ଶ୍ରେଷ୍ଠକବି ଶେକ୍‌ସପିଅରଙ୍କୁ ଜଣେ ମନୀଷୀ ଆଖ୍ୟା ଦେଇଛନ୍ତି **'genius of humanity'** । ପ୍ରତିଭାଶାଳୀ କବି କିମ୍ବା ଲେଖକ ବ୍ୟକ୍ତିବିଶେଷ ହୋଇ ସେ ନିର୍ବିଶେଷ । କବିଚିତ୍ତର ଏ ପ୍ରସାର ଓ ପ୍ରଶସ୍ତତାହିଁ ସେହି ସାର୍ବଜନୀନତାର କାରଣ । ସେ ସାର୍ବଜନୀନ ମାନବ ଚରିତ୍ର ଅଧିକାରୀ । ତାହାର ଗୋଟିଏ ଚିତ୍ତରେ ବହୁ ବିଚିତ୍ର ଚିତ୍ତ ବିଧୃତ । ସେ ଏକ ହୋଇ ବହୁର ପ୍ରତିନିଧି । ମନୁଷ୍ୟ ସମାଜରେ ସର୍ବତ୍ର ତାର ଅବାଧ ସଞ୍ଚାର । ସେ ବୁଦ୍ଧି ବିବେକ ପ୍ରୟୋଗ କରି କେବଳ ଲୋକଙ୍କର ଦୋଷ ଦୁର୍ବଳତା ଉପରେ କଶାଘାତ କରେ ନାହିଁ, ଅଶିକ୍ଷିତ କିମ୍ବା ଅତି ମୂର୍ଖ ଲୋକର ବୋକାମି ଓ ନିର୍ବୁଦ୍ଧିତାକୁ ସେ ବ୍ୟଙ୍ଗ କରି କେବଳ କୌତୁକରସ ସୃଷ୍ଟି କରେ ନାହିଁ, ସେ

ସମାଜର ପ୍ରତ୍ୟେକ ସ୍ତରର ଲୋକଙ୍କ ହୃଦୟ ସହିତ ନିଜର ହୃଦୟ ମିଶାଇ ଦେଇ ସେମାନଙ୍କ ସହିତ ଏକପ୍ରାଣ ଓ ଅଭିନ୍ନ ହୋଇଯାଏ । ତାହା ନହେଲେ ସେ ତାର ଅଙ୍କିତ ଚରିତ୍ର ମଧ୍ୟରେ ପ୍ରାଣର ସଞ୍ଚାର କରିପାରିବ ନାହିଁ । କିନ୍ତୁ ପ୍ରତ୍ୟେକ ଲେଖକ ନିଜ ମଧ୍ୟରେ ଅଗଣିତ ସତ୍ତା ( **Multi-personality** ) ବହନ କଲେ ସୁଦ୍ଧା ଯେ କୌଣସି ଲେଖକ ଯେ କୌଣସି କବିତା, ଗଳ୍ପ କିମ୍ବା ଉପନ୍ୟାସ ଲେଖି ପାରିବ ନାହିଁ । ପ୍ରତ୍ୟେକ ଲେଖକର ଗୋଟିଏ ମୂଳ ବ୍ୟକ୍ତିତ୍ୱ ଅଛି । ସେହି ମୂଳ ବ୍ୟକ୍ତିତ୍ୱ କଠିନ ହସ୍ତରେ ସହସ୍ର ଅଶ୍ୱ ପରି ସହସ୍ର ସତ୍ତାର ବଲ୍‌ଗାକୁ ଧାରଣ କରି ରଖିଛି । ତେଣୁ ଗଳ୍ପ କିମ୍ବା ଉପନ୍ୟାସର ନାୟକ-ନାୟିକାର ଚରିତ୍ରାୟଣରେ ଦେଖିବାକୁ ମିଳେ ଲେଖକର ମୂଳ ବ୍ୟକ୍ତିତ୍ୱର ଆରୋପ ଓ ଅଭିବ୍ୟକ୍ତି । ପାର୍ଶ୍ୱଚରିତ୍ରମାନଙ୍କ ମଧ୍ୟରେ ଦେଖିବାକୁ ମିଳେ ଲେଖକର ବହୁରୂପୀ ବ୍ୟକ୍ତିତ୍ୱର ପ୍ରତିଫଳନ । କିନ୍ତୁ ମୂଳ ବ୍ୟକ୍ତିତ୍ୱର ସୀମାକୁ ଅତିକ୍ରମ କରିବାର ଶକ୍ତି ଏହି ଅସଂଖ୍ୟ ସତ୍ତାର ନାହିଁ । ମୂଳ ବ୍ୟକ୍ତିତ୍ୱଦ୍ୱାରା ଏହି ଅସଂଖ୍ୟ ସତ୍ତା ନିୟନ୍ତ୍ରିତ । ତେଣୁ ଜଣେ ଲେଖକ ଯେଉଁ ଚରିତ୍ର ଏବଂ ଯେ କୌଣସି ଘଟନାର ଅବତାରଣା କରନ୍ତୁ, ତାଙ୍କର ପ୍ରତି ଚରିତ୍ର ଓ ଘଟନା ତାଙ୍କର ସେହି ନିଜସ୍ୱ ମୂଳ ବ୍ୟକ୍ତିତ୍ୱ କିମ୍ବା ଦୃଷ୍ଟିକୋଣ ଦ୍ୱାରା ନିଶ୍ଚୟ ରଞ୍ଜିତ ହୋଇଥିବ । ଫକୀରମୋହନଙ୍କର ଏ ବ୍ୟକ୍ତିତ୍ୱ କିମ୍ବା ଦୃଷ୍ଟିକୋଣ ଥିଲା ଅତି ବିସ୍ତୃତ ଓ ପ୍ରସାରଶୀଳ । ଅନୁଭୂତିର କ୍ଷେତ୍ର ଥିଲା ବିଶାଳ । ବହୁଲୋକଙ୍କର ସଂସ୍ପର୍ଶରେ ସେ ଆସିଥିଲେ । ରାଜ-ଉଆସଠୁ ସୁଦୂର ପଲ୍ଲୀର ଅତି ଦରିଦ୍ର ଲୋକ ସହିତ ତାଙ୍କ ଜୀବନର ନିବିଡ଼ ପରିଚୟ ଥିଲା । ସେ ସବୁ ଶ୍ରେଣୀର ଲୋକଙ୍କର ରୀତିନୀତି ଅନୁଧ୍ୟାନ କରିବାକୁ ଭଲ ପାଉଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା

ମାନବତାବାଦୀ । ଭଲ ହେଉ, ମନ୍ଦ ହେଉ, ସବୁ ଲୋକଙ୍କ ଚରିତ୍ରକୁ ସେ ତନ୍ନ ତନ୍ନ କରି ଅଧ୍ୟୟନ କରିବାକୁ ଚେଷ୍ଟିତ ଥିଲେ । ଏଥିରେ ତାଙ୍କ ପ୍ରାଣର ବିଳାସ ଥିଲା । ଏଥିରେ ହିଁ ସେ ଜାତୀୟ ଜୀବନର ପରିଚୟ ଲାଭ କରୁଥିଲେ । କିନ୍ତୁ ନନ୍ଦକିଶୋର ଥିଲେ ଆବେଗ ଓ ଉଚ୍ଛ୍ୱାସସ୍ପନ୍ଦିତ କବି । ପଲ୍ଲୀଜୀବନର ସ୍ମୃତି ତାଙ୍କ ପ୍ରାଣକୁ ଯେପରି ଆଲୋଡ଼ନ କରିଥିଲା, ପଲ୍ଲୀଜୀବନର ସରଳତା ତାଙ୍କ ଜୀବନରେ ଯେଉଁ ମାଧୁର୍ଯ୍ୟ-ରସର ସଞ୍ଚାର କରିଥିଲା, ସେ ସେଥିରେ ସମ୍ମୋହିତ ହୋଇ ପଲ୍ଲୀର ଚିତ୍ର ଅଙ୍କନ କରିଅଛନ୍ତି । ସେଥିରେ ପଲ୍ଲୀଜୀବନର ମାଧୁର୍ଯ୍ୟ ଅଛି, କିନ୍ତୁ ବିସ୍ତୃତି ଓ ବିଶାଳତା ନାହିଁ । ନଥିବା ସ୍ୱାଭାବିକ । ଉପନ୍ୟାସର ଧୀର, ମନ୍ଥର ଓ ପଲ୍ଲବିତ ବର୍ଣ୍ଣନା-ବିଶ୍ଳେଷଣର ସ୍ଥାନ କ୍ଷୁଦ୍ର କବିତାରେ ଆଶା କରିବା ବୃଥା । ତଥାପି 'କନକଲତା'ରେ ଆମ ସମାଜର ଫକୀରମୋହନୀୟ ସେ ପ୍ରାଞ୍ଜଳ ଚିତ୍ର କାହିଁ ?

ଏ କ୍ଷେତ୍ରରେ ଫକୀରମୋହନଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟାଦର୍ଶକୁ ରୁଷିଅର ଋଷି ଟଲଷ୍ଟୟଙ୍କ ଆଦର୍ଶ ସହିତ ତୁଳନା କରାଯାଇପାରେ । ଟଲଷ୍ଟୟ କେବଳ ଗଳ୍ପ ଓ ଉପନ୍ୟାସ ଲେଖିନାହାନ୍ତି, ଆର୍ଟ ସମ୍ବନ୍ଧରେ **'On Art' and 'What is Art ?'** ନାମରେ ଦୁଇଟି ଚିନ୍ତାଗର୍ଭକ ଓ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭ ଲେଖିଅଛନ୍ତି । ସେ ସେଥିରେ ଲେଖିଛନ୍ତି—"ସର୍ବବିଧ ଆର୍ଟ ହେଲା ଗୋଟିଏ ମାନବୀୟ କର୍ମ ।" 'ମାନବୀୟ କର୍ମ' ଶବ୍ଦର ତାତ୍ପର୍ଯ୍ୟ ହେଲା ସାମାଜିକ କର୍ମ; କାରଣ ସମାଜବୋଧ ଅର୍ଥାତ୍ ବ୍ୟଷ୍ଟିର ସହିତ ସମଷ୍ଟିର ସର୍ବଦା ଗୋଟିଏ ନିତ୍ୟ ଐକ୍ୟବୋଧ ହେଲା ଅସ୍ତିତ୍ୱ ସ୍ତରରେ ମନୁଷ୍ୟେତର ଜୀବଠାରୁ ମନୁଷ୍ୟର ଭେଦଲକ୍ଷଣ । ସର୍ବବିଧ ଶିଳ୍ପକର୍ମ ତେଣୁ ସମାଜ-ଜୀବନର ଅଙ୍ଗୀଭୂତ କର୍ମ । ସାହିତ୍ୟିକ ବା ଶିଳ୍ପୀକୁ

ସର୍ବଦା ଏହି ଚେତନାରେ ପ୍ରତିଷ୍ଠିତ ହେବାକୁ ହେବ ଯେ, ଅନ୍ୟାନ୍ୟ ସର୍ବପ୍ରକାର ସାମାଜିକ ମନୁଷ୍ୟପରି ସେ ବି ଜଣେ ସାମାଜିକ ମନୁଷ୍ୟ, ସାହିତ୍ୟିକ କର୍ତ୍ତବ୍ୟ ତାହାର ଗୋଟିଏ ବିଶିଷ୍ଟ ସାମାଜିକ କର୍ତ୍ତବ୍ୟ । × × × କେଉଁଠାରେ କୌଣସି ଅର୍ଥ ଅପର୍ତ୍ତକର ହୋଇ ଉଠିଛି ଏହାର ବିଶ୍ଳେଷଣରେ ତେଣୁ ମାନବ-ଜାତିର ସେବାରେ ଏହାର ଦାନ କେତେ ଏହି କଥାଟା ବାଦ ଦେଲେ ଚଳିବ ନାହିଁ । ଟଲଷ୍ଟୟ କହନ୍ତି, "ଅର୍ଥ ଗୋଟିଏ ସଂକ୍ରମଣ, ଜଣେ ମନୁଷ୍ୟ ତା ଜୀବନର ପ୍ରତ୍ୟେକ ଅଭିଜ୍ଞତାରେ ଯେଉଁ ସତ୍ୟର ଅନୁଭୂତିରେ ଉଦ୍‌ବୋଧିତ ହୋଇ ଉଠିଲା, ସମଗ୍ର ମନୁଷ୍ୟ ଜାତିର ସେବା ନିମନ୍ତେ ସେହି ଶକ୍ତ୍ୟୋଦ୍‌ବୋଧକୁ ଅପରର ଚିତ୍ତରେ ସଂକ୍ରାମିତ କରିଦେବା ହିଁ କଳାକାରର ପରମ କର୍ତ୍ତବ୍ୟ ।" *

ଏ ସତ୍ୟର ଉପଲବ୍‌ଧି କେବଳ ବୁଦ୍ଧିର ଗୃହଣାରେ ନାହିଁ, ଅଛି ହୃଦୟର ଅନୁଭୂତିରେ; ଅଛି ଏହି ଉପଲବ୍‌ଧ ସତ୍ୟକୁ ସାର୍ବଜନୀନରୂପେ ଆବେଦନଶୀଳ କରିବାରେ । ଏ ସତ୍ୟୋପଲବ୍‌ଧି କେବଳ ଦେଶକାଳର ସୀମିତ ଗଣ୍ଡୀ ମଧ୍ୟରେ ଅବଦ୍ଧ ହୋଇ ରହେ ନାହିଁ । ତେଣୁ ଫକୀରମୋହନଙ୍କର ମନୁଷ୍ୟ ଜାତି ପ୍ରତି ଯେଉଁ ଗଭୀର ଶ୍ରଦ୍ଧା ଓ ସହାନୁଭୂତି, ଏହାର ପଶ୍ଚାତରେ ଅଛି ତାଙ୍କର ଧ୍ୟାନକାବଷ୍ଟ ଚିତ୍ତ । ସେ ଯେଉଁ ସମାଜର ଚିତ୍ର ଅଙ୍କନ କରିଅଛନ୍ତି, ସେ ସମାଜର ରୂପ ଦିନେ ହୁଏତ ବଦଳିଯାଇପାରେ ।

---

* ଘରେ ବାହାରେ ସାହିତ୍ୟ-ଚିନ୍ତା—ଡକ୍ଟର ଶଶୀଭୂଷଣ ଦାସଗୁପ୍ତ । (ପୃ. ୭୪—୭୫)

ଭୂପୃଷ୍ଠରୁ ରାମଚନ୍ଦ୍ର ମଙ୍ଗରାଜ ବିଲୋପ ପାଇ ପାରନ୍ତି, ନାଜର ନଟବର ଦାସ ନିଶ୍ଚିହ୍ନ ହୋଇଯାଇପାରନ୍ତି, ରାଜୀବଲୋଚନ ଏବଂ ସଦାନନ୍ଦଙ୍କ ପରି କଲେଜ ପଢ଼ୁଆ ଅସାଧୁ, କପଟୀ ଓ କୁଚକ୍ରୀ ବ୍ୟକ୍ତି ନିଃଶେଷିତ ହୋଇପାରନ୍ତି, କିନ୍ତୁ ସମାଜରୁ ଏହି ଦୁଷ୍ଟ ଓ ଅଶିଷ୍ଟ ବ୍ୟକ୍ତିମାନଙ୍କର ମୂଳୋତ୍ପାଟନ କରିବାକୁ ଯାଇ ଫକୀରମୋହନ ଯେଉଁ ସତ୍‌ମାର୍ଗର ସଙ୍କେତ ଦେଇଅଛନ୍ତି, ଅତ୍ୟାଚାରିତ ଓ ନୈରାଶ୍ୟପୀଡ଼ିତମାନଙ୍କ ପାଇଁ ଯେଉଁ ଅଶ୍ରୁ ବିସର୍ଜନ କରି ଯାଇଅଛନ୍ତି, ପାପୀକୁ ପେପରି ଅନୁତାପାନଳରେ ଜାଳିପୋଡ଼ି ଦେଇଅଛନ୍ତି, ସେହି ସତ୍ୟୋପଲବ୍ଧି ହିଁ ଚିରକାଳ ଜାଜ୍ୱଲ୍ୟମାନ ରହିବ । ଫକୀରମୋହନଙ୍କ ମହାପ୍ରୟାଣର ୪୫ ବର୍ଷ ପରେ ବି ଆଜି ଆମ ସମାଜରୁ ଶୋଷଣ ଓ ଦୁର୍ନୀତି ଲୋପ ପାଇ ନାହିଁ । ଗଣତନ୍ତ୍ର ଶାସନରେ ଆମ୍ଭମାନଙ୍କର ମାନବିକ ମର୍ଯ୍ୟାଦାବୋଧ ବୃଦ୍ଧି ପାଉଛି ବୋଲି ଆମେ ଯେତେ ଦାମ୍ଭିକତା ପ୍ରକାଶ କଲେ ସୁଦ୍ଧା, କିଏ ଚାଉଳରେ ବାଲି ମିଶାଉଛି ତ, କିଏ ଚିନିରେ କାଚଗୁଣ୍ଡା ମିଶାଉଛି । ଫକୀରମୋହନ ଏହି ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ତାଙ୍କର ପ୍ରତିବାଦ ବ୍ୟଙ୍ଗ ଓ କୌତୁକ ମାଧ୍ୟମରେ ପ୍ରକାଶ କରିଛନ୍ତି । ତେଣୁ କାଳର କେଉଁ ନିର୍ଦ୍ଦିଷ୍ଟ ଗଣ୍ଡୀରେ ଆମେ ତାଙ୍କୁ ସୀମାପିତ କରି ତାଙ୍କର ସମାଜ-ସଚେତନତାର ପରିଚୟ ପାଇବାକୁ ଚେଷ୍ଟା କରିବା ? ସୀମା ଭିତରେ ଥାଇ ସେ ନିଃସୀମ । ସେ କାଳବିଜୟୀ । ସେ ଚିରନ୍ତନୀର ପୂଜାରୀ । ଆଜି ଏହି ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲେଖକର ସମାଜ-ଚେତନା ବୋଇଲେ ବୁଝୁ, ସମାଜରୁ ଈଶ୍ୱରଙ୍କର ନିର୍ବାସନ, ତାଙ୍କୁ 'ପାଷାଣ' ଓ 'ମୂକ' ଆଖ୍ୟା ଦେଇ ଆତ୍ମ-ପରିତୋଷ, ଦେବ-ମନ୍ଦିର ଭାଙ୍ଗି ତା ସ୍ଥାନରେ ଯାଦୁଘର ପ୍ରତିଷ୍ଠାର ପରିକଳ୍ପନା, ପ୍ରାକ୍-ବିବାହ ପ୍ରେମର ଅଶୋଭନ

ଓ ଅସଂଯତ ବର୍ଣ୍ଣନା, ବିବାହରେ ସ୍ୱେଚ୍ଛନ୍ଦ ସ୍ୱାଧୀନତା, ଶୋଷିତ ଏବଂ ଭକ୍ତମାନଙ୍କ ପ୍ରତି ହୃଦୟରେ କରୁଣାର କଣା ସୁଦ୍ଧା ନଥାଇ, ସେମାନଙ୍କ ଦୁଃଖ ଦୁର୍ଗତିରେ କପଟାଶ୍ରୁମୋଚନ—ନୋଇଲେ ଯୌନବ୍ୟାଧିଗ୍ରସ୍ତ ମନ ନେଇ ଫ୍ରଏଡ଼ୀୟ ପନ୍ଥାର ଅନ୍ଧ ଅନୁ-ଧାବନରେ ଅବଚେତନ ମନର ଲୁପ୍ତରନ୍ଧ୍ର ଅବସ୍ଥାର ବ୍ୟାଜରେ ନାରୀ ଦେହର ବିଶ୍ଲେଷଣ, ଓ ଅବଦମିତ କାମନାର ଅକୁଣ୍ଠ ବହିଃପ୍ରକାଶ । ଏହାର ଯେ ସାଧୁ ବ୍ୟତିକ୍ରମ ନାହିଁ ତା ନୁହେଁ, ବ୍ୟାକରଣରେ ତ ପୁଣି 'ନିପାତନ ସିଦ୍ଧ' ବୋଲି ଗୋଟିଏ କଥା ଅଛି । କିନ୍ତୁ ଅଧିକାଂଶ ଲେଖକଙ୍କର ସମାଜ-ଚିନ୍ତା ସେହି ଦିଗରୁ ।

କିନ୍ତୁ ଫକୀରମୋହନଙ୍କ ଦୃଷ୍ଟି ନିବଦ୍ଧ ଥିଲା ସମାଜର ସକଳ ଦୁର୍ଗତି ଓ ସକଳ ସ୍ତରର ଲୋକମାନଙ୍କ ଉପରେ । ସେ ସମାଜକୁ ଦେଖିଥିଲେ ତାଙ୍କ ନିଜ ଆଖିରେ, ପର ଆଖିରେ ନୁହେଁ । ଇଂଲଣ୍ଡରେ ନାରୀ ସ୍ୱାଧୀନତାର ଅହ୍ୱାନ ଜାଗି ଉଠିଲାଣି । ଆମ ଦେଶରେ ନାରୀମାନଙ୍କୁ ସେହିପରି ପ୍ରଗତିଶୀଳା କରିବାକୁ ହେବ, କିମ୍ବା ଶ୍ରମିକମାନଙ୍କ ଉପରେ ପୁଞ୍ଜିପତିମାନେ ପ୍ରବଳ ଅତ୍ୟାଚାର କରୁଛନ୍ତି, ତେଣୁ ଭକ୍ତ ଓ ସର୍ବହରାଙ୍କ ପ୍ରତି ସମବେଦନା ପ୍ରକାଶ କରି ଉପନ୍ୟାସରେ ତାଙ୍କର ଦୁର୍ଗତିକୁ ଉପଜୀବ୍ୟ କରିବାକୁ ହେବ, ଏପରି ପରବୁଦ୍ଧି ଶିକ୍ଷାରୁ ସେ ମୁକ୍ତ ଥିଲେ । ସେ ଦେଖିଥିଲେ ପଲ୍ଲୀ ସମାଜର ନାନା ଦୁର୍ବିଷହ ଅନାଚାର ଲୋକଙ୍କ ମଧ୍ୟରେ ଘୋର କୁସଂସ୍କାରର କୁହେଳିକା, ନୈତିକ ଅଧଃପତନର ଲଜ୍ଜାକର କାଳିମା, ପାରିବାରିକ ସ୍ନେହ ସହାନୁଭୂତିର ଅଭାବ, ଧନୀମାନଙ୍କର ବିପୁଳ ଧନତୃଷ୍ଣା ଇତ୍ୟାଦି । ସେଥିରେ ସେ ମର୍ମାହତ ହୋଇଥିଲେ । ପଲ୍ଲୀର ଦରିଦ୍ର କୃଷକମାନଙ୍କର ଦୁର୍ଦ୍ଦଶା ଦେଖି ସେ ଅତ୍ୟନ୍ତ

ବ୍ୟଥିତ ହେଉଥିଲେ । ଭଗିଆ ସାଉଆଙ୍କର 'ଛ ମାଣ ଅଠ ଗୁଣ୍ଠ' ଜମି କଳେ ବଳେ କୌଶଳେ ଅପହରଣ କରିନେଇ ମଙ୍ଗରାଜ ଦୁଇଟି ନିରୀହ ପ୍ରାଣୀଙ୍କର ଯେଉଁ ସର୍ବନାଶ ସାଧନ କଲେ, ତାର ନିଗୁଢ଼ ତାତ୍ପର୍ଯ୍ୟ କଣ ? ଜମିବଣ୍ଟନରେ ପଲ୍ଲୀସମାଜର ଅବ୍ୟବସ୍ଥା, ଦରିଦ୍ର କୃଷୀର ନିଃସହାୟତା, ନିରକ୍ଷ କୃଷକ ଉପରେ ପ୍ରତିପତ୍ତିଶାଳୀ ଧନୀର ଲୋଲୁପ ଦୃଷ୍ଟି, ସାଧାରଣ ଲୋକମାନଙ୍କର ଆତ୍ମ-ଜାଗରଣ ଓ ଆତ୍ମ-ମର୍ଯ୍ୟାଦାବୋଧର ଅଭାବ—ଏହାହିଁ ଥିଲା ସେତେବେଳେ ପଲ୍ଲୀସମାଜର ପରିସ୍ଥିତି । ଫକୀରମୋହନ ଏଥିପାଇଁ ବିପ୍ଳବ ସୃଷ୍ଟି କରିନାହାନ୍ତି, ପଲ୍ଲୀର ଲୋକେ ସେତେବେଳେ ଏ ବିପ୍ଳବ ପାଇଁ ପ୍ରସ୍ତୁତ ନଥିଲେ । ଇଂରେଜୀ ଶିକ୍ଷାର ପ୍ରସାର ସେତେବେଳେ ପଲ୍ଲୀରେ ପ୍ରବେଶ କରି ନାହିଁ । ତେଣୁ ମଙ୍ଗରାଜଙ୍କୁ ତାଙ୍କର ଏହି ନିର୍ମମ ଶୋଷଣ ନୀତି ନିମନ୍ତେ ଭଗିଆ ହାତରେ କଠୋର ଶାସ୍ତି ଦେବାକୁ ଫକୀରମୋହନ ଛାଡ଼ି ନାହାନ୍ତି । ଏହାହିଁ ଶୋଷକ ବିରୁଦ୍ଧରେ ଶୋଷିତର ବିପ୍ଳବ-ଚେତନାର ଅଗ୍ର ସଙ୍କେତ ।

ବ୍ରାହ୍ମଣ-ସମାଜର ନୈତିକ ଓ ଅର୍ଥନୈତିକ ଅଧଃପତନର ଚିତ୍ର 'ଛ ମାଣ ଅଠ ଗୁଣ୍ଠ'ରେ ସୁସ୍ପଷ୍ଟ । ବ୍ରାହ୍ମଣମାନଙ୍କର ଏ ଅଧୋଗତି ବର୍ଣ୍ଣନା କରିବା ବେଳେ ଫକୀରମୋହନ ଟିକିଏ ବିଶେଷ ଭାବରେ ରୂଢ଼ ହୋଇ ପଡ଼ିଛନ୍ତି । ଏ ଅପ୍ରିୟ ସତ୍ୟ— ବ୍ରାହ୍ମଣମାନଙ୍କୁ ସ୍ୱ ସ୍ୱ ମର୍ଯ୍ୟାଦାରେ ପ୍ରତିଷ୍ଠିତ ହୋଇ ସମାଜରେ ରହିବାକୁ ଫକୀରମୋହନଙ୍କର ଇଙ୍ଗିତ । "ଆକାଶରେ ଶାଗୁଣା ଉଡ଼ିଲେ କେଉଁଠାରେ ମଡ଼ା ପଡ଼ିଥିବାର ଯେପରି ଜଣାଯାଏ, ସେହିପରି ଦିନ ପହରକ ବେଳେ ଗୋସେଇଁମାନେ ଚଢ଼ାପଇତା ହୋଇ ପଲ ପଲ ବାହାରିଲେ, କେଉଁ ଗାଁରେ ମନୁଷ୍ୟ ମରିଥିବାର ଲୋକେ ଅନୁମାନ କରନ୍ତି ।" 'ଛ ମାଣ ଅଠ ଗୁଣ୍ଠ'ରେ ବ୍ରାହ୍ମଣ

ସମାଜର ଏ ଯେଉଁ ଚିତ୍ର ଦିଆଯାଇଛି, ତାହା ସମାଜର ଅତି ଦରିଦ୍ର ସ୍ତରର ବ୍ରାହ୍ମଣମାନଙ୍କର ଦୈନ୍ୟ ଓ ଦୁର୍ଗତିର ଚିତ୍ର । ସବୁ ବ୍ରାହ୍ମଣ ସେପରି ନଥିଲେ । ବରଂ ସଂସ୍କୃତ-ସାହିତ୍ୟ ସେତେ-ବେଳେ ଏହି ପଣ୍ଡିତମାନଙ୍କ ଯୋଗୁଁ ଶିକ୍ଷିତ ସମାଜରେ ଆଦର ପାଉଥିଲା । ଇଂରେଜ ସଭ୍ୟତାର ପ୍ରସାର ସମୟରେ ଏହି ପଣ୍ଡିତମାନେ ହିଁ ପ୍ରାଚୀନ ପରମ୍ପରାର ଧାରକ ଓ ବାହକ ଥିଲେ । ଫକୀରମୋହନ ସେ କଥା କି ଅସ୍ୱୀକାର କରି ନାହାନ୍ତି । 'ମାମୁଁ' ଉପନ୍ୟାସର ପଣ୍ଡିତସନ୍ତ୍ରି ଏହାର ନିଦର୍ଶନ । ଫକୀରମୋହନଙ୍କ-ଠାରେ ଯେଉଁ ଜାତୀୟତାବୋଧ ଅତି ସକ୍ରିୟଭାବରେ ବିଦ୍ୟମାନ ଥିଲା, ସେହି ସ୍ୱଦେଶପ୍ରୀତି ତାଙ୍କୁ ଦରିଦ୍ର ବ୍ରାହ୍ମଣମାନଙ୍କର ଏପରି ମାଗିଖିଆ ବୃତ୍ତି ଦେଖି ନିରତିଶୟ ମର୍ମପୀଡ଼ା ଦେଉଥିଲା ।

ପଲ୍ଲୀ ସମାଜର ଯେଉଁ ଦୋଷ ଦୁର୍ବଳତା ପ୍ରତି ଫକୀର-ମୋହନ ଅତି ସଚେତନ ଥିଲେ, ଏବଂ ଯାହାକୁ କେନ୍ଦ୍ର କରି ସେ 'ଛମାଣ ଆଠଗୁଣ୍ଠ' ଉପନ୍ୟାସଟିକୁ ହାସ୍ୟମୁଖରିତ କରିଅଛନ୍ତି, ତାହା ପଲ୍ଲୀସମାଜର ଲୋକମାନଙ୍କର, ବିଶେଷତଃ ନାରୀମାନଙ୍କର କୁସଂସ୍କାରାଚ୍ଛନ୍ନତା । ଧୂର୍ତ୍ତା ଚମ୍ପା ସାରିଆକୁ କହିଲା, ଗ୍ରାମଦେବତୀ ମଙ୍ଗଳାଙ୍କ ପାଇଁ ମନ୍ଦିର ଗଢ଼ିଦେଲେ ତାର ବନ୍ଧ୍ୟା ଦୋଷ ଯିବ, ତାର ତିନି ପୁଅ ହେବ । ସାରିଆ ପ୍ରଥମେ ପ୍ରଥମେ ଏ ପ୍ରସ୍ତାବରେ ମଙ୍ଗୁ ନଥିଲେ ବି ଶେଷରେ ରାଜି ହୋଇଗଲା । ଏ ସରଳ ବିଶ୍ୱାସ ଯେ କେବଳ ନିର୍ବୁଦ୍ଧିଆ ତନ୍ତୀ ଜାତିର ଲୋକମାନଙ୍କ ମଧ୍ୟରେ ଥିଲା, ତାହା ନୁହେଁ, ଏହା ସେତେବେଳେ ପଲ୍ଲୀ ସମାଜର ଅଧିକାଂଶ ସ୍ତ୍ରୀଙ୍କର ବିଶ୍ୱାସ । ଏବେ ମଧ୍ୟ ଏ କୁସଂସ୍କାରରୁ ଆମ ନାରୀଜାତି ସମ୍ପୂର୍ଣ୍ଣରୂପେ ମୁକ୍ତିଲାଭ କରିଛନ୍ତି ବୋଲି କହି ହେବ ନାହିଁ । ଏ କୁସଂସ୍କାରର ଅନ୍ୟ ଦିଗଟି ଦେଖିବାକୁ ମିଳେ ବାଘସିଂହଙ୍କ ଘରେ

ଯେଉଁ ଦିନ ଧୂର୍ତ୍ତ ରମା ଝାଙ୍ଗୀ ମାଉସୀର ଛଦ୍ମବେଶରେ ସେହି ପରିବାରର ସର୍ବନାଶ କରିବାକୁ ଯାଇଥିଲା । ମାଉସୀ ଝିଅଟିଙ୍କୁ ଦେଖିବାକୁ ଚାହିଁଲେ । ସାନ ଝିଉଡ଼ୀଶାଶୂ ନୂଆ ବୋହୂକୁ ମାଉସୀଙ୍କ ପାଖକୁ ଘେନି ଆସିଲେ । ଝିଅଟି ଓଢ଼ଣା ଟେକି ମାଉସୀଙ୍କ ଆଡ଼କୁ ଚାହିଁଥିଲେ ହୁଏତ ଏପରି ଜଣେ ମାଉସୀ ବିଶ୍ୱବ୍ରହ୍ମାଣ୍ଡରେ ତାର କେଉଁଠାରେ ନାହାନ୍ତି, ତାହା ବିଚାରି ଜାଣି ପାରିଥାନ୍ତା । ଜାଣିପାରିଥିଲେ ମାଉସୀଙ୍କର ଏ ଅଭିଯାନ ବ୍ୟର୍ଥ ହୋଇ ପଡ଼ିଥାନ୍ତା । ତେଣୁ ମାଉସୀ ଝିଅଟିକୁ କୁଣ୍ଢାଇ ପକାଇ ବାହୁନି ବସିଲେ, "ଅରେ ମୋ ଝିଅରେ ! ତୋତେ ନ ଦେଖି ଅନ୍ଧ ହୋଇଯାଇଥିଲି । × × ଅରେ ମୋ ଲାଜକୁଳୀଲତାରେ, ତୋତେ କିଏ ଲାଜ ଶିଖାଇବରେ । ସମୁଦ୍ଧୁଣୀ କଣ କହିବ, ଏହା ମାଆର ଏହିପରି ଲାଜ ଥିଲା, ବୁଢ଼ୀ ହୋଇ ମଲା—ଶାଶୂମାନଙ୍କ ଆଗରେ ଆଖି ପିଟାଇ ଚାହିଁ ନାହିଁ, ଓଢ଼ଣା ଟେକି ନାହିଁ । ଶାଶୂମାନଙ୍କ ସାଙ୍ଗରେ ଭଟଭଟ ଲଗାଇବ ପଛକେ, ଝିଉଡ଼ୀଶାଶୂମାନଙ୍କୁ ଗାଳିଦେବ ପଛକେ ସେହି ଓଢ଼ଣା ଭିତରୁ । ଧାନଟପେଟରୁ କଣ ବାଳୁଙ୍ଗା ବାହାରିବ ?" ସ୍ତ୍ରୀମାନଙ୍କର ଏହି ଓଢ଼ଣାଟେକା ଓ ଲାଜରେ ଲାଜକୁଳୀଲତାପରି ସଢ଼ିଯିବା ଫକୀରମୋହନଙ୍କୁ ବଡ଼ ବାଧୁଥିଲା । ପାରିବାରିକ କିମ୍ବା ସାମାଜିକ ଜୀବନରେ ଏଥିରେ ମଙ୍ଗଳ ନାହିଁ ବୋଲି ସେ ସେତେବେଳେ ବେଶ୍ ଉପଲବ୍ଧି କରିଥିଲେ । ଶିକ୍ଷାର ଅଭାବରୁ ଏହା ହେଉଛି ବୋଲି ସେ ବାରମ୍ବାର ପାଠକକୁ ଚେତାଇ ଦେଇ ଅଛନ୍ତି । ତେଣୁ 'ଗାରୁଡ଼ିମନ୍ତ୍ର' ଗଳ୍ପରେ ଏହି ଓଢ଼ଣା ଟେକିବା ପାଇଁ ସେ ପ୍ରତିକାରର ବ୍ୟବସ୍ଥା କରିଅଛନ୍ତି । ପଲ୍ଲୀସମାଜର ନାରୀମାନଙ୍କ ମଧ୍ୟରେ ଏହି ନିରର୍ଥକ ଓ କାଣ୍ଡଜ୍ଞାନଶୂନ୍ୟ ପ୍ରଥାବଦ୍ଧତାକୁ ସେ ପରବର୍ତ୍ତୀ 'ମାମୁଁ'

ଉପନ୍ୟାସରେ ବି ଷମା କରି ନାହାନ୍ତି । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନାରୀମାନଙ୍କର ଏ ଯେଉଁ ଦୁର୍ଦ୍ଦଶା ଓ କୁସଂସ୍କାରଚ୍ଛନ୍ନତା ତାହା ସେହିପରି ସେହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବି ଥିଲା । ଏତେବେଳକୁ ଇଂରେଜୀ ଶିକ୍ଷା ପଲ୍ଲୀସମାଜରେ ପ୍ରବେଶ କରିନାହିଁ । ପଲ୍ଲୀର ଶିକ୍ଷିତ ସଂଖ୍ୟା କମ୍ । ମାଇନର କିମ୍ବା ଏଣ୍ଟ୍ରାନ୍‌ସ ଖଣ୍ଡେ ପାସକଲେ ବଡ଼ କଥା । ପଲ୍ଲୀର ଧନୀ ଓ ଜମିଦାର ଘରର ପିଲମାନେ କେବଳ ଏଫ୍. ଏ. ପଢ଼ିବାକୁ କଟକ ରେଭେନ୍‌ସା କଲେଜକୁ ଯାଉଥାନ୍ତି । ନାରୀ-ସମାଜ ଉପରେ ନବ୍ୟ ଶିକ୍ଷାର ଅଲୋକ ପଡ଼ିନାହିଁ । ସହରରେ ଯେଉଁ ନାରୀମାନଙ୍କ ଉପରେ ଏହି ନବାଗତ ବିଦେଶୀ ଶିକ୍ଷାର ଅଲୋକ ପଡ଼ିଛି, ସେମାନେ ମେମ୍ ସାହେବଙ୍କର ବିକୃତ ଅନୁକରଣ କରୁଅଛନ୍ତି ମାତ୍ର । ତେଣୁ 'ମାମୁଁ' ଉପନ୍ୟାସର 'ନାଜର ଦମ୍ପତି'ଙ୍କ କଟକଯାତ୍ରା ପରିଚ୍ଛେଦରେ ଅଛି, "ସନ୍ଧ୍ୟା ଗାଧୁଅବେଳେ ଗାଁ ମଝି ତୁଠରେ ଗୁମୁକରଣ ଘର ବଡ଼ବୋହୂ, ମକରି ମା, ଚମ୍ପୀ ଅପା, ସାରଥି, ଟେଟେଲିଇ, ଚେମୀ ନଣନ୍ଦ, କଉଶଲ୍ୟା, ପାରି—ପାଞ୍ଚ ଘରର ସାତବୋହୂ, ଝିଅ ଅଜ ଗାଁ ମାଇପେ ରୁଣ୍ଡ ହୋଇ କଥାରେ ଲାଗିଛନ୍ତି । ଗୁମୁକରଣ ଘର ବଡ଼ବୋହୂ—କଣ କହିବ, ଚମ୍ପୀ ଅପା, ଏଣିକି ଅଉ ମାନ ମହତ ରହିବ ନାହିଁ—କଳିକାଳ ମାଡ଼ିଅସିଲଣି—ମୁଁ ଦ'ଟାର ମା ହେବାଯାଏ ଶାଶୁ ଅଗରେ ପାଟି ଫିଟାଇ ନାହିଁ—ଚୂ, ଚୂ କରୁଥାଏଁ । ଘରେ ଗୃହଲ ନଥିଲେ ଖାଲି ପାଛୁଅଟା ଧରି ଧାନ କୁଟିଲି ପରି ଶାଶୁ ଅଗରେ ଗୋଡ଼ କରୁଥିଲେ । ଲୁଗା ଧୋବା ଘରକୁ ଯିବ ତ, ଲୁଗାଟା ଧରି ଧୋବା ଲୁଗା କାଚିଲା ପରି ଇସ୍-ଇସ୍ କରି ଭୂଇଁରେ କଚୁଡ଼େ । ରାତ ଅଧରେ ସମସ୍ତେ ସବୁ ଅନ୍ଧେ ଶୋଇବେ—ବଲେଇଟି ବି ଶୋଇଲଣି—ଧୀରି ଧୀରି ଗୋଡ଼ ପକାଇ ତାଙ୍କ ଶୋଇଲାଘର

ବାଛଣାକୁ ଯାଏ—ଏ କଣ ନା—ଶାଶୁ ଯା ସାଙ୍ଗରେ କଥା ତ କଥା-କଲି ? ଦିନ ଅନ୍ଧଅନ୍ଧାରେ ଯୋଡ଼ାକ ଯାକ ଘରେ ବସି କଥାଭାଷା—କବାଟ ମେଲା ଅଛି ତ ଥାଉ ।”

ଝାଁ ଝୁଁ ସେତେବେଳେ କୌଣସି ବୋହୂ ଯଦି ଏ କୁସଂସ୍କାରରୁ ନିଜକୁ ମୁକ୍ତ କରି ଶାଶୁଘରେ ଟିକିଏ ସ୍ୱାଧୀନଭାବରେ ଚଳପ୍ରଚଳ ହେବାକୁ ଚେଷ୍ଟା କରୁଥିଲା, ତା ଉପରେ ତୀବ୍ର ଆକ୍ରମଣ ପୋଖରୀ ତୁଠରେ ହେଉଥିଲା । ଏପରି କି ନଟବର ଦାସଙ୍କ ସ୍ତ୍ରୀ ନୂଆ ନାଜରାଣୀ ମଧ୍ୟ ଏହି ତୀବ୍ର କଟାକ୍ଷ ଓ ଆକ୍ରୋଶରୁ ଅବ୍ୟାହତି ପାଉନଥିଲେ । ସେହିଦିନ ସେହି ତୁଠରେ ଚମ୍ପୀ ଅପା ମୁରବିପଣିଆ ଦେଖାଇ ନାଜରାଣୀଙ୍କୁ ଦାବିକା ଦେଇ କହୁଛି—'ଅଜି ଆମର ଯେ ନୂଆ ନାଜରାଣୀ—ଶାଶୁ ଯେବେ ପଖାଳ ପରଷିବାକୁ ମିନିଟେ ମଠ କଲେ, ଶାଶୁକୁ ଝାଡ଼ି ପକାଇବେ ନା' ।

ଛମୁକରଣ ବୋହୂ କଥାଟା ଝାମୁଡ଼ି ପକାଇ କହିଲେ, “ଆଁ—କଣ କହୁଛୁ । ଏଇଟା କରଣ କୁଳରେ ବଢ଼ିଥିଲା—ନା କେଲା କୁଳରେ ? ଆମ ଘରେ ଭଲ ମନ୍ଦ କିଛି ଆସିଲେ, ଲୁଚେଇ ବାଡ଼ିଅଡ଼େ ଖାଇବ ପଛକେ, କଣ ଶାଶୁ ଆଗରେ ଖାଇବ ? ଶାଶୁ ଯାଚିଲେ ମୁଣ୍ଡ ହଲଉଥାଏ । ଏଇଟା ହେଲା ଜାଣୁ କରଣ କୁଳର ମହତ ?”

ନାରୀସମାଜରୁ ଏହି କୁସଂସ୍କାର, ପ୍ରଥାବଦ୍ଧତା ଓ ସଙ୍କୀର୍ଣ୍ଣତା ଅପସାରିତ କରି ନାରୀକୁ ତାର ସମୁଚିତ ମର୍ଯ୍ୟାଦା ଦେବା ନିମନ୍ତେ 'ଛମାଣ ଆଠଗୁଣ୍ଠ'ରୁ 'ମାମୁଁ'ରେ ଫକୀରମୋହନଙ୍କର ଏହା ଗୋଟିଏ ବିଦ୍ରୋହାତ୍ମକ ପଦକ୍ଷେପ । 'ଛମାଣ ଆଠଗୁଣ୍ଠ'ର ଅସୁରଦୀଘି ପୋଖରୀ ତୁଠର ନାରୀ-ଆଲୋଚନାରେ ରଙ୍ଗ, ରସ,

ରହସ୍ୟ, ଲଘୁ ଚପଳତା ଅଛି; କିନ୍ତୁ 'ମାମୁଁ'ର ଏ ନାରୀ ଅଲୋଚନାକୁ ଫକୀରମୋହନ ଯେପରି ବ୍ୟଙ୍ଗର କୁଠାରରେ ଆଘାତ କରିବାକୁ ଉଦ୍ୟତ । ଫକୀରମୋହନଙ୍କ ଶିଳ୍ପୀ-ମାନସର କ୍ରମବିକାଶ ଏଠାରେ ଲକ୍ଷ୍ୟ କରିବାର କଥା । ତାଙ୍କର ଦୃଷ୍ଟିଭଙ୍ଗୀର ପ୍ରଗତିଶୀଳତା ଏଥିରୁ ଅନୁମେୟ ।

'ଛମାଣ ଆଠଗୁଣ୍ଠ'ରେ ଫକୀରମୋହନ ସମାଜ-ଜୀବନର ଶିଳ୍ପୀ କିନ୍ତୁ 'ମାମୁଁ' ଉପନ୍ୟାସରେ ସେ ପରିବାରଜୀବନର ଶିଳ୍ପୀ । 'ଛମାଣ ଆଠଗୁଣ୍ଠ'ର ଘଟନାସ୍ଥଳ ଓ ଚରିତ୍ରମାନଙ୍କର ଅଭିନୟକ୍ଷେତ୍ର କିମ୍ବା ଲୀଳାଭୂମି ମୁଖ୍ୟତଃ ପଲ୍ଲୀ । କିନ୍ତୁ 'ମାମୁଁ'ରେ ଜୀବନନାଟ୍ୟର ରଙ୍ଗମଞ୍ଚ ପ୍ରଧାନତଃ କଟକ ସହରରେ । ଇଂରେଜ ଶିକ୍ଷାର ପ୍ରସାର ତ ହୋଇଛି ଓଡ଼ିଶାରେ କଟକରୁ । ତେଣୁ 'ମାମୁଁ' ଉପନ୍ୟାସର ଘଟନାସ୍ଥଳକୁ ପଲ୍ଲୀଗ୍ରାମରୁ କଟକ ସହରକୁ ସ୍ଥାନାନ୍ତରିତ କରି ଫକୀରମୋହନ ଇଂରେଜୀ ଶିକ୍ଷା ଓ ଇଂରେଜୀ ଶିକ୍ଷିତ ବ୍ୟକ୍ତିମାନଙ୍କ ପ୍ରତି ତାଙ୍କର ମନୋଭଙ୍ଗୀର ସୁନ୍ଦର ପରିଚୟ ଦେଇଅଛନ୍ତି ।

ରାମଚନ୍ଦ୍ର ମଙ୍ଗରାଜ କେବଳ ସାରିଆ ଭଗିଆର ସର୍ବନାଶ କରି ନାହାନ୍ତି, ସେ ନିଜର ଭୂସମ୍ପତ୍ତି ବଢ଼ାଇବା ନିମନ୍ତେ ତାଙ୍କ ମୌଜା ଭିତରେ ଓ ବାହାରେ ଥିବା ସମସ୍ତଙ୍କ ଉପରେ ଲୋଲୁପ ଦୃଷ୍ଟି ବିସ୍ତାର କରିଛନ୍ତି । ସେ ଧୂମକେତୁ ପରି ଗୋଟିଏ ପଲ୍ଲୀ ଅଞ୍ଚଳକୁ ବିଧ୍ୱସ୍ତ କରି ଦେଇଅଛନ୍ତି । ତାଙ୍କର ଉକ୍ରଟ ଓ ଅତୃପ୍ତ ଅର୍ଥତୃଷ୍ଣା ଯୋଗୁ ବ୍ରାହ୍ମଣଙ୍କଠାରୁ ବାଉରୀ ଶ୍ୟାମ ଗୋଚ୍ଛାଇତ— ଏ ସମସ୍ତେ ଲଣ୍ଡଭଣ୍ଡ ହୋଇ ପଡ଼ିଛନ୍ତି । ଫକୀରମୋହନଙ୍କ ଭାଷାରେ "ଗୋବ୍ରାହ୍ମଣହିତାୟ" ମଙ୍ଗରାଜଙ୍କର ଭାରି ଯତ୍ନ । ମଙ୍ଗରାଜଙ୍କର ଶୋଷଣ ଗୋଟିଏ ପୂର୍ବକଳ୍ପିତ ଯୋଜନା ଉପରେ

ପ୍ରତିଷ୍ଠିତ । ତେଣୁ ଏହି ଉପନ୍ୟାସର ସାମାଜିକ ପୃଷ୍ଠଭୂମିର ପରିଧି ସୀମିତ । କିନ୍ତୁ 'ମାମୁଁ'ରେ ଦୁଇଟି ପରିବାରର ସମ୍ପର୍କ ବର୍ଣ୍ଣିତ । ପରିବାର ଦୁଇଟି ଅତି ନିକଟ ସମ୍ପର୍କୀୟ । ଜଣେ ମାମୁଁ, ଅନ୍ୟ ଜଣକ ଭଉଣୀ କିମ୍ବା ଭଣଜା । 'ମାମୁଁ' ଶିକ୍ଷିତ, ସରକାରୀ ଚାକିରିଆ, ଏଣ୍ଟ୍ରାନ୍ସ ପାସ୍ । ବିଧବା ଭଉଣୀ ଚୂଡ଼ାମଣିର ସର୍ବସ୍ୱ କଳେ ବଳେ କୌଶଳେ ଅପହରଣ କରୁଛନ୍ତି । ନାଜର ନଟବର ଦାସଙ୍କର ସହରିଆ ବୁଦ୍ଧି । ସେ ସାହେବଙ୍କ ପାଖରେ କାମ କରନ୍ତି । ବୁଦ୍ଧି ବଡ଼ ତୀକ୍ଷ୍ଣ । ସେ କ'ଣ ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ମଫସଲିଆ ଯେ, ମିଛ ସତ କହି, ଧମକ ଚମକ ଦେଇ, ଯିଏ ବାଡ଼ିରୁ ପୁଞ୍ଜେ ଛଳ ଉପାଡ଼ି ନେବେ, ତା ବିଲରୁ ବଳଦଟେ ବାନ୍ଧି ନେବେ, ଯିଏ ଘର ପୋଡ଼ିଦେବେ, ତା ବିଲ ଗୋରୁ ଚରାଇ ଦେବେ । ଏସବୁ ମଫସଲିଆଙ୍କ ନୀତି । କିନ୍ତୁ ନାଜର ନଟବର ସମାଜର ଅନ୍ୟ କାହାର କ୍ଷତି କରି ନାହାନ୍ତି । ସେ କ୍ଷତି କରିଛନ୍ତି କେବଳ ବିଧବା ଭଉଣୀ ଚୂଡ଼ାମଣିର । ଠେକିଗାଇ ଆଣିଛନ୍ତି ଭଉଣୀର ଅଳଙ୍କାରପୁଟୁଳା, ଘରେ ରଖାଇ ମୁଠେ ଅର୍ଦ୍ଧଜୋଲରେ ପେଟପୁରାଇ ଖାଇବାକୁ ଦେଇ ନାହାନ୍ତି ନିଜ ଭଣଜାକୁ । ଜାଲ କୁଆଗ୍ରେଫ୍ କରି ନରିପୁର କିଲ୍ଲାର ମାରଫତଦାର ହୋଇ ପ୍ରଜାଙ୍କ ରକ୍ତ ଶୋଷଣ କରିଛନ୍ତି । ସ୍ତ୍ରୀ ଚନ୍ଦ୍ରକଳାକୁ ରାଣୀ ବନାଇବା ପାଇଁ, ନାଜର ନଟବରଙ୍କର ଏହି ପ୍ରବଞ୍ଚନାମୟ ରୀତିଗତିରୁ ଜଣାଯାଏ, ସେତେବେଳେ ଏପରି ସ୍ତରର ସରକାରୀ ଚାକିରିଆମାନଙ୍କର ମାନସିକ ଅବସ୍ଥା କିପରି ଥିଲା, ଏବଂ ଯେ କୌଣସି ଅସଦୁପାୟରେ ଅର୍ଥ ଉପାର୍ଜନ କରିବା ନିମନ୍ତେ ଏମାନେ ପଶ୍ଚାତ୍‌ପଦ ହେଉନଥିଲେ । ଯେଉଁ ସାହେବମାନେ ଏ ଦେଶ ଶାସନ କରୁଥିଲେ, ସେମାନେ ମଧ୍ୟ କିପରି ନାଜରଙ୍କ ପରି ନିମ୍ନସ୍ଥ

କର୍ମଚ୍ୟୁତମାନଙ୍କ ହାତର ପିତୁଳା ଥିଲେ, ତାହା ମଧ୍ୟ ସ୍ପଷ୍ଟ ପ୍ରତିଭାତ ହୁଏ । କଟକର କଲେଜର ମିଷ୍ଟର ଡାଉସନ୍ ସାହେବ ମେମ୍ ସାହେବଙ୍କ କଥାରେ "You better give some power to Chandmani in order that she may be enlightened", ନାଜର ନଟବରଙ୍କୁ ନରପୁର କାଲର ପ୍ରାୟ ସମସ୍ତ କ୍ଷମତା ଦେଇଦେଲେ । ରକ୍ଷକ ଭକ୍ଷକ ହେଲେ । ଚାନ୍ଦମଣି enlightened ହେବ କଣ, ସର୍ବସ୍ୱାନ୍ତ ହେଲା ।

ବ୍ୟକ୍ତି ପରି ପରିବାରର ବି ସ୍ୱାଧୀନତା ନାହିଁ । ସେ ସମାଜର ସହସ୍ର ବନ୍ଧନରେ ବନ୍ଧା । ସମାଜର ଭିନ୍ନ ଭିନ୍ନ ଲୋକଙ୍କ ସହିତ ପରିବାରର ସମ୍ପର୍କ ନିଷ୍ଟପ୍ତ ରହିବ । ତେଣୁ 'ମାମୁଁ' ଉପନ୍ୟାସରେ 'ଛମାଣ ଅଠଗୁଣ୍ଠ' ପରି ଏତେ ବ୍ୟାପକଭାବରେ ନ ହେଲେହେଁ ସହର-ସମାଜର ଚିତ୍ର ଏବଂ ଜମିଦାରଙ୍କ ସହିତ ପ୍ରଜାପାଟକର ସମ୍ପର୍କର ସାମାଜିକ ଚିତ୍ର ଅନେକ କ୍ଷେତ୍ରରେ ଦେଖିବାକୁ ମିଳେ ।

ସେତେବେଳେ ଆଧୁନିକ ସ୍ତ୍ରୀଶିକ୍ଷାର ପ୍ରସାର ମୋଟେ ନଥିଲା କହିଲେ ଚଳେ । କିନ୍ତୁ ବାପମା ଝିଅମାନଙ୍କୁ ପାଠ ପଢ଼ାଇବା ନିମନ୍ତେ ଆଗ୍ରହୀ ହେଲେଣି । ଠାଏ ଠାଏ ସହରରେ ଗର୍ଲସ୍ଚାଲି କିମ୍ବା ପ୍ରାଥମିକ ବିଦ୍ୟାଳୟ ବସିଲେ ମଧ୍ୟ ସାଧାରଣ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ସେମାନଙ୍କ ଝିଅମାନଙ୍କୁ ଏହିସବୁ ବିଦ୍ୟାଳୟକୁ ପଠାଉନଥିଲେ । ଘରେ ଖ୍ରୀଷ୍ଟାନ୍ ପାଠ-ମା ନିଯୁକ୍ତ କରି ଝିଅମାନଙ୍କୁ ପାଠ ପଢ଼ାଉଥିଲେ । ସେମାନେ ବହି ପଢୁଥିଲେ, ସିଲାଇ ଶିଖୁଥିଲେ, କାର୍ପେଟ ଓ ମୋଜା ବୁଣୁଥିଲେ ଏବଂ ଛବି ଆଙ୍କୁଥିଲେ ।

ଇଂରେଜୀ ଶିକ୍ଷା ପ୍ରତି ଲୋକଙ୍କର ଅନୁରକ୍ତି କ୍ରମେ ବଢ଼ୁଥାଏ । ଜମିଦାରମାନଙ୍କ ପୁଅମାନଙ୍କର ବେଶୀ ଇଂରେଜୀ ପାଠ ପଢ଼ିବାର

ଉଦ୍ଦେଶ୍ୟ ଥାଏ ଗୋଟିଏ ବଡ଼ ହାକମି ହୁକୁମା ଭଳି ଚାକିରି କରିବେ, ସାହେବମାନଙ୍କ ସହିତ ମିଶିବେ, ପଦମର୍ଯ୍ୟାଦା ବଢ଼ାଇବେ । ଇଂରେଜୀପଢ଼ୁଆ ଲୋକଙ୍କର ଅଜକାଲି ପରି ଚାକିରି କରିବା ଛଡ଼ା ଅନ୍ୟ ପନ୍ଥା ନଥିଲା । ଧନୀ ଲୋକଙ୍କ ପକ୍ଷରେ ଚାକିରିଟା ଯେ ଅମର୍ଯ୍ୟାଦାର କଥା, ଏକଥା ସେତେବେଳେ କେହି ଭାବୁନଥିଲେ ।

ସହରିଆମାନେ ମଫସଲିଆମାନଙ୍କୁ କି ଅବଜ୍ଞାପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ ତାର ଜ୍ୱଳନ୍ତ ନିଦର୍ଶନ ରାଘବ ମହାନ୍ତି । ମହାନ୍ତିଙ୍କ ଆକାର ମଫସଲିଆ ଗଉଡ଼ ପରି ଦେଖାଯାଉଥିବାରୁ, ସେ କେଉଁଠାରୁ ଆସିଛନ୍ତି, ନାଜର ବାବୁଙ୍କ ବସାରେ କାହିଁକି ଅଛନ୍ତି, ଏସବୁ କଥା କିଛି ନବୁଝି ଜଣେ ପିଅଦା ପଚାରିଲା, "କଣ ଆଣିଥିଲୁ, ଦୁଧ ନା ଦହି ?" ମହାନ୍ତିଏ ଉତ୍ତର ଦେଲେ, "ଦୁଧ ଦହି କିଆଁ ଆଣିବି ?" ପିଅଦା କହିଲା, "ତୁ ମଇଁଷାଳ ବେଠିଆ ଗଉଡ଼ ପରି ?" ଅବଶ୍ୟ ଫକୀରମୋହନ ଲେଖିଛନ୍ତି, ପିଅଦା ଏକଥା ମହାନ୍ତିଙ୍କୁ ଅପମାନ ଦେବା ପାଇଁ କହି ନାହିଁ, ମଫସଲିଆ ଗଉଡ଼ର ଚେହେରା ସହିତ ତାଙ୍କ ଆକୃତିର ସାମଞ୍ଜସ୍ୟ ଦେଖି ଏପରି କହିଛି । କିନ୍ତୁ ଏହା ବ୍ୟଙ୍ଗୋକ୍ତି । ସହରିଆଙ୍କ ଅହଙ୍କାର ଓ ଶ୍ରେଷ୍ଠମନ୍ୟତା ଉପରେ ଏହା ଫକୀରମୋହନଙ୍କର ଆକ୍ଷେପ ।

ଫକୀରମୋହନଙ୍କ ଦୃଷ୍ଟି ସୁଦୂରପ୍ରସାରୀ । ଏଣେ କଟକ ସହର ଲୋକଙ୍କର ଚାଲିଚଳଣି ବର୍ଣ୍ଣନା କରିବାକୁ ଯାଇ ସେ ମଫସଲ କଥା ଭୁଲି ନାହାନ୍ତି । ଇଂରେଜମାନଙ୍କ ପ୍ରାଧାନ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଆମ ଦେଶରୁ ସ୍ୱାଧୀନ ଭାବରେ ବାଣିଜ୍ୟ ବ୍ୟବସାୟ କରିବାର ସୁବିଧା ସୁଯୋଗ ଲୋପ ପାଇଲା । ଆମ ଲୋକେ

ବାଲେଶ୍ୱର ଲୁଣ ନଖାଇ, ଖାଇଲେ ବିଲାତି ଲୁଣ, ପିନ୍ଧିଲେ ବିଲାତି ଲୁଗା । ତେଣୁ କୃଷିର ଉନ୍ନତି ନକଲେ ଅତ୍ର ମଫସଲ୍ ଲୋକଙ୍କର ଉପାୟ ନାହିଁ । ଏଣେ ବୈଜ୍ଞାନିକ ଉପାୟରେ କୃଷିର ଉନ୍ନତିରେ ପୃଥିବୀର ଅନ୍ୟାନ୍ୟ ଜାତି ଲାଗିପଡ଼ିଲେଣି । କିନ୍ତୁ ଓଡ଼ିଶା ପଛରେ ପଡ଼ିଛି । କୃଷିର ଉନ୍ନୟନ ନିମନ୍ତେ ଫକୀରମୋହନ କେବଳ ଚିନ୍ତା କରୁନଥିଲେ, ତାଙ୍କର ଏହି ପ୍ରଗତିଶୀଳ ଯୋଜନାକୁ ମଧ୍ୟ ଗଡ଼ଜାତମାନଙ୍କର ଦେବାନ କରୁଥିଲା ବେଳେ କୌଣସି କୌଣସି ଠାରେ କାର୍ଯ୍ୟରେ ପରିଣତ କରିଥିଲେ । "ଉତ୍କଳର ପ୍ରଜାମାନେ ଦରିଦ୍ର ଓ ଦୀନହୀନ । ଅନେକ ପ୍ରଜାଙ୍କର ଦୁଇଓଳି ଚୂଲିରେ ହାଣ୍ଡି ବସେ ନାହିଁ"—ଫକୀରମୋହନ ଏହାର କାରଣ 'ମାମୁଁ' ଉପନ୍ୟାସରେ ଶ୍ରୀଶ୍ରୀଶ୍ରୀ ପ୍ରତାପ ଉଦିତ ମଲ୍ଲଙ୍କ କିଲ୍ଲା ଶାସନ-ପଦ୍ଧତି ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି, ସେଥିରୁ ତାଙ୍କର ଅର୍ଥନୀତିକ ମନନଶୀଳତାର ସ୍ପଷ୍ଟ ଆଭାସ ମିଳେ । ଏ କ୍ଷେତ୍ରରେ ଫକୀରମୋହନଙ୍କର ସୁଚିନ୍ତିତ ଓ ବିଜ୍ଞାନସମ୍ମତ ନିର୍ଦ୍ଦେଶ—"ଯେବେ ସଭ୍ୟ ଦେଶମାନଙ୍କରେ ନବ ନବ ଉଦ୍ଭାବିତ କୃଷିପ୍ରଣାଳୀ, ଲାଭକର ଶସ୍ୟ ଉତ୍ପାଦନ ବିଷୟୁ ଶିକ୍ଷା ଦିଆଯାଏ, ତେବେ ପ୍ରଜା ଏବଂ ଭୂସ୍ୱାମୀ ଉଭୟଙ୍କ ପକ୍ଷରେ ମଙ୍ଗଳ । ଦାରିଦ୍ର୍ୟ ମଧ୍ୟ ପ୍ରଜାଙ୍କ ମଙ୍ଗଳ ଓ ଉନ୍ନତିର ଗୋଟିଏ ବିଶେଷ ଅନ୍ତରାୟ । ଜମିରେ ଉପଯୁକ୍ତରୂପେ ଖତ ଲଗାଇବା ବା ଭଲରୂପେ ଜମିକୁ କର୍ଷଣ କରିବା ଯେ ବିଶେଷ ଶସ୍ୟଲାଭର ଉପାୟ, ପ୍ରଜାମାନେ ଏ କଥା ଜାଣି ମଧ୍ୟ ଅର୍ଥାଭାବ ହେତୁରୁ ତାହା କରିପାରନ୍ତି ନାହିଁ । ଏହି ସମସ୍ତ ଅନ୍ତରାୟ ଅତିକ୍ରମ କରି ପ୍ରଜା ଯାହା କରୁଛି ଲାଭକରେ, ମହାଜନ ସୁଧରେ ସମସ୍ତ ଗୁଳିଯାଏ । ଯଦି ଶକ୍ତିଶାଳୀ ଜ୍ଞାନବନ୍ତ ଲୋକେ ସଚେଷ୍ଟ ନ ହୁଅନ୍ତି, ତେବେ ନିମ୍ନଶ୍ରେଣୀ ମଧ୍ୟରେ ଅର୍ଥାଭାବ

ସମାଜର ମୂଳ ପ୍ରଦେଶରେ ଦୁଃଖ ଦାରିଦ୍ର୍ୟ ଚିରକାଳ ବିରାଜିତ ଥିବ ।” ଏହାହିଁ ଥିଲା ଫକୀରମୋହନଙ୍କର ଅର୍ଥନୀତିକ ଓ ସାମାଜିକ ଚିନ୍ତାର ରୂପରେଖ । ଏହାହିଁ ଥିଲା ତାଙ୍କର ସମାଜଜିଜ୍ଞାସା ଓ ବଳିଷ୍ଠ ପ୍ରତ୍ୟୟ । ଏହି ଅଭିଜ୍ଞତାର ଅଭିବ୍ୟକ୍ତିରେ ହିଁ ତତ୍କାଳୀନ ସମାଜର ଚିତ୍ର ପରିସ୍ଫୁଟ ।

କିନ୍ତୁ ‘ପ୍ରାୟଶ୍ଚିତ୍ତ’ ଉପନ୍ୟାସରେ ଫକୀରମୋହନଙ୍କର ଆଧୁନିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ‘ପ୍ରାୟଶ୍ଚିତ୍ତ’ ଉପନ୍ୟାସର ପୃଷ୍ଠଭୂମି ଅବଶ୍ୟ ସାମାଜିକ । ଦୁଇଟି କରଣ ସମ୍ପ୍ରଦାୟର ଜାତିଗତ ଉତ୍କଟ ମନୋମାଳିନ୍ୟ ଓ ସଙ୍କୀର୍ଣ୍ଣ ବିଦ୍ୱେଷକୁ କେନ୍ଦ୍ର କରି ଏହା ରଚିତ । କ୍ଷୁଦ୍ର ସାମ୍ପ୍ରଦାୟିକ ମନୋଭାବର ବିଷମୟ ପରିଣତି ଏହାର ଉପଜୀବ୍ୟ । କିନ୍ତୁ ଏହା ସମସ୍ୟାମୂଳକ । ଏଥିରେ ଫକୀରମୋହନ ପ୍ରଥମେ ସମାଜ-ସଂସ୍କାରକ, ସୁନୀତିପରାୟଣ ଓ ବୁଦ୍ଧିମନ୍ତ ତାର୍କିକ, ପରେ ଶିଳ୍ପୀ । ଏଥିରେ ଫକୀରମୋହନଙ୍କର ଘଟନା-ବିନ୍ୟାସର ସେହି ପ୍ରଖର ବିଶ୍ଳେଷଣୀ ଶକ୍ତି ନାହିଁ, ଚଟୁଳ ହାସ୍ୟରସର କଲ୍ଲୋଳ ନାହିଁ, ସମାଜ କିମ୍ବା ପରିସ୍ଥିତିର ପୁଙ୍ଖାନୁପୁଙ୍ଖ ଚିତ୍ର ନାହିଁ । ଫକୀର-ମୋହନ ଏହି ଉପନ୍ୟାସରେ ଅତି ଗମ୍ଭୀର ଓ ପ୍ରଶାନ୍ତ । ଜଣାଯାଏ, ଇଂରେଜୀ ଶିକ୍ଷାର ଦ୍ରୁତ ପ୍ରସାର ସଙ୍ଗେ ସଙ୍ଗେ ଦେଶରେ ଗୋଟିଏ ନବ ଜୀବନର ତରଙ୍ଗ ଖେଳିଯାଉଛି । ସମାଜରୁ ନାନା କୁସଂସ୍କାର ଦୂର କରିବା ନିମନ୍ତେ ଦେଶର ଶିକ୍ଷିତ ଯୁବକମାନେ ପ୍ରୟାସୀ । ପ୍ରାଚୀନ ପ୍ରଥାର ନିଗଡ଼ ନିବନ୍ଧନରୁ ମୁକ୍ତିଲାଭ କରି ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଇଂରେଜୀ ଶିକ୍ଷାର ପ୍ରସାର ଫଳରେ ଯେଉଁ ନବ-ଜୀବନର ଅଲୋକ ସମଗ୍ର ଭାରତକୁ ଉଦ୍ଭାସିତ କରିଥିଲା, ଫକୀରମୋହନ ସେହି ନବ-ଜୀବନର ସ୍ଫୂର୍ତ୍ତି ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ । ସେହି ନବ୍ୟ ଅଲୋକରେ ସେ ଉତ୍କଳର

ସାମାଜିକ ଅବସ୍ଥା ଉପରେ ଅନ୍ତର୍ଦୃଷ୍ଟି ନିକ୍ଷେପ କରି ଦେଖନ୍ତୁ, ଓଡ଼ିଶା କେବଳ ଶିଳ୍ପ, କୃଷି ଓ ସାହିତ୍ୟ ଦିଗରେ ନୁହେଁ, ସବୁ ଦିଗରେ ପଶ୍ଚାତ୍ପଦ । ବିଶେଷତଃ ଏହି ବିଂଶ ଶତାବ୍ଦୀ ଚେତନାର ଯୁଗରେ ଦୁଇଟି କରଣ ସମ୍ପ୍ରଦାୟ ମଧ୍ୟରେ ଏ ବାଦବିସମ୍ବାଦ, ଏ ମାମଲାମକଦ୍ଦମା, ଦୁଇଟି ଜମିଦାରୀ ମଧ୍ୟରେ ଏ ଘୋର ଶତ୍ରୁତା ବଡ଼ ଅବାଞ୍ଛନୀୟ । ତେଣୁ ଏ ଜାତିଗତ ବୈଷମ୍ୟ ଉପରେ ସେ କୁଠାରାଘାତ କରିବାକୁ ପ୍ରୟାସୀ ହୋଇ ଅଛନ୍ତି । ଏଣେ ଜମିଦାର-ମାନଙ୍କର ଧନଗର୍ବ, ତେଣେ କ୍ଷୁଦ୍ର ଜାତିଗତ ବଡ଼ିମା ଦୁଇଟା ବୁନିଆଦୀ ଓ ଧନଶାଳୀ ପରିବାରକୁ ଲଣ୍ଡଭଣ୍ଡ କରି ଦେଇଛି । ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ଗୋଟିଏ ଦୁଇଟି ସଂକ୍ଷିପ୍ତ ଅଥଚ ସାର୍ବଜନୀନ ଉକ୍ତିରୁ ତାଙ୍କର ଏହି ସୂକ୍ଷ୍ମ ସମାଜ-ସଚେତନତା ପରିସ୍ଫୁଟ ।

"ତାଲୁକେ ଦଶଗ୍ରାମ—ତାଲୁକେ ସମସରପୁରର ତେର ତେର ମୌଜା ସୀମା ଲଗାଲଗି । ଭିଆଇ ବସିଲେ ମାମଲାର ଅଭାବ କଣ ଅଛି ? ଏଥିମଧ୍ୟରେ ଦୁଇପକ୍ଷରୁ ତେର ତେର ଫୌଜଦାରୀ ଦେବାନୀ ପୋଲିସ ମାମଲା ଦାଏର ହୋଇଗଲାଣି । 'ରଜାର ରଜାର ଲଢ଼େଇ, ପ୍ରଜାଙ୍କ ଦାଅ ଗଡ଼ାଇ' । ଦୁଇ ପକ୍ଷରୁ ତେର ତେର ଗରିବ ପ୍ରଜା ତାନାତରିଜ ହୋଇଗଲେଣି ।"

ଜମିଦାରମାନଙ୍କର ପ୍ରଜାମାନଙ୍କର ସୁଖ ଦୁଃଖ ପ୍ରତି ଏ ଦାରୁଣ ଉଦାସୀନତା ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଆଉ ସୁକୁମାର ଉପନ୍ୟାସ-ଶିଳ୍ପୀ କରି ରଖିନାହିଁ, ତାଙ୍କୁ ବିପ୍ଳବୀ ସମାଜ-ସଂସ୍କାରକର ସ୍ତରକୁ ଉନ୍ନୀତ କରି ଦେଇଛି । କିନ୍ତୁ ସମାଜ-ସଂସ୍କାର ସମ୍ବନ୍ଧରେ ତାଙ୍କର ଯେଉଁ ଆଦର୍ଶବାଦ କିମ୍ବା

ଶନ୍ତ୍ରାଧାର୍ ସେଥିରୁ ରାଜୀବଲୋଚନ, କମଳଲୋଚନ, ସଦାନନ୍ଦ ଓ କୁଅଁର ଗୋବିନ୍ଦଚନ୍ଦ୍ର ବିଚ୍ୟୁତ ହୋଇ ପଡ଼ିଛନ୍ତି ବୋଲି ସେମାନଙ୍କର ସଂସ୍କାର-ପ୍ରଚେଷ୍ଟା ବ୍ୟର୍ଥ ହୋଇ ପଡ଼ିଛି । ଫକୀର-ମୋହନଙ୍କର ଏହି ସମାଜ-ସଂସ୍କାର ପ୍ରବୃତ୍ତି 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ପରିଶେଷରେ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ସେବାମନୋଭାବରେ ପରିଣତ ହୋଇଅଛି ।

ଶ୍ରୀକରଣ ଗୋଷ୍ଠୀ ଓ କୃଷ୍ଣପଣ୍ଡିଅ ମହାନ୍ତିଙ୍କ ମଧ୍ୟରେ ଏ ଗୋଷ୍ଠୀଗତ ବିବାଦ ଛଡ଼ା 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ସମାଜର ବହୁ ଚିତ୍ରର ଅଭାସ ଅଛି । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ଇଂରେଜୀପଢ଼ୁଆ ଯୁବକର ଚାଲିଚଳଣି, ରୀତିନୀତି, ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ-ପ୍ରୟାସ, ଦେଶସେବକ ରୂପେ ନିଜ ନିଜକୁ ଛାତ୍ରାବସ୍ଥାରୁ ଗଢ଼ିବାର ପ୍ରବଳ ସଙ୍କଳ୍ପ, ମାତୃଭାଷା ପ୍ରତି ଅଦମ୍ୟ ପ୍ରୀତି, ସମାଜରୁ ବିବାହ ସମ୍ପର୍କୀୟ ସକଳ କୁସଂସ୍କାର ଦୂର କରିବାର ସମ୍ମିଳିତ ଉଦ୍ୟମ, କବିକନ୍ୟା ପ୍ରତି ସେମାନଙ୍କର ସମାଦର ଓ ପ୍ରୀତି, ଯୁବକମାନଙ୍କର ଶିକ୍ଷିତା ଯୁବତୀପ୍ରତି ଯୌନାକର୍ଷଣ, ଏବଂ ସଭାସମିତି ଡକାଇ ଦେଶର ଭଲମନ୍ଦ ସମ୍ବନ୍ଧରେ ଘନଘନ ଆଲୋଚନା ଓ ତର୍କବିତର୍କ—ଏହାସବୁ ଅତି ବାସ୍ତବବାଦୀ ଦୃଷ୍ଟିକୋଣରୁ ଫକୀରମୋହନ ଚିତ୍ର କରି ଅଛନ୍ତି । ଦେଶର ଶିକ୍ଷିତ ଯୁବକମାନଙ୍କର ଜାତୀୟ ଆଶା ଆକାଂକ୍ଷାକୁ ଫକୀରମୋହନ ଏହିପରି ବ୍ୟକ୍ତ କରି ଅଛନ୍ତି, "ବନ୍ଧୁଗଣ, ବର୍ତ୍ତମାନ ଆପଣାର ସୁଖସ୍ୱାଚ୍ଛନ୍ଦ୍ୟ, ସମାଜ ତଥା ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିର ମଙ୍ଗଳ କାମନାରେ ଚିରାଗତ କୁସଂସ୍କାର ଏବଂ ଅଳୀକ ଅଭିମାନ ସଂଶୋଧନ ବିଷୟରେ ଆମ୍ଭେମାନେ ଯଦି ଯତ୍ନଶୀଳ

ନହେଉ, ତେବେ ଅସ୍ମମାନଙ୍କର କଷ୍ଟସାଧ୍ୟ ବହୁ ଗ୍ରନ୍ଥ ଅଧ୍ୟୟନ ବିଡ଼ମ୍ବନାର ବିଷୟ ନୁହେ କି ?"

ଯୌନ ନିର୍ବାଚନର ସ୍ୱାଧୀନତା ବିଷୟରେ ଫକୀରମୋହନ ଏହି ଉପନ୍ୟାସରେ ନିଜେ କୌଣସି ସ୍ପଷ୍ଟ ମତ ନଦେଇ ଯାହା କହିଛନ୍ତି ସବୁ ସେହି ତଥାକଥିତ ଇଂରେଜୀପଢ଼ୁଆ ସମାଜ-ସଂସ୍କାର-ପ୍ରୟାସୀ ଯୁବକମାନଙ୍କ ମୁହଁରେ, ଏବଂ ସେମାନଙ୍କର ଅଲୋଚନା ଓ ଭୋଜି ସଭାର ଦୀର୍ଘ ବାକ୍-ବିତଣ୍ଡାରେ । କିନ୍ତୁ ଏ କଥା ଅସ୍ୱୀକାର କରି ହେବ ନାହିଁ ଯେ, ଫକୀରମୋହନ ନାରୀଶିକ୍ଷାର ପକ୍ଷପାତୀ ଥିଲେ । କନ୍ୟାଟି ଶାଶୁଘରକୁ ଆସି ତନି ଗୁରୁ ବର୍ଷେ କଥା କହିବ ନାହିଁ, ଚୁ କରିବ, କୁଜୀ ପରି ନଇଁ ନଇଁ ଗୁଲିବ—ଏସବୁ ମରହଟ୍ଟୀ ଓ ପୁରୁଣା କାଳିଆ ଢଙ୍ଗ ଫକୀରମୋହନଙ୍କୁ ଯୁକ୍ତି ଲାଗୁନଥିଲା । ବଡ଼ଲୋକ ଘରର ଝିଅ ବୋଲି ଯେ ତାକୁ ବିନା ବିଗୁରରେ, ତା'ର ରୂପ ଗୁଣ ସମ୍ବନ୍ଧରେ ଅଗରୁ ଭଲ କରି ନବୁଝି ନସୁଝି ବାପ ମା କହୁଛନ୍ତି ବୋଲି, କିମ୍ବା ଜ୍ୟୋତିଷ ଜାତକ ଦେଖି ରାଜଯୋଟକ ହେଲା ବୋଲି କହୁଛୁ ବୋଲି ଯେ ନିର୍ବିଗୁରରେ ଶିକ୍ଷିତ ଯୁବକ ସେ କନ୍ୟାକୁ ବିବାହ କରିବ, ଏ ପନ୍ଥା ଫକୀରମୋହନଙ୍କର ଅନୁମୋଦନୀୟ ନଥିଲା । ସଦାନନ୍ଦ, ଇନ୍ଦୁମତୀକୁ ବିବାହ କରିବା ନିମନ୍ତେ ଗୋବିନ୍ଦଚନ୍ଦ୍ରର ଅନିଚ୍ଛା ଓ ସନ୍ତର୍ପଣ ଦେଖି ତାକୁ ପ୍ରଲୁବ୍ଧ କରିବା ସକାଶେ କହିଛୁ, "ଅମ୍ଭମାନଙ୍କ ସମାଜରେ ଚିରାଗତ ପ୍ରଚଳିତ ନିୟମ, ବରକନ୍ୟା ସମ୍ବନ୍ଧ ସମୟରେ ପିତାମାତା ଧନସମ୍ପତ୍ତି, ମାନମର୍ଯ୍ୟାଦା ବିଷୟ, ବନ୍ଧୁମାନେ କୁଳର ନିର୍ମଳତା, ଅପର ସାଧାରଣ ମିଷ୍ଟାନ୍ନ ଭୋଜନ ବିଷୟ ତତ୍ତ୍ୱ ନେଇଥାନ୍ତି । ମାତ୍ର କନ୍ୟାଟି କୁରୂପ ଚିରବିବର୍ଣ୍ଣ, କେତେଦୂର

ବିଦ୍ୟାଶିକ୍ଷା କରିଛୁ, ଏ ବିଷୟ ଅନୁସନ୍ଧାନ କରିବା ଯେ ଉଚିତ, ଏ କଥା ଥରେ ହେଲେ କାହାର ମନରେ ଉଦିତ ହୁଏ ନାହିଁ ।”

ସମାଜର ଅନ୍ତଃସ୍ଥଳରେ ପ୍ରବେଶ କରିଥିବା ବହୁଦର୍ଶୀ ଫକୀରମୋହନ ଆମ ସମାଜର ଏହିସବୁ କୁପ୍ରଥାକୁ କଦାପି ପସନ୍ଦ କରି ନାହାନ୍ତି । ସମାଜରେ ଦେଶ କାଳ ପାତ୍ରକୁ ଗ୍ରହି ଏଥିରେ ନୂଆ ରକ୍ତ ଢାଳିବାକୁ ସେ ଇଚ୍ଛୁକ ଥିଲେ । କିନ୍ତୁ କେବଳ ଇଂରେଜୀ ପାଠ ପଢ଼ି ଲମ୍ବା ଲମ୍ବା ବକ୍ତୃତା ଦେଲେ ତ ସମାଜରୁ କୁସଂସ୍କାର ଦୂର ହେବ ନାହିଁ । ଆମ ସମାଜରୁ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ମନୋଭାବର ଅବସାନ ଘଟିବ ନାହିଁ । ଯେ ସମାଜ-ସଂସ୍କାରକ ହେବ, ସେ ସତ୍ୟ, ନ୍ୟାୟ ଓ ତ୍ୟାଗର ପଥିକ ହେବ, ସମାଜକୁ ନିଜର ଅଚଳ ଓ ଅଟଳ କର୍ତ୍ତବ୍ୟନିଷ୍ଠାରେ ପରିଚାଳିତ କରିବ, ଦେଶ ଲୋକଙ୍କ ସମ୍ମୁଖରେ ମହାସ୍ଥାନ ଆଦର୍ଶର ଅନୁଧାବନ କରିବ । ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥ କିମ୍ବା ରାଜ-ଗୃହୀଙ୍କରେ ପ୍ରଣୋଦିତ ହୋଇ ଜାତିର ସେବା କିମ୍ବା ସମାଜ-ସଂସ୍କାର କରିବାକୁ ଗଲେ ଉଦ୍ଦେଶ୍ୟ ଯେତେ ମହତ୍ତ୍ୱ ହୋଇଥାଉ ପଛେ, ତାହା ବ୍ୟର୍ଥତାର ହାହାକାରରେ ପର୍ଯ୍ୟବସିତ ହେବ । ଏପରି ଲୋକଙ୍କୁ ସମାଜ ନିନ୍ଦା କରିବ, ସେମାନଙ୍କର ଜୀବନ କଳଙ୍କିତ ହେବ । ସମାଜର ଉନ୍ନତି ପାଇଁ ତୁମେ ଯାହା କିଛି କର, ତାହା ସଦ୍ ବୁଦ୍ଧି କିମ୍ବା ସନ୍ମାର୍ଗ ଉପରେ ପ୍ରତିଷ୍ଠିତ ନହେଲେ ସମାଜର କଲ୍ୟାଣ-ସାଧନା ସୁଦୂରପରାହତ । ଫକୀରମୋହନଙ୍କର ଏ ସମାଜ-ସଚେତନା ଯୁଗ ଯୁଗ ଧରି ସମାଜ-ସଂସ୍କାରକମାନଙ୍କୁ ଉଦ୍‌ବୋଧିତ କରିବ ।

ପରିଶେଷରେ ଏଠାରେ ଫକୀରମୋହନଙ୍କ ସମାଜ-ଦର୍ଶନ ସମ୍ବନ୍ଧରେ ସୂକ୍ଷ୍ମଭାବରେ ବିଚାରକଲେ ଆଉ ଗୋଟିଏ ପ୍ରଶ୍ନ ସ୍ୱତଃ

ମନକୁ ଅକୁଳ କରେ—ସମାଜରୁ ସାମ୍ପ୍ରଦାୟିକ ମନୋଭାବ ଦୂର କରିବାକୁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ତାଙ୍କର ଏହି ଯେଉଁ ଉଦଗ୍ର ବ୍ୟାକୁଳତା, ନାରୀ-ସମାଜରେ ଶିକ୍ଷାର ପ୍ରସାର ଓ ଯୌନ ନିର୍ବାଚନରେ ସ୍ୱାଧୀନତା ପ୍ରତି ତାଙ୍କର ଏହି ଯେଉଁ ଅଙ୍ଗୁଳି ସଙ୍କେତ, ଯାହା ସଂସ୍କାରକମାନଙ୍କ ଚରିତ୍ର ଅଶୁଦ୍ଧି ଯୋଗୁ ବ୍ୟାହତ ହୋଇଗଲା, ତାହାହିଁ କି ସମାଜ ସମ୍ପର୍କରେ ତାଙ୍କର ଶେଷ କଥା ? ନବୀନକୁ ସ୍ୱାଗତ କରି ଆଣିବା ପ୍ରୟାସର ଅନ୍ତରାଳରେ ନବୀନ ଓ ପୁରାତନର ଗୋଟିଏ ଦ୍ୱନ୍ଦର ଚିତ୍ର କଣ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଆମ ସମ୍ମୁଖରେ ଆଭାସିତ ହୋଇ ଉଠେ ନାହିଁ ? ଆମ ସମାଜର ପ୍ରାଚୀନ ପରମ୍ପରା ପ୍ରତି ତାଙ୍କର ଏହି ଉପନ୍ୟାସରେ କଣ ତାଙ୍କର ସହାନୁଭୂତିର ସ୍ୱାକ୍ଷର ନାହିଁ ? ଅଛି । ତାହା ଇନ୍ଦୁମତୀର ପ୍ରାୟଶ୍ଚିତ୍ତରେ—ଆତ୍ମହତ୍ୟାରେ । ହିନ୍ଦୁ ନାରୀର ସତୀତ୍ୱ ଓ ସତ୍ୟନିଷ୍ଠା ଉପରେ ଫକୀରମୋହନଙ୍କର ପ୍ରଗାଢ଼ ଆସ୍ଥା ଥିଲା । 'ପ୍ରାୟଶ୍ଚିତ୍ତ'ର ପରବର୍ତ୍ତୀ ସଂସ୍କରଣମାନଙ୍କରୁ ଏହି ଆତ୍ମହତ୍ୟା ଅଧ୍ୟାୟଟି ଉତ୍ପାଟିତ । ତା ପରେ ଘଟିଥିବା ଘଟଣାସମ୍ବଳିତ ପରିଚ୍ଛେଦଗୁଡ଼ିକ ମଧ୍ୟ ଅନ୍ତର୍ହିତ । ଏଥିପାଇଁ ତାଙ୍କ ପୁତ୍ର ମୋହିନୀମୋହନ ସେନାପତି ଦାୟୀ । ଏହା ନାସ୍ତିକବୁଦ୍ଧିପ୍ରସୂତ । ଯେ ପାପ କରୁଛି ସେ କାହିଁକି ପ୍ରାୟଶ୍ଚିତ୍ତ କରିବ ? ପାପ କରି ପ୍ରାୟଶ୍ଚିତ୍ତ ନକରି ଏ ସଂସାରରେ ଅନେକ ଲୋକ ସୁଖରେ ଦିନ କାଟୁଛନ୍ତି । ତେଣୁ ଇନ୍ଦୁମତୀ ସ୍ୱାମୀଙ୍କ ପାଖକୁ ସେହି ଜାଲ କବଲାରେ ପିତାଙ୍କ ଅନୁରୋଧରେ ଯେଉଁ ଦସ୍ତଖତ କରିଦେଲା, ସେଇଟା ତାର ମୁହୂର୍ତ୍ତିକ ଦୁର୍ବଳତା । ସେଥିପାଇଁ ସେ ନିଜକୁ ଏଡ଼େ ଅପରାଧିନୀ ମନେ କରି ଆତ୍ମହତ୍ୟା କରିବ କାହିଁକି ? ସ୍ୱାମୀ ମରିଯିବେ, ସେ ବିଧବା ହେବ, ହେଉ, ଆଉ ଥରେ ବିବାହ କରିବ ? ନୋଇଲେ, ଚିର ଅଙ୍କି

ଜାଣେ, ସିଲେଇ କାମ ଜାଣେ, ସେଥିରେ ମନ ଦେଇ କାଳ କାଟିବ । ଇନ୍ଦୁମତୀର ବା ଅଭାବ କଣ ଅଛି ? ସେ ସମସରପୁର ଜମିଦାରଙ୍କର ଏକମାତ୍ର କନ୍ୟା । ବିପୁଳ ସମ୍ପତ୍ତିର ଉତ୍ତରାଧି-କାରିଣୀ । ବସି ଖାଇଲେ ସରିବ ନାହିଁ । ଏଥିପାଇଁ ଆତ୍ମହତ୍ୟା କାହିଁକି ? କିନ୍ତୁ ଏ ଯୁକ୍ତି ଫକୀରମୋହନଙ୍କ ପକ୍ଷରେ ଦୁଃସହ । ଦୁଃଖର ମାତ୍ରା ଅତ୍ୟଧିକ ହୋଇ ପଡ଼ିଲେ ମନୁଷ୍ୟ ଆତ୍ମହତ୍ୟା କରେ । ଏ ବୈଜ୍ଞାନିକ ପ୍ରଗତିର ଯୁଗରେ ଆତ୍ମହତ୍ୟାର ସଂଖ୍ୟା କମୁନାହିଁ, ବଢ଼ୁଛି । ମନୁଷ୍ୟର ଆତ୍ମା ଦୁଃଖରେ ହାହାକାର କଲେ, ସେ କେଉଁଠାରୁ ଆଶ୍ୱାସନା ନ ପାଇ ଏହି ଚରମ ପନ୍ଥା ଅବଲମ୍ବନ କରିଥାଏ । କିନ୍ତୁ ଆତ୍ମ-ହନନ ଏକ ମହାପାପ । ଇନ୍ଦୁମତୀ ଚିନ୍ତାକରି ଦେଖିଲା, ତାର ସ୍ୱାମୀଙ୍କର ଏ ଦାରୁଣ ଦୁର୍ଗତି ସକାଶେ ସେ ଏକା ଦାୟୀ, ସେ ସେହି କବାଟରେ ଦସ୍ତଖତ କରିନଥିଲେ, ସ୍ୱାମୀ ଗୃହ ଅଧରେ ତାଙ୍କ ଝରକାରେ ଆସି ହାତ ମାରି ନଥାନ୍ତେ କି ଡକାୟତ ମନେ କରି ପାଇକମାନେ ତାଙ୍କୁ ନିର୍ଘୂମ ମାଡ଼ ଦେଇ ନଥାନ୍ତେ । ଯେଉଁ ସ୍ୱାମୀ ହିନ୍ଦୁ ନାରୀର ଜୀବନ-ସର୍ବସ୍ୱ, ସେ ଯେତେବେଳେ ତାଙ୍କର ଅସାବଧାନତାରୁ ଏଡ଼େ କଷ୍ଟ ପାଇଲେ, ଏ ଜୀବନ ରଖି ସେ କରିବ କଣ ? ଏ ପାପରୁ ସେ ମୁକ୍ତି ପାଇବ କିପରି ? ଆତ୍ମାର ଏ ଦୁର୍ବିଷହ ବେଦନା ସେ ପ୍ରକାଶ କରିବ କାହା ଆଗେ ? ଜନ୍ମଦାତ୍ରୀ ଜନନୀ ନାହାନ୍ତି, ଯେ ଅଙ୍କ କୋଳକୁ ନେଇ ତାକୁ ଆଶ୍ୱାସନା ଦେବେ ? ତେଣୁ ସେ ନଈରେ ବୁଡ଼ି ଆତ୍ମହତ୍ୟା କଲା । ନିଜକୃତ ପାପର ପ୍ରାୟଶ୍ଚିତ୍ତ ସେ ଖୋଜିଲା ଏହି ଆତ୍ମହନନର ଅବାଞ୍ଛିତ ପନ୍ଥାରେ । ଫକୀରମୋହନଙ୍କର ଏହା ଅତିନାଟକୀୟ ପରିଣତି ହୋଇପାରେ, ତାଙ୍କୁ କେହି କେହି ଏଥିପାଇଁ ଉକ୍ତଟ

ଅଦର୍ଶବାଦୀର ଆଖ୍ୟା ଦେଇପାରନ୍ତି, କିନ୍ତୁ ହିନ୍ଦୁ ନାରୀର ଅସନ୍ତ ବୈଧବ୍ୟଠାରୁ ମୃତ୍ୟୁ ଯେ ଶତଗୁଣ ଶ୍ରେୟସ୍କର, ସଧବା ହୋଇ ବଞ୍ଚି ରହିଲେ ମଧ୍ୟ ନିଜକୃତ ପାପ ପାଇଁ ସ୍ତ୍ରୀକୁ ଯେ ଚିରଜୀବନ ତୁଷାନଳରେ ଦଗ୍ଧ ହେବାକୁ ହେବ, ହିନ୍ଦୁ ନାରୀର ଏହି ଏକନିଷ୍ଠ ପାତିବ୍ରତ୍ୟ ଆଦର୍ଶ ଇନ୍ଦୁମତୀଙ୍କୁ ଆତ୍ମହତ୍ୟା କରିବାରେ ପ୍ରବର୍ତ୍ତିତ କରିଛି । ତେଣୁ ସମାଜରେ ନବ-ଜୀବନସ୍ରୋତର ଧାରା ପ୍ରବାହିତ କରାଇବା ସଙ୍ଗେ ସଙ୍ଗେ ଆମ ସମାଜରେ ଯେଉଁ ପାପପୁଣ୍ୟ ଚିନ୍ତା, ନିଜକୃତ ଅପରାଧ ନିମନ୍ତେ ପ୍ରାୟଶ୍ଚିତ୍ତ କରିବାର ଯେଉଁ ବ୍ୟାକୁଳତା ଆମ ସମାଜରେ ଚରିତ୍ରଶୀଳ ବ୍ୟକ୍ତିମାନଙ୍କ ପ୍ରାଣରେ ଥାଏ, ଫକୀରମୋହନ ସେହି ଚିରାଚରିତ ପାପପୁଣ୍ୟବୋଧକୁ ଇନ୍ଦୁମତୀଙ୍କ ଆତ୍ମହତ୍ୟାରେ ମୂର୍ତ୍ତିମନ୍ତ କରି ପ୍ରାଚ୍ୟ-ପାଶ୍ଚାତ୍ୟ, ନବୀନ ଓ ପୁରାତନ ସମାଜ-ଚିନ୍ତା ମଧ୍ୟରେ ଯେପରି ସମନ୍ୱୟ ସାଧନ କରି ଯାଇଅଛନ୍ତି । ତେଣୁ ତାଙ୍କର କୈଶ ସାହିତ୍ୟ-ବନ୍ଧୁ ନନ୍ଦକିଶୋର ବଳ ଫକୀର-ମୋହନଙ୍କଠାରେ ଏହି ଯେଉଁ ପ୍ରାଚ୍ୟ-ପାଶ୍ଚାତ୍ୟର ସମ୍ମିଳିତ ଚେତନା ତାଙ୍କର ଅତି ନିକଟରେ ଥାଇ ଲକ୍ଷ୍ୟ କରିଥିଲେ, ତାହା ବ୍ୟାସକବିଙ୍କ ମୃତ୍ୟୁର ଅବ୍ୟବହିତ ପରେ 'ସ୍ୱର୍ଗତ କବି ଫକୀର-ମୋହନ' ଶୀର୍ଷକ କବିତାରେ ଏହିପରି ପ୍ରକାଶ କରିଥିଲେ—

"ପ୍ରାଚୀନ ମହତ ଆର୍ଯ୍ୟ ହୃଦୟ ସହିତ
ସମାବେଶ ଉନ୍ନତ-ଅଶୟ
ପ୍ରାଚ୍ୟ ପ୍ରତୀଚ୍ୟର ଆହା ଅପୂର୍ବ ସଂଯୋଗ
ସାଧିଲ ଜୀବନେ ମହାଶୟ ।"

---

( ୮ )

# ଫକୀରମୋହନଙ୍କ ଉପନ୍ୟାସରେ କାବ୍ୟିକ ଉପାଦାନ

ଫକୀରମୋହନ କବି । ଓଡ଼ିଆ ଗୀତି-କବିତାକୁ ତାଙ୍କର ଦାନ ଅକିଞ୍ଚିତ୍କର ନୁହେଁ । ସେ ମଧ୍ୟ କାବ୍ୟର କବି—'ବୌଦ୍ଧାବତାର କାବ୍ୟ' ଏହାର ନିଦର୍ଶନ । ତାଙ୍କ ଗୀତି-କବିତାରେ ହୁଏତ କାବ୍ୟର ଅଳଙ୍କାରିକ ଛଟା ନଥାଇପାରେ, କଳ୍ପନାର ବିସ୍ତୃତି କିମ୍ବା ଗୂଢ଼ତ୍ୱ ନଥାଇପାରେ, କିନ୍ତୁ ଅନୁଭୂତିର ନିରାଡ଼ମ୍ବର ରୂପାୟନ ଅଛି । ପ୍ରାଣର ଆବେଗରେ ସେଗୁଡ଼ିକ ଉଦ୍‌ବେଳ, ମାନବିକ ମହତ୍ତ୍ୱ ଓ ସୁକୁମାର ସଂବେଦନଶୀଳତାରେ ସେଗୁଡ଼ିକ ସମୃଦ୍ଧ । ତାର ବିଶଦ ଆଲୋଚନାର ସ୍ଥାନ ଏ ନୁହେଁ । କିନ୍ତୁ କବିପ୍ରାଣର ସୁକୁମାର ସ୍ପନ୍ଦନ, ଆବେଗର ମୃଦୁମନ୍ଦ ଝଙ୍କାର, ହୃଦୟର ନିଭୃତ କନ୍ଦରରେ କବିପ୍ରାଣର ଯେ କୌଣସି ସ୍ତରର ମନୁଷ୍ୟ ପ୍ରତି ବିସ୍ମିତ ସହାନୁଭୂତି, ଅନ୍ୟର ପ୍ରାଣରେ ନିଜର ପ୍ରାଣକୁ ମିଶାଇ ଦେଇ ଆତ୍ମ-ବିହ୍ୱଳତାର ଦିବ୍ୟ ଉନ୍ମାଦନା, ନିଜର ବ୍ୟକ୍ତିଗତ ଅନୁଭୂତିକୁ ସାର୍ବଜନୀନ ଓ ସାର୍ବକାଳିକ କରିବାର ରୂପଦକ୍ଷତା ଓ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ଏବଂ ଘଟନା, ଚରିତ୍ର ଓ ପରିବେଶର ବାସ୍ତବତାର ଅନ୍ତରାଳରେ କବି-ଜନ-ସୁଲଭ ଅନ୍ତର୍ମୁଖୀନତା କିମ୍ବା ଦାର୍ଶନିକସୁଲଭ ମନନଶୀଳତା, ଯାହାର ସ୍ୱାକ୍ଷର ବହନ କରିଥିଲେ, ଆମେ ଯେ କୌଣସି ଗଦ୍ୟ-

ରଚନାକୁ କାବ୍ୟଧର୍ମୀ ବୋଲି କହିବା, ସେ ସକଳ ଉପାଦାନ ଫକୀରମୋହନଙ୍କ କଥା-ସାହିତ୍ୟରେ ଅଛି ।

ଇଂଲଣ୍ଡରେ ଭିକ୍ଟୋରିଅ ଯୁଗରେ ଦୁଇଟି ଭଗିନୀଙ୍କର ଆବିର୍ଭାବ ହୋଇଥିଲା, ଯେଉଁମାନେ ଏହିପରି କଳ୍ପନାସମୃଦ୍ଧ ଓ ଆବେଗଉଚ୍ଛ୍ୱସିତ କାବ୍ୟଧର୍ମୀ ଉପନ୍ୟାସ ଲେଖି ସେ ଦେଶର ଉପନ୍ୟାସ-ସାହିତ୍ୟରେ ଗୋଟିଏ ନୂତନ ଅଭିମୁଖ୍ୟ ସୃଷ୍ଟି କରିଥିଲେ । ଇଂରେଜୀ ସାହିତ୍ୟ କାହିଁକି, ବିଶ୍ୱସାହିତ୍ୟରେ ସେ ଦୁହେଁ ଅମର । ସେମାନେ ହେଲେ ଏମିଲି ବ୍ରଣ୍ଟ (Emily Bronte) ଓ ଶାର୍ଲୋଟ୍ ବ୍ରଣ୍ଟ (Charlotte Bronte) । ଶାର୍ଲୋଟଙ୍କ ଉପନ୍ୟାସ ପାଠ କରି ସମାଲୋଚକମାନେ ମତ ଦେଇଛନ୍ତି, "ଶାର୍ଲୋଟଙ୍କ ଉପନ୍ୟାସ ଯେ ଆମ୍ଭମାନଙ୍କର ଏତେ ପ୍ରିୟ ପାଠ୍ୟ, ଏହାର ପ୍ରଧାନ କାରଣ ତାର କାବ୍ୟମୂଲ୍ୟ" "But for her poetry" । ଏମିଲି ବ୍ରଣ୍ଟ ଖଣ୍ଡିଏ ମାତ୍ର ଉପନ୍ୟାସ ରଚନା କରିଛନ୍ତି 'Withering Heights' (୧୮୪୭) । କିନ୍ତୁ ଏ ଖଣ୍ଡିଏ ମାତ୍ର ଉପନ୍ୟାସ ଯୋଗୁ ସେ ଅନ୍ତର୍ଜାତିକ ଖ୍ୟାତିର ଅଧିକାରିଣୀ । ଇଂରେଜୀ ଉପନ୍ୟାସ-ସାହିତ୍ୟରେ ଏହା ଆପଣାର ମହିମାରେ ଉଜ୍ଜ୍ୱଳ ଗୋଟିଏ ଗିରିଶୃଙ୍ଗ । ଜଣେ ଇଂରେଜୀ-ସାହିତ୍ୟର ଇତିହାସ ଲେଖକଙ୍କ ଭାଷାରେ, "ଏହି ଗ୍ରନ୍ଥଟି ଯେପରି ସ୍ଥାନ, କାଳର ଊର୍ଦ୍ଧ୍ୱରେ ସ୍ଥାପିତ, ମାନବ-ମନର ଆଦି ଓ ଚିରନ୍ତନ ଆବେଗର ଏକ ଅସହ୍ୟ ସ୍ପନ୍ଦନ ଏଥିରେ ଦେଖିବାକୁ ମିଳେ ।" ଲେଖିକାଙ୍କର ଦୁଃସହ ଯନ୍ତ୍ରଣାର ମର୍ମସ୍ପର୍ଶୀ ଅଭିବ୍ୟକ୍ତିରେ ଏହା କରୁଣରସାତ୍ମକ କାବ୍ୟପରି ଅଶ୍ରୁମୟ । ତେଣୁ ସୁସମାଲୋଚକ Ralph Fox ତାଙ୍କର 'The Novel and the People' ଗ୍ରନ୍ଥରେ ଲେଖିଛନ୍ତି, "It is the novel become pure poetry."

ଏ ଉପନ୍ୟାସରେ କେବଳ କବିସୁଲଭ ଅବେଗ ଓ କଳ୍ପନାର କାବ୍ୟିକ ଉପାଦାନ ନାହିଁ, ଏ ଉପନ୍ୟାସଟି ଅମୂଲଚୂଳ ଗୋଟିଏ କାବ୍ୟ ।

ଏହି କାବ୍ୟୋପନ୍ୟାସର ବିଷୟବସ୍ତୁ ସଂକ୍ଷେପରେ ହେଉଛି, "ହିଥକ୍ଲିଫ୍ ଲିଭରପୁଲ ବସ୍ତିଜାତ ପିତୃହୀନ ଓ ଗୋତ୍ରହୀନ ମନୁଷ୍ୟ । ଅସଂସ୍କୃତ ରୁଚି ନେଇ ସେ ଆସିଲା କ୍ୟାଥରିନଙ୍କ ଘରକୁ । ବାଳିକା କ୍ୟାଥରିନର ସମବୟସୀ ହିଥକ୍ଲିଫ୍ ପ୍ରତି ସଂଜାତ ହୁଏ ତୀବ୍ର ଆକର୍ଷଣ । କିନ୍ତୁ କ୍ୟାଥରିନର ଭାଇ ହିଣ୍ଡଲେ ଥିଲା ହିଥକ୍ଲିଫର ବିରୋଧୀ । କ୍ୟାଥରିନର ପିତୃବିୟୋଗ ପରେ ହିଣ୍ଡଲେ ହିଥକ୍ଲିଫକୁ ଗୋଟିଏ ନଗଣ୍ୟ ଭୃତ୍ୟ ରୂପେ ଦେଖୁଥାଏ । ଏହି ବ୍ୟବହାର ବିରୁଦ୍ଧରେ କ୍ୟାଥରିନ୍ର ମନ ବିଦ୍ରୋହୀ ହୋଇ ଉଠେ । କିନ୍ତୁ କ୍ୟାଥରିନର ଯେତେବେଳେ ଲିଣ୍ଟନ ପରିବାର ସହିତ ପରିଚୟ ହୁଏ, ସେ ପରିବାରର ଯୁବକ ଏଡ୍‌ଗାରକୁ ଦେଖି ତାର ମନେ ହୁଏ ହିଥକ୍ଲିଫ୍ କେଡ଼େ କଦାକାର ଓ ଦରିଦ୍ର ! ଭଦ୍ରସମାଜ ପକ୍ଷରେ ଅଚଳ । କିନ୍ତୁ ତାର ପରିଚାରିକା ନେଲ୍ ତାକୁ ଜଣାଇଦିଏ, ଏଡ୍‌ଗାରର ବଧୂ ହେଲେ ତାକୁ (କ୍ୟାଥରିନକୁ) ହିଥକ୍ଲିଫର ବନ୍ଧୁତ୍ୱରେ ଜଳାଞ୍ଜଳି ଦେବାକୁ ହେବ । କିନ୍ତୁ ଏହା ଶୁଣି କ୍ୟାଥରିନ୍ ଉତ୍ତେଜନାରେ ଚିତ୍କାର କରି ଉଠେ—'**Every Linton on the face of the earth might melt into nothing before I could consent to forsake Heathcliff'** "ନେଲ୍, ତୁମେ ମନେକରିଛ ମୁଁ ସ୍ୱାର୍ଥପର, ସଇତାନ, କିନ୍ତୁ ତୁମର କଣ ଠିକିଏ ମନେ ହୁଏ ନାହିଁ ଯେ ହିଥକ୍ଲିଫକୁ ବିବାହକଲେ ଆମକୁ ପଥର ଭିକାରି ହୋଇ ବୁଲିବାକୁ ହେବ ? କିନ୍ତୁ ଯଦି ଧନୀ ଏଡ୍‌ଗାରକୁ ବିଭା ହୁଏ,

ତାହାହେଲେ ହିଥକ୍ଲିଫ୍‌କୁ ବଡ଼ ହୋଇ ଉଠିବାକୁ ସାହାଯ୍ୟ କରିବ, ଯଦ୍ଵାରା ସେ ମୋର ଭାଇର ଦାସତ୍ୱରୁ ମୁକ୍ତିଲାଭ କରିବ ।

କିନ୍ତୁ ନେଲ୍ ଏ କଥାରେ ବିଶ୍ୱାସ କରେ ନାହିଁ । ହିଥକ୍ଲିଫ୍ ବି ବିଶ୍ୱାସ କରେ ନାହିଁ । ଅଭିମାନ, ଅପମାନ, କ୍ରୋଧ ଓ କ୍ଷୋଭରେ ହିଥକ୍ଲିଫ୍ ନିରୁଦ୍ଦିଷ୍ଟ ହୁଏ । ତା ପରେ ଅନେକ ଦିନ ପରେ ସେ ଫେରି ଆସେ । ସେତେବେଳେ ସେ ଅନ୍ୟମନୁଷ୍ୟ—ରୁଚିରେ, ଅର୍ଥରେ ଓ ପଦମର୍ଯ୍ୟାଦାରେ । କିନ୍ତୁ ଅନ୍ତର ଭିତରେ କ୍ୟାଥରିନ୍ ପାଇଁ ଅତ୍ୟନ୍ତ କାମନା-ପ୍ରେମର ତୀବ୍ରତା । ଏଣେ କ୍ୟାଥରିନ୍ (ସେତେବେଳେ ଶ୍ରୀମତୀ ଏଡ଼ଗାର ଲିଣ୍ଟନ) ହିଥକ୍ଲିଫ୍‌ର ନାଁ ଶୁଣିଲାମାତ୍ରକେ ଯେପରି ଉନ୍ମତ୍ତ ହୋଇ ଉଠିଲା । ସ୍ୱାମୀର ବିରକ୍ତି ଓ କ୍ରୋଧକୁ ସେ ଉପେକ୍ଷା କରିଦେଲା । ଭସ୍ମାଚ୍ଛାଦିତ ଅଗ୍ନି ପରି ହଠାତ୍ ପ୍ରଜ୍ୱଳିତ ହୋଇ ଉଠିଲା ତାର ଦମିତ କୈଶୋର ପ୍ରେମ । ଦୁଃଖ ଓ ଉତ୍ତେଜନାର ଆତିଶଯ୍ୟରେ କାଥରିନ ଶଯ୍ୟାଶାୟିନୀ । ହିଥକ୍ଲିଫ୍ ତା ସହିତ ଥରେ ମାତ୍ର ଦେଖା କରିବାକୁ ଇଚ୍ଛୁକ । କ୍ୟାଥରିନ୍‌ର ହୃଦୟ ମଧ୍ୟ ଏଥିପାଇଁ ଉନ୍ମୁଖ । ସେ ଶେଷରେ ଏହି ସାକ୍ଷାତ ନିମନ୍ତେ ସମ୍ମତି ଦେଇଛି ।

ଦେଖାହେବାରୁ କ୍ୟାଥରିନ୍ ହିଥକ୍ଲିଫ୍‌କୁ କହୁଛି, "ତୁମେ ଆଉ ଏଡ଼ଗାର ମୋର ହୃଦୟ ଭାଙ୍ଗି ଦେଇଛ, ଆଉ ଆଜି ତୁମେ ଦୁଇଜଣ ଆସିଛ ସେଥିପାଇଁ ଶୋକ ପ୍ରକାଶ କରିବାକୁ—ଯେପରି ମୋର ଆଉ କିଛି ନାହିଁ, ମୁଁ ତୁମର ସହାନୁଭୂତିର ପାତ୍ର । କିନ୍ତୁ ନା, ମୁଁ ତୁମକୁ କାହାକୁ କ୍ଷମା ଦେବାକୁ ଚାହେଁ ନାହିଁ ।"

ଆହତ ପଶୁପରି ହିଥକ୍ଲିଫ୍ ଆର୍ତ୍ତନାଦ କରି ଉଠିଲା । ତା ପରେ ପରମ ସ୍ନେହରେ କ୍ୟାଥରିନ୍ ଯେତେବେଳେ ତାକୁ

ତା ମୁଣ୍ଡ ପାଖକୁ ଡାକୁଛି, ସେତେବେଳେ ପାଗଳ ପରି କ୍ୟାଥରିନକୁ ଗାଢ଼ ଅଲିଙ୍ଗନ କରି ହିଥକ୍ଲିଫ୍ ହୃଦୟର ସମସ୍ତ କ୍ଷୋଭ, ଏତେ ଦିନର ସମସ୍ତ ସଞ୍ଚିତ ହାହାକାର ଉଜାଡ଼ି କରିଦେଇ କହୁଛି, "Why did you betray your heart, Cathy ?··· You have killed yourself···You loved me—then what right had you to leave me ? What right—answer me ? For the poor fancy you felt for Linton ? I have not broken your heart—you have broken it; and in breaking it you have broken mine. So much the worse for me."

ଏତକ କହି କେବଳ ହିଥକ୍ଲିଫ୍ କ୍ଷାନ୍ତ ହୋଇ ନାହିଁ । ସେ ଗୋଟି ଗୋଟି କରି ପ୍ରତିଶୋଧ ନେଇଛି । ହିଣ୍ଡ୍ରେଲର ସମ୍ପତ୍ତି ଗ୍ରାସ କରିଛି । ଲିଣ୍ଟନ ପରିବାର ସେ ପ୍ରତିହିଂସାରୁ ଅବ୍ୟାହତି ପାଇ ନାହାନ୍ତି । ଏଡ୍‌ଗାରର ଭଉଣୀ ଇସାବେଲ୍‌କୁ କୌଶଳରେ ମୁଗ୍ଧ କରି ପରେ ତାକୁ ବିବାହ କରିଛି । ଅଥଚ ଦିନେ ଏଇ ଦୁଇଟି ଅଭିଜାତ ପରିବାର ନିକଟରେ ସେ ଥିଲା ଜଣେ ନଗଣ୍ୟ ପରଗୃହକ । ଇସାବେଲ୍ ହିଥକ୍ଲିଫ୍‌ର ଯନ୍ତ୍ରଣାରେ ଅସ୍ଥିର । ସେ ଗୋଟିଏ ରୁଗ୍‌ଣ ଶିଶୁପୁତ୍ର ପ୍ରସବ କରି ଦେହତ୍ୟାଗ କରେ । କ୍ୟାଥରିନ୍ ଏ ଅଘାତ ସହିନପାରି ଗୋଟିଏ କନ୍ୟା ଜନ୍ମକରି ମୃତ୍ୟୁମୁଖରେ ପଡ଼େ । ହିଥକ୍ଲିଫ୍‌କୁ ତାର ପ୍ରେତାତ୍ମା ବାରମ୍ବାର ଛଳନା କରେ । ହିଥକ୍ଲିଫ୍ ତାର ଡାକ ଶୁଣି ତାର ଉପସ୍ଥିତି ଅନୁଭବ କରେ । ଦିନେ ସେ ଉପବାସ ଓ ଦୁଃଖରେ ସ୍ୱେଚ୍ଛାମୃତ୍ୟୁକୁ ଡାକିଆଣେ । ହିଥକ୍ଲିଫ୍‌ର ମୃତ୍ୟୁପରେ ସେମାନଙ୍କର ଯୁଗଳ ଛାୟାମୂର୍ତ୍ତି ଗ୍ରାମର ଲୋକେ ଦେଖିବାକୁ ପାନ୍ତି ।

ହୁଏତ ଉପନ୍ୟାସର ଶେଷାଂଶଟି ଅବାସ୍ତବ । କିନ୍ତୁ ପ୍ରେମ ଓ ପ୍ରତିହିଂସାର ଏ କାହାଣୀ, କ୍ୟାଥରିନ-ହିଥକ୍ଲିଫ୍‌ର ଚରିତ୍ର କଳ୍ପନା, ନରନାରୀ ହୃଦୟର କାମନାର ଦୁରନ୍ତ 'ଲଭା', ଦୁଇଟି ପ୍ରାଣର ଅଣା, ନୈରାଶ୍ୟର ଏ କରୁଣ ମନ୍ଥନ ଇଂରେଜୀ ଉପନ୍ୟାସରେ ଅନାସ୍ୱାଦିତ ରସ ସଞ୍ଚାର କରିଛି ।

ବହିଟି ବନ୍ଦ କରିଦେଲେ କାନରେ ଆସି ବାଜେ କ୍ୟାଥରିନର ସେହି ମର୍ମବିଦାରୀ କଥା, **"Nelly, I am Heathcliff. He is always in my mind, not as a pleasure, but as my own being"**—(ନେଲି, ହିଥକ୍ଲିଫ୍ ମୋର ଆତ୍ମା—ସେ ଓ ମୁଁ ଅଭିନ୍ନ) ଅଥବା,

ହିଥକ୍ଲିଫ୍‌ର **"I cannot live without my life, I cannot live without my soul."**

ଦୁଇଟି ହୃଦୟ ଭିତରେ ଏହି ଯେଉଁ ପରମ ନିବିଡ଼ ନିରନ୍ତରତା, ଜଣକର ଅନ୍ୟଜଣକୁ ପାଇବା ସକାଶେ ଆତ୍ମ-ବିହ୍ୱଳତା ଓ ଆତ୍ମବିସ୍ମୃତିର ଏ ଯେଉଁ ଅବେଗମୟ ଅକୁଳ ଅଧୀରତା, ଏହାହିଁ ଏହି ଉପନ୍ୟାସକୁ କରିଛି କାବ୍ୟଧର୍ମୀ—**"the novel become poetry."**

ଏଠାରେ ପ୍ରଶ୍ନ ଉଠିପାରେ ଫକୀରମୋହନ ସେନାପତିଙ୍କର କେଉଁ ଉପନ୍ୟାସ କାବ୍ୟଧର୍ମୀ ? ଏମିଲି ବ୍ରଣ୍ଟି ଓ ଫକୀରମୋହନ ସେନାପତିଙ୍କ ମଧ୍ୟରେ ସାମଞ୍ଜସ୍ୟ କାହିଁ ? କେଉଁ ଚରିତ୍ର ମଧ୍ୟରେ ତାଙ୍କର ପ୍ରାଣର ଏ ଦୁରନ୍ତ କାମନା ଓ ଦୁର୍ବିଷହ ବେଦନା ଅଛି ? କେଉଁଠାରେ ଔପନ୍ୟାସିକ କବିର ଆବେଗରେ ତାଙ୍କର

ଅଭିବ୍ୟକ୍ତିକୁ ଅନୁରଞ୍ଜିତ କରି ଶେଲୀଙ୍କର ଏହି ମହାବାଣୀ **"our sweetest songs are those that tell of saddest thoughts"** କୁ ସାର୍ଥକ କରିଅଛନ୍ତି ? କେଉଁଠାରେ ବିଶ୍ୱପ୍ରକୃତି ସହ ତାଙ୍କ ନରନାରୀଙ୍କ ଚରିତ୍ରର ଯୋଗସୂତ୍ର ଅଛି ? କବିର ଅଳଙ୍କାରିକ ଛଟା ବା ତାଙ୍କ ଉପନ୍ୟାସରେ କାହିଁ ? ପାଠକ ତାର ଚିତ୍ତର ନିକଷରେ ପରଖି କେଉଁଠାରେ କହିବ— ଏହା ଫକୀରମୋହନଙ୍କ ବିଶ୍ଳେଷଣୀ ବୁଦ୍ଧିରୁ ବାହାରି ନାହିଁ, ବାହାରିଛି ତାଙ୍କର ସମ୍ବେଦନଶୀଳ ସୁକୁମାର ତରଳ ତରଙ୍ଗିତ କବି-ହୃଦୟରୁ ? 'ଗଦ୍ୟଂ କବୀନାଂ ନିକଷଂ ବଦନ୍ତି'—ଗଦ୍ୟ ହିଁ କବି-ପ୍ରତିଭାର ନିଦର୍ଶନ—ଏହାର ସାକ୍ଷ୍ୟ ତାଙ୍କ ଉପନ୍ୟାସରେ କାହିଁ ?

ଫକୀରମୋହନଙ୍କର କୌଣସି ଉପନ୍ୟାସ ଏମିଲି ବ୍ରଣ୍ଟିଙ୍କର କାବ୍ୟଧର୍ମୀ **'Withering Heights'** ପରି ନହେଲେ ମଧ୍ୟ, ଆବେଗର ଉଚ୍ଛଳ ଅଭିବ୍ୟକ୍ତି, କଳ୍ପନାର ସୁଦୂର ପ୍ରସାର ଓ ଅନୁଭୂତିର ତୀବ୍ରତା ଯେ ସ୍ଥାନେ ସ୍ଥାନେ ତାଙ୍କ ଉପନ୍ୟାସ-ମାନଙ୍କରେ ନାହିଁ ତାହା ନୁହେଁ । ଦାର୍ଶନିକ ଓ ସୁଦକ୍ଷ ସାହିତ୍ୟ-ସମାଲୋଚକ **Bradley** କହିଛନ୍ତି, **"Whatever in the world has any worth, is an expression of love. Love sometimes talks. Love talking musically is poetry."**

ବ୍ରାଡ଼ଲିଙ୍କର ଏ ପ୍ରେମ ସାଧାରଣ ଲୋକେ ପ୍ରେମକୁ ଯେଉଁ ସୀମିତ ଅର୍ଥରେ ନିଅନ୍ତି ତାହା ନୁହଁ । ଏ ସେହି ପ୍ରେମ ଯାହାଦ୍ୱାରା ପରକୁ ଆପଣାର କରିଯାଏ—ଜଗତର ଯେ କୌଣସି ଲୋକର

ପ୍ରାଣରେ ନିଜର ପ୍ରାଣକୁ ପ୍ରତିଫଳିତ କରିପାଏ । କବିଙ୍କ ଭାଷାରେ—

'ପ୍ରେମ ଭାବେ ଯାର ଅନ୍ତର ପୂରିତ
ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ ।'

ସାହିତ୍ୟରେ, ଦେଶ-କାଳ-ପାତ୍ରକୁ ଅତିକ୍ରମ କରି ଚିରନ୍ତନତ୍ୱର ଅଭାସ ମିଳେ ହୃଦୟ ସହିତ ହୃଦୟର ଏହି ମିଳନରେ । ରବୀନ୍ଦ୍ର-ନାଥ ଯଥାର୍ଥ କହିଅଛନ୍ତି, "ହୃଦ ଦିୟା ହୃଦ ଅନୁଭବ", କିମ୍ବା—

'ଜୀବନେ ଜୀବନେ ଯୋଗ କରା
ନା ହେଲେ, କୃତ୍ରିମ ପଣ୍ୟେ ବ୍ୟର୍ଥ ହୟ
ଗାନେର ପସରା'

ଜୀବନ ସହିତ ଜୀବନର ଏହି ଯୋଗ ଯାହା ଲେଖକର କଳ୍ପନାର ବିସ୍ତୃତି ଓ ପ୍ରାଣ-ପ୍ରାଚୁର୍ଯ୍ୟର ଫଳ, ତାହା—କାବ୍ୟ କବିତାରେ ଯେପରି ଚମତ୍କାର ଭାବରେ ରୂପାୟିତ ହୋଇପାରେ, ଗଦ୍ୟରେ ସେପରି ସମ୍ଭବ ନୁହେଁ । ଗଦ୍ୟ-ରଚନା ସାଧାରଣତଃ ବୁଦ୍ଧି-ପ୍ରସୂତ । ତର୍କ କରି ଯୁକ୍ତି ଦେଖାଇ, ନିଜର ମତ ସୁଚିନ୍ତିତ ଭାବରେ ପ୍ରଖ୍ୟାପନ କରି ପାଠକ ପ୍ରାଣରେ ପ୍ରତୀତି ସଞ୍ଚାର କରିବାକୁ ହେବ । କିନ୍ତୁ କବିତାରେ ପାଠକର ପ୍ରାଣକୁ ସମ୍ମୋହିତ କରି ହେବ । ହୃଦୟର ସି-ତନ୍ତ୍ରୀକୁ ଝଙ୍କୃତ କରିଦେଇ ହେବ । କରୁଣାରେ ତାର ଚିତ୍ତ-ଭୂମିକୁ ସିକ୍ତ କରିଦେଇ ହେବ । ସ୍ୱପ୍ନଲୋକ ସୃଜନ କରି ପାଠକକୁ କଳ୍ପନାରେ ନିକଟରୁ ଅଜ୍ଞାତ ଦୂର ଭବିଷ୍ୟତକୁ ନେଇଯାଇ ହେବ । ଇନ୍ଦ୍ରିୟଗ୍ରାହ୍ୟ ରାଜ୍ୟରୁ ଅତୀନ୍ଦ୍ରିୟ ରାଜ୍ୟକୁ ନେଇ ହେବ ।

ଜୀବନ ସହିତ ଜୀବନର ମିଳନର ଏହି ନିବିଡ଼ ଉପଲବ୍ଧି ହେତୁ ମାନବତାବାଦୀ କବି ଫକୀରମୋହନଙ୍କ ହୃଦୟରୁ ଅମୃତ-ଧାରା ରୂପେ ସ୍ୱତଃ ଉତ୍ସାରିତ ହୋଇଥିଲା ଏହି ବିଶ୍ୱକଲ୍ୟାଣ ବାଣୀ—ବିଶ୍ୱବୋଧର ଏହି ଅମୋଘ ମହାମନ୍ତ୍ର—

"ତୁମ୍ଭେ ପାପକୁ ଘୃଣା କର, ପାପୀକୁ ଘୃଣା କର ନାହିଁ"—ଏ କେତେବେଳର କଥା ? ହୃଦୟହୀନ ରାମଚନ୍ଦ୍ର ମଙ୍ଗରାଜ ଦିନେ ହେଲେ ତାଙ୍କର ପତିପ୍ରାଣା ସ୍ତ୍ରୀଙ୍କୁ ପଦେ ସ୍ନେହ କିମ୍ବା ଆଦରର କଥା କହିନଥିଲେ । କିନ୍ତୁ ସେ ଦିନ ସେହି ଉପେକ୍ଷିତା ସ୍ତ୍ରୀର ମୃତଦେହ ପାଖରେ ନିର୍ବାକ ନିସ୍ପନ୍ଦ ହୋଇ ସେ ଏକଧ୍ୟାନରେ ବସିଛନ୍ତି । 'ନିଶ୍ଚଳ, ସ୍ତବ୍‌ଧ ଦୁଇ ଆଖିରୁ ଲୋତକ ବହି ଯାଉଅଛି । ମଙ୍ଗରାଜଙ୍କ ଆଖିରେ କେହି କେବେ ଲୋତକ ଦେଖି ନାହିଁ, ଆଜି ନୂତନ ଦେଖାଗଲା ।' ଫକୀରମୋହନ ସେତେବେଳେ କବିର ପ୍ରଜ୍ଞା ଓ ଅନ୍ତର୍ଦୃଷ୍ଟି ଦେଇ, ମଙ୍ଗରାଜଙ୍କ ହୃଦୟ ସହିତ ହୃଦୟକୁ ମିଳାଇ ଦେଇ, ଅର୍ଥଗୃଧ୍ନୁ ଓ ନିଷ୍ଠୁର ମଙ୍ଗରାଜଙ୍କର ଏହି ଦୟନୀୟ ଦୁର୍ଦ୍ଦଶାରେ ଅଶ୍ରୁମୋଚନ କରି, ଆମକୁ ଚେତାବନୀ ଶୁଣାଇଲା ପରି କହିଅଛନ୍ତି—ମଙ୍ଗରାଜ ବର୍ତ୍ତମାନ ନିଜ ଦୁଷ୍କୃତ ପାଇଁ ଅନୁତପ୍ତ । ଘଟନାଚକ୍ରରେ ମନୁଷ୍ୟ କେତେବେଳେ ଉଠେ, କେତେବେଳେ ବା ପଡ଼େ । 'ମଦ୍ୟପ ଦୁରାଚାର ଜଗାଇ ମାଧାଇ ପରମ ବୈଷ୍ଣବ ହେବେ, କିଏ ଜାଣିଥିଲା ?' ତେଣୁ ପାପୀକୁ ଘୃଣା କର ନାହିଁ । ମଙ୍ଗରାଜଙ୍କୁ କ୍ଷମାକର । ଆଜି ତାଙ୍କର ସଦ୍‌ବୃତ୍ତି ଜାଗରିତ ହୋଇ ଉଠିଛି ।

ସେହିପରି ସାଆନ୍ତାଣୀଙ୍କ ମୃତ୍ୟୁର ଯେଉଁ କରୁଣ ଚିତ୍ର ଅତି ଅଳ୍ପ ପରିସର ମଧ୍ୟରେ ଫକୀରମୋହନ ଦେଇଅଛନ୍ତି, ତାର ଭାଷା

କି ଲଳିତ, କି ମଧୁର ! ତାହା ପଢ଼ିଲେ ମୃତ୍ୟୁର ଗୋଟିଏ ଗମ୍ଭୀର ଶୋକର କାଳିମା ଯେପରି ପାଠକର ପ୍ରାଣକୁ ଅଚ୍ଛନ୍ନ କରିଦିଏ । କରୁଣ ରସର ମୂର୍ଚ୍ଛନା ହୃଦୟର ତନ୍ତ୍ରୀକୁ ଅଲୋଡ଼ିତ କରିଦିଏ । ଏହିଠାରେ ଫକୀରମୋହନଙ୍କ ମାନବତାବାଦ, ମନୁଷ୍ୟ ପ୍ରତି ତାଙ୍କର ପ୍ରଗାଢ଼ ମମତା ଓ ସଂବେଦନା ଅତି ଭାବାବେଗପୂର୍ଣ୍ଣ ହୋଇ ଉଠିଅଛି ।

"ହେ ପାଠକ ଅବଧାନ କ୍ଷମା କରନ୍ତୁ, ଏତିକି ହେଉ, ଦେବ ଦୁନ୍ଦୁଭି ଅହିଅ ନାଗରା ବାଜିଲଣି, ଶୁଭ କଉଡ଼ି ଗୋଟାଇ ନେଇ ମଙ୍ଗଳ ପେଡ଼ିରେ ରଖିବା ସକାଶେ ଗ୍ରାମର ସୁଲକ୍ଷଣୀ ଅହିଅ ସ୍ତ୍ରୀମାନେ ଦାଣ୍ଡକୁ ମୁହିଁ ବସିଛନ୍ତି, ଏତିକି ହେଉ ।"

"ହରି ହରି ବୋଲ ମନ"

ଗୋଟିଏ ପ୍ରାଣୀ ସଂସାରରୁ ବିଦାୟ ନେଇ ଯାଉଛି ଚିରକାଳ ନିମନ୍ତେ, ଏଥିପାଇଁ ଫକୀରମୋହନଙ୍କ ପ୍ରାଣର ଗଭୀର ବେଦନାର ଅନୁଭୂତି ପାଠକ-ପ୍ରାଣରେ ଯେଉଁ ଅନୁରଣନ ସୃଷ୍ଟିକରେ ତାହା କେବଳ କବିପ୍ରାଣ ଔପନ୍ୟାସିକ ପକ୍ଷରେ ସମ୍ଭବ ।

କବିଙ୍କର 'ମୃତ୍ୟୁଶଯ୍ୟା'ରେ କବିତାରେ ମୃତ୍ୟୁର ସେହି କରୁଣ ଚିତ୍ର ଅତି ଜୀବନ୍ତ ଓ ପ୍ରାଣସ୍ପର୍ଶୀ ହୋଇଅଛି । କବି ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏହି କବିତାଟି ଲେଖିଥିଲେ । ସେତେବେଳେ କବିଙ୍କର ଅନ୍ୟ ଚିନ୍ତା ନାହିଁ । କେବଳ ଚିରବିଦାୟର ଚିନ୍ତା । ମୃତ୍ୟୁର ପରପାରର ଅନନ୍ତ ଧାମ ନିମନ୍ତେ ପ୍ରାଣ ତୃଷିତ । ତେଣୁ କବି ଲେଖିଅଛନ୍ତି—

ଏ କି ବନ୍ଧୁଙ୍କ ବେଶର ଦେଇ ପୁଷ୍ପ ଉପହାର
ସଜାଇ ପ୍ରତିମାକାର ଅଣିଛନ୍ତି ମୋତେ,
ମୋହ ପକ୍ଷେ ବର୍ତ୍ତମାନ ପଙ୍କ ଚନ୍ଦନ ସମାନ
ସମ ମାନ ଅପମାନ ନକଲେ ପରତେ ।
ବୋଲ ହରି ହରି ବାଣୀ ଯେତୁଣ୍ଟୁ ଏବେ ମେଲାଣି
ଜନ୍ମଭୂମି ଠାକୁରାଣି, କରେ ନମସ୍କାର,
କାଟିଛୁ ଜୀବନକାଳ କରି ବହୁତ ଜଞ୍ଜାଳ
ନିଅ ଦେହ ଚିତାନଳ ଭସ୍ମ ଉପହାର ।

ମୃତ୍ୟୁର ଏ ହୃଦୟବିଦାରକ କରୁଣ ଚିତ୍ର, ଯାହାଠାରୁ ବଳି ଅଧିକ ମର୍ମନ୍ତୁଦ ଯନ୍ତ୍ରଣା ମନୁଷ୍ୟ ଜୀବନରେ ନାହିଁ, ତାହା ଫକୀରମୋହନଙ୍କ ବେଦନାହତ କବି-କଳ୍ପନାରେ ଶୋକର ଗୀତ-ଝଙ୍କାର ସୃଷ୍ଟି କରିଛି ଏହି ଗୋଟିଏ ଅତି କ୍ଷୁଦ୍ର ବାକ୍ୟରେ— "ଠିକ୍ ଏତିକିବେଳେ ପଶ୍ଚିମାକାଶରେ ଯେଉଁ ଇନ୍ଦୁପ୍ରଭା ଲିଭିଗଲା, କାଲି ସନ୍ଧ୍ୟାବେଳେ ପୁଣି ଉଦୟ ହେବ । ସମସରପୁରରୁ ଚିରକାଳ ପାଇଁ ଇନ୍ଦୁମତୀ ଅସ୍ତ ଗଲା ।"

ବଙ୍ଗଳାର ପ୍ରସିଦ୍ଧ ଔପନ୍ୟାସିକ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଉପନ୍ୟାସର ରଚନାରୀତିର ଆଲୋଚନା କରିବାକୁ ଯାଇ ଜଣେ ସମାଲୋଚକ ଲେଖିଅଛନ୍ତି, "ଶରତଚନ୍ଦ୍ରଙ୍କ ରଚନାର ବାସ୍ତବତା ସର୍ବଜନବିଦିତ, କିନ୍ତୁ ଏହି ବାସ୍ତବପ୍ରିୟତା ସଙ୍ଗେ ଯେ କବି-ପ୍ରତିଭା ଜଡ଼ିତ ଅଛି, ତତ୍ପ୍ରତି ସକଳର ଦୃଷ୍ଟି ପଡ଼େ ନାହିଁ ।" ଏ ଉକ୍ତିଟି ଫକୀରମୋହନଙ୍କ ରଚନା ରୀତି ପ୍ରତି ପ୍ରଯୋଜ୍ୟ ।

ଉପନ୍ୟାସ ସାହିତ୍ୟରେ ଫକୀରମୋହନଙ୍କ ଏ କବି-ପ୍ରତିଭାର ନିଦର୍ଶନ ବିଶ୍ୱପ୍ରକୃତି ମଧ୍ୟରେ ମନୁଷ୍ୟ ଜୀବନର ସୁଖଦୁଃଖର

ପ୍ରତିଚ୍ଛବି ଅଙ୍କନ କରିବାରେ ଦେଖିବାକୁ ମିଳେ । ଏଥିରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପରି ଦୃଷ୍ଟିର ବିସ୍ତାର ନାହିଁ, ତେବେ ପ୍ରକୃତିର ପୃଷ୍ଠଭୂମିରେ ସମୟେ ସମୟେ ମନୁଷ୍ୟ ଜୀବନର ଯେଉଁ ଆଲେଖ୍ୟ ସେ ଦେଇଅଛନ୍ତି, ସେଥିରେ ତାଙ୍କର କବିପ୍ରାଣର ସ୍ପନ୍ଦନ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, ଯେତେବେଳେ ଗୋପୀ ସାହୁ ଦୋକାନରେ ଗୋବିନ୍ଦା ଭଣ୍ଡାରି ଧନଲୋଭରେ ଚମ୍ପାକୁ ହତ୍ୟା କରିବାକୁ ବସେ, ସେତେବେଳେ ପ୍ରକୃତିର ଆକାର କି ଭୟଙ୍କର ! ଜୀବଜନ୍ତୁ ସମସ୍ତେ କିପରି ନିଷ୍ପନ୍ଦ ଓ ନିସ୍ତବ୍ଧ ! ମନୁଷ୍ୟର ଏ ଉତ୍କଟ ହିଂସା ପ୍ରବୃତ୍ତି ଦେଖି ବିଶ୍ୱଚରାଚର କିପରି ସ୍ତମ୍ଭୀଭୂତ, ତାହାର ଚିତ୍ର କବି-ଜନ-ସୁଲଭ କଳ୍ପନା ଓ ଅନବଦ୍ୟ ପ୍ରକାଶଭଙ୍ଗୀରେ କବି ବ୍ୟକ୍ତ କରିଅଛନ୍ତି—

"ଘୋର ଅନ୍ଧକାର ରାତି, ମଣିଷ ନିଜ ଦେହ ଦେଖି ପାରିବ ନାହିଁ । ସାଁ ସାଁ କରି ଦକ୍ଷିଣା ପବନ ବାଡ଼ୋଉଛି, ଡୁହାକୁ ଡୁହା ବରଷା, ବରଗଛଟା ଗୋଟାଏ ଅନ୍ଧକାର ଗଦାପରି ଛିଡ଼ା ହୋଇ ଦୋହଲି ଦୋହଲି ଗୋଟାଏ କେମନ୍ତ ଆତଙ୍କଜନକ ଶବ୍ଦ କରୁଅଛି । × × × ଚତୁର୍ଦ୍ଦିଗରେ ପୈଶାଚିକ ଶବ୍ଦ, ଘର ମଧ୍ୟରେ ଚମ୍ପାର ଅନୁନାସିକ ଶବ୍ଦ ଅତିବ ଭୟଙ୍କର ଶୁଭୁଅଛି । ସେହି ଅନ୍ଧକାର ଗଦାତଳେ ଦୁଇଟା ପକ୍ଷୀର ଖେଁ ଖେଁ କାମୁଡ଼ା କାମୁଡ଼ି ଶବ୍ଦ ଶୁଣି ଗୋବିନ୍ଦା ଚମକି ପଡ଼ି ଅନାଇଲା । ଘର ମଧ୍ୟରେ ଜଳୁଥିବା ଦୀପର ତେଜଟି କ୍ରମଶଃ କ୍ଷୀଣ ହୋଇ ଆସୁଛି । ଶେଷ ସନ୍ଧ୍ୟାରେ ପଶ୍ଚିମ ଆକାଶରେ ଗୋଟିଏ ମାତ୍ର ଲୋହିତ କିରଣ ରେଖା ଅନନ୍ତ ଆକାଶରେ ପଡ଼ିଲା ପରି ଘର ମଧ୍ୟରେ ଜଳୁଥିବା ଦୀପରୁ ଗୋଟିଏ କିରଣରେଖା ନିସ୍ତେଜ ଭାବରେ ସେହି ଅନ୍ଧକାର ତଳେ ପଡ଼ିଅଛି ।" ଗୋବିନ୍ଦା ଏହି ସମୟରେ ବାହାରେ ଦୁଇଟା ବିଲୁଆ

ବରଫଳ ଖୋଜ ଖୋଜ କଲ ଲଗାଉଥିବାର ଦେଖି ଜିଂଘାସା ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଚମ୍ପାକୁ ହତ୍ୟା କରିବାକୁ ଉଦ୍ୟତ ହେଲ । ନରହତ୍ୟାର ଏ ବୀଭତ୍ସିକା ମାନବପ୍ରେମୀ ଫକୀରମୋହନ ବାସ୍ତ-ପ୍ରକୃତର ପରବେଶ ମଧ୍ୟରେ କପରି ଜୀବନ୍ତ ଓ ଅନୁଭୂତିଗୋଚର କରିଅଛନ୍ତି ତାହା କବି-ଦୃଷ୍ଟି ଦେଇ ନ ଦେଖିଲେ ବୁଝିବା ଅସମ୍ଭବ ।

ରସ୍କିନ୍ (**Ruskin**) କବିତାର ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ କହିଥିଲେ, **"The suggestion by the imagination, of noble grounds for the noble emotions."**

ଏହି ପରିପ୍ରେକ୍ଷିତରେ ବିଗ୍ଭର କଲେ ଫକୀରମୋହନଙ୍କ ଉପନ୍ୟାସରେ ସୁମହାନ୍ ଭାବୋଚ୍ଛ୍ୱାସର ବହୁ କଳ୍ପନାନୁରଞ୍ଜିତ ଓ ସ୍ୱତଃସ୍ଫୂର୍ତ୍ତି ପ୍ରକାଶ ଦେଖିବାକୁ ମିଳେ । ଐତିହାସିକ ଉପନ୍ୟାସରେ ମଧ୍ୟ ଏହି କବି-କଳ୍ପନାର ସ୍ୱାକ୍ଷର ଅଛି ।

"ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିବା ସମୟରେ ହତ୍ୟାକାରୀ ଦୁଇଜଣ ସ୍ୱୀୟ ସ୍ୱୀୟ ଦେହବଳରେ ପରସ୍ପର ଉପରେ ଈଷଦ୍-ଭାବରେ ନିପତିତ ହୋଇଗଲେ । ଉଭୟେ ଅନୁଭବ କଲେ ଯେମନ୍ତ ସ୍ୱର୍ଗୀୟ ଅମୃତଧାରା ଦୁଇଜଣଙ୍କ ଦେହରେ ପ୍ରତ୍ୟେକ ରକ୍ତବିନ୍ଦୁରେ ସଞ୍ଚାରିତ ହୋଇଗଲା । ଉଭୟେ ଉଭୟଙ୍କ ମୁଖକୁ ଗ୍ଭହିଁ ସ୍ତମ୍ଭିତ ଭାବରେ ଉଭା ହୋଇଛନ୍ତି । ଦୁଇଜଣଙ୍କ ହସ୍ତରେ ରକ୍ତଲିପ୍ତ କରାଳ ଛୁରିକା, ପଦତଳେ ନିହତ ଭାସ୍କର ପଣ୍ଡିତର ଶରୀର ବାଲୁଣ୍ଠିତ ହେଉଅଛି । ଏତେ ଯେ ଗଣ୍ଡଗୋଳ, ଏତେ ଯେ ପ୍ରାଣନାଶ, ସେଥିରେ ସେହି ହନ୍ତାରକଦ୍ୱୟଙ୍କର କିଛିମାତ୍ର ଜ୍ଞାନ ନାହିଁ ।"

ଏ 'ଜ୍ଞାନ' କେବଳ ବହୁଦିନ ହେଲା ଘଟନା ବିପର୍ଯ୍ୟୟରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଥିବା ବିରହତାପିତ ବାଦଲସିଂହ କମ୍ବା ଲଛମାର 'ଜ୍ଞାନ' ନୁହେଁ, ଏହା କବି ଫକୀରମୋହନଙ୍କର 'ଜ୍ଞାନ' । ସେ ତାଙ୍କର ସୁମହାନ୍ କଳ୍ପନାରେ ଅନୁଭବ କରି ପାରିଛନ୍ତି, ବାଦଲସିଂହର ଦେହ ସହିତ ଲଛମାର ଏ ଯେଉଁ ଆକସ୍ମିକ ଦେହ-ସ୍ପର୍ଶ, ଏଥିରେ ଉଭୟଙ୍କ ପ୍ରାଣରେ ଅଜ୍ଞାତଭାବରେ ଜାଗି ଉଠିଛି ସେହି ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରେମ । ଏ ଦାମ୍ପତ୍ୟ ପ୍ରଣୟର ଏହିପରି ଗୋଟିଏ ଯାଦୁକରୀ ଶକ୍ତି ଅଛି ଯାହା ସାମାନ୍ୟ ସ୍ପର୍ଶରେ, କ୍ଷଣିକ ଶରୀର-ସାନ୍ନିଧ୍ୟରେ ଉଜ୍ଜୀବିତ ହୋଇ ଉଠି ସ୍ୱାମୀ ଓ ସ୍ତ୍ରୀ ପ୍ରାଣକୁ ଏକ ଅପୂର୍ବ ଆନନ୍ଦରେ ପୁଲକିତ କରିଦିଏ । ଏତେ ଗଣ୍ଡଗୋଳ ମଧ୍ୟରେ ଦୁଇଟି ପ୍ରାଣୀ କେବଳ ଧ୍ୟାନନିବିଷ୍ଟ ଚିତ୍ତରେ ପରସ୍ପରକୁ ଚୁହିଁ ରହିଛନ୍ତି । ନିର୍ମମ ହତ୍ୟାକାଣ୍ଡର ଅନ୍ତରାଳରେ ଦୁଇଟି ପ୍ରେମ-ତୃଷିତ ବ୍ୟକ୍ତିର ଜୀବନର ଏହି ଯେଉଁ ମହନୀୟ ଅନୁଭୂତ-ସମ୍ପଦ, ତାହା କେବଳ କବି-ହୃଦୟର ସେହି ସୁମହାନ୍ ଓ ପ୍ରସାରଶୀଳ ସମ୍ବେଦନାର ବହିଃପ୍ରକାଶ ।

ସେହିପରି 'ମାମୁଁ' ଉପନ୍ୟାସରେ କାରାଗାରର ପ୍ରାଚୀର ବେଷ୍ଟନୀ ମଧ୍ୟରେ ଫକୀରମୋହନ ଆମକୁ ତାଙ୍କର ସେହି କବିଜନ-ସୁଲଭ ସୁମହାନ୍ ମାନବ-ପ୍ରୀତି ଓ ଆବେଗ-ଉଚ୍ଛ୍ୱାସର ପରିଚୟ ଅତି ଚମତ୍କାର ଭାବରେ ଦେଇଅଛନ୍ତି । ସେଠାରେ ଫକୀରମୋହନଙ୍କ କବିତ୍ୱ ଆଉ ଗଦ୍ୟର ଅନ୍ତରାଳରେ ନିଜକୁ ପ୍ରଚ୍ଛନ୍ନ କରି ରଖି ପାରି ନାହିଁ । ଯେତେ ପ୍ରଚ୍ଛନ୍ନ ରଖିବାକୁ ଚେଷ୍ଟା କଲେ ସୁଦ୍ଧା ପ୍ରତିଭା ଲୁଚି ରହେ ନାହିଁ । ନିଜକୃତ ପାପର ଅନୁଚିନ୍ତା ଓ ଅନୁଶୋଚନାରେ ଯେତେବେଳେ ହାଜତ ଘରେ ନାଜର ନଟବର ଦାସ ଜର୍ଜରିତ, ହୃଦୟର ଗ୍ରନ୍ଥିସମୂହ ଯେତେବେଳେ ତାଙ୍କର ଛିନ୍ନଭିନ୍ନ, ଅତୀତର

ଅଚରିତ ପାପରାଶିକୁ ଗୋଟି ଗୋଟି କରି ମନେ ପକାଇ ଯେତେବେଳେ ସେ ନୈରାଶ୍ୟଗ୍ରସ୍ତ, ସମଗ୍ର ଜଗତ୍ ତାଙ୍କ ପ୍ରତି ଅନ୍ଧକାରାଚ୍ଛନ୍ନ, ସେତେବେଳେ ମାନବ-ପ୍ରେମିକ ଅନୁକମ୍ପାପ୍ରବଣ ଫକୀରମୋହନ ତାଙ୍କୁ ଗୋଟିଏ ଜ୍ୟୋତିର୍ମୟ ପଥ ଦେଖାଇ ଦେଇଛନ୍ତି—ଅନ୍ତରର ଭକ୍ତିପୂତ ବାଣୀ ପ୍ରାର୍ଥନାରେ ଏ ସକଳ ପାପର କ୍ଷାଳନ ସମ୍ଭବ, ନିରାଶ ହେବାର ବେଳ ଏ ନୁହେଁ । ମନୁଷ୍ୟ ଆଶାରେ ହିଁ ବଞ୍ଚି ରହିଛି । ତେଣୁ ଅନୁତପ୍ତ ନାଜର ନଟବର ଦାସଙ୍କ ମୁହଁରେ ସେ କହିଅଛନ୍ତି,

"ହେ ସ୍ୱର୍ଗସ୍ଥ ପିତୃଦେବ ! ଏହି ଅଧମ, ପାପିଷ୍ଠ, ଦୁରାତ୍ମା, କୁଳାଙ୍ଗାର, ବଂଶର ସର୍ବନାଶକାରୀ, ସ୍ୱାର୍ଥପର ଅଧମ ସନ୍ତାନ ତୁମ୍ଭ ପବିତ୍ର ନାମ ଉଚ୍ଚାରଣ କରିବାର ଅଯୋଗ୍ୟ, କ୍ଷମା କର ।" ଏଥିରେ କବିର କଳ୍ପନା ନାହିଁ । ଏହା ଗୋଟିଏ ସଂସ୍କୃତ ଶ୍ଳୋକର ମର୍ମୋଦ୍ଧାର । କିନ୍ତୁ ଏଥିରେ ପିତୃଭକ୍ତିର ଯେଉଁ ମହନୀୟ ଭାବଧାରା ନିହିତ, ଫକୀରମୋହନ ସେହି ଭାବଧାରାର ପୃଷ୍ଠପୋଷକ । ଇଂରେଜୀ ପାଠ ପଢ଼ି ପିତୃଦ୍ରୋହୀ ହେବାର କଳ୍ପନା ଫକୀର-ମୋହନଙ୍କ ପ୍ରତି ଦୁଃସହ ।

କିନ୍ତୁ ନଟବର ଦାସଙ୍କ ଅନୁଶୋଚନାର ତୀବ୍ରତା ମଧ୍ୟରେ ତାଙ୍କର ଏହି ପିତୃଦ୍ରୋହିତା ବଡ଼ କଥା ନୁହେଁ । ଏଠାରେ ଫକୀରମୋହନ ନଟବର ଦାସଙ୍କ ଅନୁତାପକୁ ଗୋଟିଏ ବିସ୍ତୃତ ପରିସରକୁ ଟାଣି ଆଣି, ତାଙ୍କର ଆଜୀବନ ପୁଞ୍ଜୀଭୂତ ଦୁଷ୍କର୍ମ-ରାଜିରେ ତାଙ୍କର ହୃଦୟ-ଦେଶକୁ ମଥିତ ଓ ବିଦାରିତ କରି ଦେଇଅଛନ୍ତି । ଆଧ୍ୟାତ୍ମିକ ଚେତନାର କ୍ଷଣିକ ଉନ୍ମେଷରେ ତାଙ୍କୁ ନରାଧମରୁ ସ୍ୱର୍ଗର ଦେବତାରେ ରୂପାନ୍ତରିତ କରି ଦେଇଅଛନ୍ତି ।

ତାଙ୍କ ଅନୁତପ୍ତ ହୃଦୟରୁ ଯେଉଁ ଅମୃତମୟ ଝଙ୍କାର ପ୍ରଶାନ୍ତ କଣ୍ଠରେ ଉଚ୍ଛ୍ୱସିତ ହୋଇ ଉଠିଛି, ସେଇଥିରେ ସତେ ଯେପରି ତାଙ୍କ ଅନ୍ତରର ସକଳ କାଳିମା ବିଧୌତ ହୋଇଯାଇଛି ।

ସେ ଅକୁଳ ପ୍ରାଣରେ ଗାଇ ଉଠିଲେ—

ଭ୍ରମିଲି ଦୁଃଖ ସିନ୍ଧୁ ଜଳେ

ରଖ ରଖ ମହାପ୍ରଭୁ, ଅଭୟ ପଦକମଳେ ।

ଏ ସଙ୍ଗୀତ ଶୁଣି ଅନ୍ୟ ଡକା ଦଳ ବନ୍ଦୀ ଉଠି ବସିଲେ । ସେମାନଙ୍କ ହୃଦୟରେ କିଏ ଯେପରି ଅମୃତ ଢ଼ାଳି ଦେଉଛି । ସେମାନେ ସ୍ଥିର ଭାବରେ ବସି ସଙ୍ଗୀତ ଶୁଣୁଛନ୍ତି । ପ୍ରହରୀ ସିପାହୀଟା ମଧ୍ୟ ଗୀତ ଶୁଣି ତା କର୍ତ୍ତବ୍ୟଟା ଭୁଲି ଯାଇଛି । ତା ମନରେ ମଧ୍ୟ ଏ ସଙ୍ଗୀତ ଶାନ୍ତି-ସୁଧା ଢ଼ାଳି ଦେଉଛି । "ପାପୀକୁ ଘୃଣା କର ନାହିଁ, ପାପକୁ ଘୃଣା କର" ଏହି ମହନୀୟ ଆଦର୍ଶରେ ଫକୀରମୋହନ ଏପରି ଉଦ୍‌ବୁଦ୍ଧ ଯେ ସେହି ଉଦ୍‌ବୋଧନ ଏଠାରେ କବିର କଳ୍ପନାରେ ଏ ସ୍ତୁତି-ସଙ୍ଗୀତର ମଧୁର ମୋହନ ଗୀତ ଝଙ୍କାରରେ କିପରି ଆବେଦନଶୀଳ ହୋଇ ଉଠିଛି ତାହା ବୁଝାଇ କହିବା ନିଷ୍ପ୍ରୟୋଜନ ।

'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଇନ୍ଦୁମତୀ ଆତ୍ମହତ୍ୟା କରିବା ପୂର୍ବରୁ ଯେଉଁ ସ୍ୱପ୍ନ ଦେଖିଅଛନ୍ତି, ଯେଉଁ ଗଭୀର ଅନୁଶୋଚନାରେ ତାଙ୍କର ହୃଦୟ ହାହାକାର କରି ଉଠିଛି ଓ ଯେପରି ନିରାଶ୍ରୟ ଭାବରେ ସେ ଶୋକାତୁରା ହୋଇ ପଡ଼ିଛନ୍ତି, ତାହା ଫକୀର-ମୋହନଙ୍କ କବିତ୍ୱର ଆଉ ଗୋଟିଏ ସମୁଜ୍ଜ୍ୱଳ ନିଦର୍ଶନ । ତାଙ୍କର ହୃଦୟ ଇନ୍ଦୁମତୀ ପାଇଁ କାନ୍ଦୁଛି—ଲୁହ ନକାନ୍ଦି, ଲହୁ କାନ୍ଦୁଛି, ମର୍ମେ ମର୍ମେ ସେ ଇନ୍ଦୁମତୀର ଏ କରୁଣ ଅନୁଭୂତ ଉପଲବ୍ଧି

କରିଛନ୍ତି । ସତେ ଯେପରି ନିଃସହାୟା ଇନ୍ଦୁମତୀଙ୍କି ଏ ଦୁଃଖରୁ, ଏ ସଙ୍କଟମୟ ପରିସ୍ଥିତିରୁ କୌଣସି ଉପାୟରେ ରକ୍ଷା କରି ନପାରି ସେ ହତଚେତନ ହୋଇ ପଡ଼ିଛନ୍ତି । ଫକୀରମୋହନ ଏଠାରେ ବାସ୍ତବବାଦିତାର ସୀମା ଲଙ୍ଘନ କରି ଅତି ଅନ୍ତର୍ମୁଖୀ ହୋଇ ପଡ଼ିଛନ୍ତି ।

ଦାର୍ଶନିକ ନ ହୋଇ କବି ନାହିଁ—'**There is no poet without being a philosopher**'. ଜଣେ କବି-ସମାଲୋଚକଙ୍କର ଏହି ଉକ୍ତି ଇନ୍ଦୁମତୀଙ୍କର ଜୀବନାଶା ତ୍ୟାଗ ଓ ଆତ୍ମହତ୍ୟାରେ ଅତି ଅପରୂପ ଅଭିବ୍ୟକ୍ତି ଲାଭ କରିଛି । ସେଥିପାଇଁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ସମଗ୍ର 'ନୈରାଶ୍ୟ' ଶୀର୍ଷକ ପରିଚ୍ଛେଦଟି ପ୍ରତି ମୁଁ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ଦୁଃଖବାଦୀ ଦାର୍ଶନିକମାନଙ୍କ ପରି କବି ଏଠାରେ ତାଙ୍କର ସୁକୁମାର ଭାଷାବିନ୍ୟାସରେ ଲେଖିଅଛନ୍ତି, "ମାନବ ପୃଥିବୀକୁ ଆଗମନର କାରଣ କ୍ରନ୍ଦନ, ମାନବ ଜନ୍ମ ସମୟରେ କ୍ରନ୍ଦନ, ଜୀବନବ୍ୟାପୀ କାଳ କ୍ରନ୍ଦନମୟ ।" ଜୀବନର ସକଳ ଆଶା ଗୋଟି ଗୋଟି ହୋଇ ଇନ୍ଦୁମତୀର ହୃଦୟ-ଆକାଶରୁ ତିରୋହିତ । ଜନନୀ ନାହାନ୍ତି । ଭାବିଥିଲେ ପତିଙ୍କ ସହିତ ଦାମ୍ପତ୍ୟ-ସୁଖରେ କାଳ ଅତିବାହିତ କରିବେ । କିନ୍ତୁ ବିଧାତା ତା ବି କରାଇ ଦେଲେ ନାହିଁ । ଏଠାରେ ଲକ୍ଷ୍ୟ କରିବାର କଥା, କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ରୂପ ଓ ଗୁଣ ବର୍ଣ୍ଣନାରେ କବିଙ୍କର ଛନ୍ଦୋବଦ୍ଧ ଭାଷାର ପରିପାଟୀ—"ବିଷୟ ଐଶ୍ବର୍ଯ୍ୟରେ ରାଜପୁତ୍ର କୁଳମର୍ଯ୍ୟାଦାରେ ମୁକୁଟମଣି, ସ୍ୱାସ୍ଥ୍ୟ ସୌନ୍ଦର୍ଯ୍ୟରେ ନବକିଶୋର କାର୍ତ୍ତିକେୟ ସ୍ୱରୂପ ।" ଏ ରୂପକଳ୍ପନା କବିଙ୍କଠାରୁ କେବଳ ଆଶା କରାଯାଏ । ତା ପରେ ଇନ୍ଦୁମତୀଙ୍କ

ନୈରାଶ୍ୟର ଦୁର୍ବିଷହତାର ଚିତ୍ର ଅଙ୍କନ କରିବାକୁ ଯାଇ ଫକୀର-ମୋହନ କାବ୍ୟିକ ଅଳଙ୍କାର-ଚ୍ଛଟାରେ ଲେଖିଛନ୍ତି—

"ସୁଖ ସୌଭାଗ୍ୟର ଅରୁଣ ଜ୍ୟୋତି ବିକାଶ, ମାତ୍ର ବିପଦ-ରାଶି ବାରିଦପଟଳ ଆଚ୍ଛାଦିତ । ଏକ ସଙ୍ଗରେ ଯେମନ୍ତ ଶତସହସ୍ର ଦାରୁଣ କୁଳିଶ ଭାଙ୍ଗି ପଡ଼ୁଛି ।"

ଇନ୍ଦୁମତୀ ପ୍ରତି ଫକୀରମୋହନଙ୍କର ଏହି ସମପ୍ରାଣତା ବୋଧହୁଏ ବିଶ୍ୱସାହିତ୍ୟରେ କେବଳ ଦେଖିବାକୁ ମିଳେ 'ଆନେକାରେନିନା' ଉପନ୍ୟାସରେ । ଦାମ୍ପତ୍ୟ ଜୀବନରେ ଦୁଃଖ ଓ ନୈରାଶ୍ୟ ଯୋଗୁଁ ଶେଷରେ ଚଳନ୍ତା ରେଳଗାଡ଼ି ତଳେ ପଡ଼ି ଆତ୍ମହତ୍ୟା କରିଥିବା ଅଭାଗିନୀ ଆନେକାରେନିନା ପ୍ରତି ଋଷିପ୍ରାଣ ଟଲଷ୍ଟୟଙ୍କ ଗଭୀର ସମ୍ବେଦନଶୀଳତା ସହିତ ଏହାର ସାମଞ୍ଜସ୍ୟ ଲକ୍ଷ୍ୟ କରିବାର କଥା ।

ଇନ୍ଦୁମତୀଙ୍କର ଆତ୍ମହତ୍ୟା ପରେ ତାଙ୍କ ମୃତଦେହର ଯେଉଁ ପ୍ରାଞ୍ଜଳ ଓ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ତାଙ୍କୁ ଗୋଟିଏ 'ଦେବୀ ପ୍ରତିମା' ରୂପେ ଚିତ୍ର କରିବା ପାଇଁ ଫକୀରମୋହନଙ୍କର ଯେଉଁ ବ୍ୟାକୁଳ ନିଷ୍ଠା, ସେ ବର୍ଣ୍ଣନା ଯେ କୌଣସି ମହାକାବ୍ୟ କିମ୍ବା କାବ୍ୟର ସମ୍ପଦ ହୁଅନ୍ତା । ଏହି ସବୁ କାବ୍ୟିକ କାରଣରୁ, ଉପନ୍ୟାସରେ ନାନା ସ୍ତରର ଲୋକମାନଙ୍କର ବାସ୍ତବାଭିମୁଖୀ ଚରିତ୍ରଚିତ୍ରଣରୁ, ସମାଜର ନାନା ସମସ୍ୟାର ଅବତାରଣାରୁ, ଲେଖକର ପ୍ରସନ୍ନମୁଖିତା ଓ ଜୀବନ-ଜିଜ୍ଞାସାରୁ କେହି କେହି ସମାଲୋଚକ ଉପନ୍ୟାସର ନାମକରଣ କଲେଣି 'Comic Epic of Prose' କିମ୍ବା 'Epic of Democracy' । ବାସ୍ତବରେ ଉପନ୍ୟାସ ଗଦ୍ୟ-ରଚିତ ଗୋଟିଏ ମହାକାବ୍ୟ । ସଂସ୍କୃତ-ସାହିତ୍ୟରେ ବାଣଭଟ୍ଟଙ୍କ

'କାଦମ୍ବରୀ' ଗଦ୍ୟରେ ରଚିତ, କିନ୍ତୁ ଯେ କୌଣସି ପଦ୍ୟରଚିତ ମହାକାବ୍ୟ ସହିତ ଏହାର ବହୁ ସାମଞ୍ଜସ୍ୟ ।

ଏହିପରି ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କଲେ 'ଛମାଣ ଅଠଗୁଣ୍ଠ', 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ'କୁ ଗୋଟିଏ ଗୋଟିଏ 'ଗଣ-ମହାକାବ୍ୟ' ଅଖ୍ୟା ଦିଆଯାଇପାରେ । 'ଛମାଣ ଅଠଗୁଣ୍ଠ' ଓ 'ମାମୁଁ' ପ୍ରଭୃତି ତ ଦୃଶ୍ୟକାବ୍ୟରେ ରୂପାନ୍ତରିତ ହୋଇ ରଙ୍ଗ-ମଞ୍ଚରେ ଅଭିନୀତ ହୋଇ ସାରିଲାଣି । ଏହାର କାବ୍ୟରସ ରସିକ-ମାନଙ୍କ ଚିତ୍ତକୁ ସମ୍ମୋହିତ କରିସାରିଛି । ତେଣୁ ଫକୀରମୋହନଙ୍କ ଉପନ୍ୟାସରେ କାବ୍ୟିକ ଉପାଦାନ ଅଛି କି ନାହିଁ, ସେଥିରେ ଯୁକ୍ତିତର୍କର ବା ଅବକାଶ କାହିଁ ?

ଫକୀରମୋହନୋତ୍ତର ଓଡ଼ିଆ ଉପନ୍ୟାସମାନଙ୍କରେ ମଧ୍ୟ ଏ କାବ୍ୟଧର୍ମିତା ପ୍ରାଞ୍ଜଳ ଓ ପରିସ୍ଫୁଟ । ଜୀବନରେ ଅହିତ ହେବା ପୂର୍ବରୁ ଇନ୍ଦୁମତୀ-ହୃଦୟର ଗଭୀର ଦୁଃଖ ଓ ନୈରାଶ୍ୟ ଫକୀର-ମୋହନ ଯେପରି ଆବେଗମୟୀ ଭାଷାରେ ବ୍ୟକ୍ତ କରିଅଛନ୍ତି, ଲବ୍‌ଧପ୍ରତିଷ୍ଠ ଔପନ୍ୟାସିକ ଶ୍ରୀ କାହ୍ନୁଚରଣ ମହାନ୍ତି 'ହା ଅନ୍ନ' ଉପନ୍ୟାସରେ ନିରାଶ୍ରୟା ଓ ନୈରାଶ୍ୟପୀଡ଼ିତା ଉମା-ଜୀବନର ହୃଦୟ-ବିଦାରକ ଦୁଃଖ ସେହିପରି କବି-ପ୍ରାଣର ତୀବ୍ର ସହାନୁଭୂତି ଓ ସମବେଦନାରେ ରୂପାୟିତ କରିଅଛନ୍ତି । ଗଦ୍ୟ-ଶୈଳୀର ସାହାଯ୍ୟରେ, ଲେଖକର ଅନୁଭୂତି ଯେ ଏପରି କରୁଣରସସିକ୍ତ ହୋଇପାରେ, ଓଡ଼ିଆ କଥା-ସାହିତ୍ୟରେ ବଡ଼ କ୍ୱଚିତ୍ ଏହା ଆଖି ଆଗରେ ପଡ଼େ । ଅନ୍ଧୁଣୀ ବୋଉର ମୃତ୍ୟୁପରେ ଉମାକୁ ଏ ସମଗ୍ର ବ୍ରହ୍ମାଣ୍ଡଟା ଶୂନ୍ୟ ଦେଖା ଯାଉଛି । ଅଉ ଜୀବନ ପ୍ରତି ତାର ମାୟା ମମତା ନାହିଁ । ଖରାରେ ନିଆଁ ପରି ତାତିଥିବା ବାଲିରେ ନଈକୁ ଗାଧୋଇଯିବାକୁ ତାର କୁଣ୍ଠା ନାହିଁ । ଫୁଟିଲା ନଈ ପାଣିରେ

ଗାଧୋଇବାକୁ ତାର ଭୟ ନାହିଁ । ସେ ବର୍ତ୍ତମାନ ଜୀବନ-ମରଣର ସନ୍ଧିସ୍ଥଳରେ । ତା ପ୍ରତି ପ୍ରାଣର ଗଭୀର ଅନୁକମ୍ପା ଦେଖାଇ କାହ୍ନୁଚରଣ ଲେଖିଛନ୍ତି, "ଅଲୋଡ଼ା ଅବୋଇଜ ପ୍ରାଣ । ବିଲେଇ କୁକୁର ଛୁଆଙ୍କର ଜୀବନର ମୂଲ୍ୟ ଅଛି, ତା'ର ସେ ସବୁ ନାହିଁ । ସେ ମଣିଷ ପିଲା କିନ୍ତୁ ଅବହେଳିତ ବାଟର ଧୂଳିକଣା । ନିଜତ୍ୱ ନାହିଁ । ସମୟର ଫୁତ୍କାରରେ ତାକୁ ଉଡ଼ିବାକୁ ହେବ । ଅବସ୍ଥାର ପଦକ୍ଷେପ ମୁଣ୍ଡ ଉପରେ ସହିବାକୁ ପଡ଼ିବ ।" ଭାଷାର ଏ ଯେଉଁ ସାବଲୀଳ ପ୍ରବାହ, ଏହା ଦରଦୀ କବିପ୍ରାଣରୁ ଯେପରି ସ୍ୱତଃ ଉତ୍ସାରିତ ହୋଇଛି, ସେହିପରି ସହୃଦୟ ପାଠକର ଚିତ୍ତଭୂମିକୁ କାରୁଣ୍ୟ-ଲହରୀରେ ଉଦ୍‌ବେଳିତ କରି ଦେଉଛି ।



( ୯ )

# ଉପନ୍ୟାସରେ ଚରିତ୍ରଚିତ୍ରଣ

## ( ପୁରୁଷ )

ଉପନ୍ୟାସରେ ଚରିତ୍ରଚିତ୍ରଣ ସମ୍ବନ୍ଧରେ କିଛି କହିବାକୁ ଗଲେ ସୁସମାଲୋଚକ ହଡ୍‌ସନଙ୍କ ( **Hudson** ) ଭାଷାରେ ପ୍ରଥମେ ଆମ ମନରେ ଏହି ପ୍ରଶ୍ନ ଉଦିତ ହୁଏ **"Does the novelist succeed in making his men and women real to our imagination ? Do they stand upright on the ground ?"** ଅର୍ଥାତ୍ ଚରିତ୍ର-ଗୁଡ଼ିକ ଆମ କଳ୍ପନା-ଚକ୍ଷୁରେ ପ୍ରାଣବନ୍ତ କି ହୁଅନ୍ତି ? ସେମାନେ ଆମ ଦେଖା ନରନାରୀମାନଙ୍କର ଜୀବନ୍ତ ପ୍ରତିଚ୍ଛବି କି ହୁଅନ୍ତି ? ସେମାନଙ୍କୁ ବାସ୍ତବ ଜଗତର ପରିପ୍ରେକ୍ଷିତରେ ବିଚାର କଲେ ସେମାନଙ୍କର କାର୍ଯ୍ୟକଳାପ ଓ ଗତିବିଧିରେ କିଛି ଅବାସ୍ତବ କିମ୍ବା ଅବିଶ୍ୱାସ୍ୟ କଥା ଆମ ଆଖିରେ ପଡ଼େ କି ନାହିଁ ?

ଫକୀରମୋହନ ନାରୀ ଓ ପୁରୁଷ, ଏ ଉଭୟ ଚରିତ୍ର-ଚିତ୍ରଣରେ ତାଙ୍କର ଜୀବନାଦର୍ଶ ଯେତେ ଆରୋପ କଲେ ମଧ୍ୟ, ଏବଂ ଏହା ତାଙ୍କ ସତ୍ୟାନୁଭୂତିର ଯେତେ ଉଜ୍ଜ୍ୱଳ ପ୍ରତିମୂର୍ତ୍ତି ହେଲେ ମଧ୍ୟ, ସେମାନଙ୍କର ଯେ ଗୋଟିଏ ସ୍ୱତନ୍ତ୍ର ବାସ୍ତବ ଅସ୍ତିତ୍ୱ ଅଛି, ଏହା କେହି ଅସ୍ୱୀକାର କରିପାରିବ ନାହିଁ । ପୂର୍ବରୁ କୁହାଯାଇଛି,

ଫକୀରମୋହନଙ୍କର ଆଦର୍ଶବାଦ ବାସ୍ତବ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ସେ ଯାହା ତାଙ୍କ ପାରିପାର୍ଶ୍ୱିକ ଜଗତରେ ଦେଖିଛନ୍ତି, ଯାହା ଦେଖି ତାଙ୍କର ପ୍ରାଣ ସମବେଦନାରେ ଆକୁଳ ହୋଇଛି, ସେ ସେହି ସବୁ ଘଟନା ତାଙ୍କ ସୃଷ୍ଟ ଚରିତ୍ରମାନଙ୍କରେ ଜୀବନ ରୂପକାରର ତୂଳିକାରେ ସୁଷମାମଣ୍ଡିତ କରି ଅଙ୍କନ କରିଅଛନ୍ତି ।

ପୁରୁଷ ଚରିତ୍ର ମଧ୍ୟରେ 'ଛମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜ, 'ମାମୁଁ'ରେ ନାଜର ନଟବର ଦାସ ଏବଂ 'ପ୍ରାୟଶ୍ଚିତ୍ତ'ରେ କୁଅଁର ଗୋବିନ୍ଦଚନ୍ଦ୍ର ସର୍ବପ୍ରଥମେ ପାଠକର ଦୃଷ୍ଟି ଆକର୍ଷଣ କରନ୍ତି । ରାମଚନ୍ଦ୍ର ମଙ୍ଗରାଜ ଦୁଷ୍ଟ ଓ ଅଶିଷ୍ଟ । ଗରିବର ତଣ୍ଟି ଚିପିବା ତାଙ୍କ ଜୀବନର ଏକମାତ୍ର ଧ୍ୟାନ । ଜୀବନରେ ଅନ୍ୟ ଚିନ୍ତା ନାହିଁ । ଏ ଧନଶୋଷଣର ଏକମାତ୍ର ଅବଲମ୍ବନ ହେଉଛି ଛଳନା, ପ୍ରତାରଣା, ମିଥ୍ୟା ଓ କୂଟକପଟତା । ସମାଜରେ ଏତେ ଲୋକ ଥାଉ ଥାଉ ମଙ୍ଗରାଜ କାହିଁକି ଏପରି ଦୁର୍ବୃତ୍ତ ହୋଇ ଉଠିଲେ, ସେ ରହସ୍ୟ ଫକୀରମୋହନ ଉଦ୍‌ଘାଟନ କରି ନାହାନ୍ତି । ମାନବ-ସମାଜରେ ସମୟେ ସମୟେ ଏପରି ଗୋଟିଏ ଗୋଟିଏ ଅବାଞ୍ଛନୀୟ ବ୍ୟକ୍ତି ଦେଖାଯାନ୍ତି—ଯେଉଁମାନଙ୍କର ଲୋକଲଜ୍ଜା ଓ ନୀତିବୋଧ ନଥାଏ, ଯେଉଁମାନେ କେବଳ ପରିସ୍ଥିତିର ଦାସ—ଅନ୍ୟର କ୍ରୀଡ଼ନକ । ନିଜର ହୋଇ କିଛି ନାହିଁ । ସମାଜରେ ଅନ୍ୟ ପାଞ୍ଚ ଜଣଙ୍କୁ ଛଳେ ବଳେ କୌଶଳେ ଧନାଢ଼୍ୟ ହେବାର ଦେଖିଲେ ସେମାନେ ଅନ୍ଧଭାବରେ ଏହି ପଥ ଅବଲମ୍ବନ କରନ୍ତି । ମଙ୍ଗରାଜେ ପଲ୍ଲୀର ଜଣେ ଅଶିକ୍ଷିତ ବ୍ୟକ୍ତି ବୋଲି ଯେ ସେ ଏହି ଅସତ୍‌ପଥର ପଥିକ ହେଲେ ତା ନୁହେଁ, କିମ୍ବା ରାମଚନ୍ଦ୍ର ମଙ୍ଗରାଜ ଯେତେ ସବୁ ପ୍ରତାରଣାପୂର୍ଣ୍ଣ ମାର୍ଗ ଧନ ସଞ୍ଚୟ କରିବା ନିମନ୍ତେ ଅବଲମ୍ବନ କରିଛନ୍ତି, ଅର୍ଥଲୋଭୀ ସମସ୍ତେ ଯେ ତା କରନ୍ତି ତା ବି ନୁହେଁ ।

ଏପରି ଗୋଟେ ଗୋଟେ କୁଳପାଂଶୁଳ ସେହି ସହଜାତ କୁପ୍ରବୃତ୍ତି ଧରି ଜନ୍ମଗ୍ରହଣ କରିଥାନ୍ତି । ସେ ପ୍ରବୃତ୍ତିକୁ ଇନ୍ଧନ ଯୋଗାଏ କୁସଂସର୍ଗ କମ୍ବା ପରିବେଷ୍ଟନୀ । ମଙ୍ଗରାଜେ ଥିଲେ ଗରିବର ପୁଅ । ସାତବର୍ଷ ବୟସରୁ ସେ ହୋଇଥିଲେ ଛେଉଣ୍ଡ । ଫକୀରମୋହନଙ୍କ ଭାଷାରେ 'ଏହାଙ୍କ ବାଲ୍ୟଜୀବନ, ବିଦ୍ୟାଶିକ୍ଷା, କର୍ମକ୍ଷେତ୍ରରେ ପ୍ରବେଶ ପ୍ରଭୃତି ଘଟଣାମାନ ବିଚିତ୍ର ରକମର' । ଅର୍ଥାତ୍ ପିଲାଦିନରୁ ଛତର। ହୋଇ ବୁଲିଲେ, ଶିକ୍ଷା ଦୀକ୍ଷାର ପ୍ରଭାବ ତାଙ୍କ ଉପରେ ମୋଟେ ପଡ଼ି ନାହିଁ । ଅତ୍ୟଧିକ କୃପଣତା ତାଙ୍କର ଅନ୍ୟ ଗୋଟିଏ ଦୋଷ । ଯେଉଁଠାରେ କାର୍ପଣ୍ୟ, ସେଇଠାରେ ଦୁର୍ଦ୍ଦମ ଧନତୃଷ୍ଣା । ଏହି ଦୁର୍ଦ୍ଦମ ଧନତୃଷ୍ଣାରୁ ନାନା ଅବିଗୁଣ ଓ ଅପଗୁଣ । ସେ ଯେଉଁ ବୁଦ୍ଧି ପ୍ରୟୋଗ କରି ଓ ଛଳନାର ଜାଲ୍ ବିସ୍ତାର୍ କରି ବିଳାସ-ଆଳସ୍ୟପରାୟଣ ଜମିଦାର ସେଖ ଦିଲ୍‌ଦାର ମିଆଁଙ୍କଠାରୁ ଫତେପୁର ସରଷଣ୍ଡର ସରବରାକାରୀ ଓ ସମସ୍ତ କ୍ଷମତା ପାଇଲେ, ସେ ବୁଦ୍ଧିବିଚକ୍ଷଣତା ଓ ପ୍ରତ୍ୟୁତ୍ପନ୍ନମତିତା ସତ୍ ପଥରେ ପରିଚାଳିତ ହୋଇଥିଲେ ସେ ଏ ଯୁଗର ଜଣେ ବିଚକ୍ଷଣ 'ରାଜନୀତିଜ୍ଞ' ହୋଇପାରିଥାନ୍ତେ ।

ଫକୀରମୋହନଙ୍କ ଚରିତ୍ରଚିତ୍ରଣ କେଉଁଠାରେ କେବଳ ବର୍ଣ୍ଣନାତ୍ମକ କମ୍ବା ବିବୃତ୍ତିପ୍ରଧାନ ନୁହଁ । ଘଟଣାର ବିଚିତ୍ର ଗତି ଓ ଚରିତ୍ରମାନଙ୍କର ସଂଳାପ ମାଧ୍ୟମରେ ଲେଖକ ଯବନିକାର ଅନ୍ତରାଳରେ ଥାଇ ତାଙ୍କର ନିଜନିଜର କାର୍ଯ୍ୟକଳାପ ଓ କଥାବାର୍ତ୍ତା ମଧ୍ୟରେ ସେମାନଙ୍କ ଚରିତ୍ରକୁ ଜୀବନ୍ତ କରିଅଛନ୍ତି । ଏହାହିଁ ଚରିତ୍ରଚିତ୍ରଣର କଳାସମ୍ମତ କୌଶଳ—ଏହାହିଁ ଉପନ୍ୟାସର ନାଟକୀୟ ଛଟା ।

ମଙ୍ଗରାଜଙ୍କର ସ୍ୱରୂପ ଉଦ୍‌ଘାଟିତ ହୋଇଛି ଅତି ନାଟକୀୟ ଛଟାରେ 'ଛମାଣ ଆଠଗୁଣ୍ଠ'ର 'ମନ୍ତ୍ରଣା' ପରିଚ୍ଛେଦରେ । ଲେଖକ ଏଠାରେ ନିଜେ କିଛି ନକହି ନିର୍ଲିପ୍ତ ରହି ଆମକୁ ମଙ୍ଗରାଜଙ୍କ ସମ୍ବନ୍ଧରେ ସବୁ କହିଦେଇ ଅଛନ୍ତି । ଅଧରାତିର ଏହି ସର୍ବନାଶ-କାରୀ ମନ୍ତ୍ରଣାଟିରେ ଚମ୍ପା ଓ ମଙ୍ଗରାଜଙ୍କ ମଧ୍ୟରେ ଯେଉଁ ଗୁପ୍ତ ପରାମର୍ଶ ଚାଲିଥିଲା, କେବଳ ମଙ୍ଗରାଜ ନୁହନ୍ତି, ତାଙ୍କର କୁକର୍ମ-ସଙ୍ଗିନୀ ଚମ୍ପା, ଏ ଉଭୟେ ସେଥିରୁ ଧରା ପଡ଼ିଯାଇଛନ୍ତି । ଆଉ ଯେତେ କୁଟକପଟତା କିମ୍ବା ପ୍ରବଞ୍ଚନାର ଛଳନା କଲେ ମଧ୍ୟ ପାଠକ ସେମାନଙ୍କୁ ବିଶ୍ୱାସ କରିବ ନାହିଁ । ମଙ୍ଗରାଜ ଚମ୍ପାର କୁପରାମର୍ଶରେ ଓ ସକ୍ରିୟ ଉଦ୍ୟମରେ ସାରିଆ ଭଗିଆର କିପରି ସର୍ବନାଶ କଲେ ସେ କଥା ଫକୀରମୋହନ ନିଜେ ଆମକୁ କହି ନାହାନ୍ତି । ବୋଧହୁଏ ଏଡ଼େ ବଡ଼ ଗର୍ହିତ ଓ ପୈଶାଚିକ କାର୍ଯ୍ୟର ଚିତ୍ର ଦେବାକୁ ତାଙ୍କ ହାତ ଯାଇ ନାହିଁ ।

ଚମ୍ପା ବଇଠା ତେଜି ଦେଇ ଖୁବ୍ ଗୋଟିଏ ହସିଲା, କହିଲା, "ଦେଖ ସାଆନ୍ତେ, ପ୍ରଥମେ ମନରେ କରିଥିଲି ପାରିବି ନାହିଁ, ବୁଦ୍ଧି ଖରଚ ନକଲେ କଣ ନହୁଏ ? ସେ ଛମାଣ ଆଠଗୁଣ୍ଠକୁ କାଲି ହଳ ଯିବ ତ ?"

ମଙ୍ଗରାଜ—"ମୁଁ ହଳଆମାନଙ୍କୁ କହି ଦେଇଛି କାଲି ସକାଳେ ହଳ ନେଟେ, କଢ଼ାଣ ଦୋହନ୍ତ ସବୁ ସରିବ, ମୁଁ ମଧ୍ୟ ବିଲକୁ ଯିବି ।"

ଚମ୍ପା—"ସେମାନଙ୍କ ଘର ଭାଙ୍ଗି ଦେଇ ଭଲ କଲ, ଘର ଥିଲେ କେତେବେଳେ ଜମି ସଙ୍କାଶେ ଲଗାନ୍ତେ ।"

ଏହି ମନ୍ତ୍ରଣା ସମୟରେ ଆସି ଉପସ୍ଥିତ ହେଲେ ଗୋଟିଏ ସ୍ତ୍ରୀମୂର୍ତ୍ତି—ସାଆନ୍ତାଣୀ—ମଙ୍ଗରାଜଙ୍କର ଧର୍ମପତ୍ନୀ ।

ସେ ଏହି ମନ୍ତ୍ରଣାରୁ କିଛି ଶୁଣିଛନ୍ତି, ଚମ୍ପାକୁ ସ୍ୱାମୀଙ୍କ ତକ୍ତପୋଷ ଉପରେ ଦୁଇହାତ ପକାଇ ଭିଡ଼ି ବସିବାର ଦେଖିଛନ୍ତି। ଘନଘନ ଦୀର୍ଘ ନିଃଶ୍ୱାସ ଛାଡ଼ୁଛନ୍ତି। ସ୍ୱାମୀଙ୍କ ପ୍ରଶ୍ନରେ ଏତିକି ମାତ୍ର ଉତ୍ତର ଦେଲେ, "ମୁଁ କହୁଚି, ରାତି ହେଲଣି ଶୋଇପଡ଼, ଆଉ ସେ କଥାଗୁଡ଼ାକ ପାଞ୍ଚ ନାହିଁ।"

ଚମ୍ପା ଅବଜ୍ଞା ସ୍ୱରରେ କହିଲା, "ହୁଁ"।

ମଙ୍ଗରାଜ—"ଅଚ୍ଛା, ମୁଁ ଯାଉଚ୍ଛି, ତୁମେ ବାହାରକୁ ଯାଅ।"

"ଧନ ଅଗରେ ମଙ୍ଗରାଜଙ୍କର ଆଉ କେହି କିଛି ନୁହନ୍ତି। ଧର୍ମପତ୍ନୀ କିଛି ନୁହ। ଚମ୍ପା ଜୀବନସର୍ବସ୍ୱ" ଫକୀରମୋହନ ଏ କଥା କେତେ ପ୍ରସ୍ଥାଧର ବର୍ଣ୍ଣନା କରିଥିଲେ ପାଠକ ପ୍ରାଣରେ ସାଆନ୍ତାଣୀଙ୍କ ପ୍ରତି ସହାନୁଭୂତି ଓ ମଙ୍ଗରାଜଙ୍କ ପାପ ପ୍ରତି ଘୃଣାର ଉଦ୍ରେକ କରି ପାରିଥାନ୍ତେ, କହି ହେଉ ନାହିଁ। ତେଣୁ ତ ଇଂରେଜୀରେ ଗୋଟିଏ କଥା ଅଛି, "**Art conceals art**"। ଯେଉଁ ଅର୍ଥରେ ଲେଖକ ଏହାକୁ ବ୍ୟବହାର କରିଥାନ୍ତି, ମଙ୍ଗରାଜଙ୍କ ଚରିତ୍ର ସମ୍ବନ୍ଧରେ ଏ ଯେଉଁ ଗଭୀର ବ୍ୟଞ୍ଜନା, ତାହାହିଁ ଫକୀରମୋହନଙ୍କୁ ପ୍ରତିଭାଶାଳୀ ଔପନ୍ୟାସିକ ପଦରେ ଅଧିରୂଢ଼ କରିଅଛି।

ମଙ୍ଗରାଜ କ କେବଳ ନାନା ଦୁଷ୍କର୍ମ ଓ କୁଚକ୍ରାର ଏକ ଜୀବନ୍ତ ପ୍ରତୀକ ? ତାଙ୍କ ଚରିତ୍ରରେ କଣ ଫକୀରମୋହନ କିଛି ପରିବର୍ତ୍ତନର ଆଭାସ ଦେଇନାହାନ୍ତି ? ତେବେ ଫକୀରମୋହନଙ୍କ ଚରିତ୍ରଚିତ୍ରଣ କଣ ଗତିହୀନ ? ବୈଚିତ୍ର୍ୟବିହୀନ ? ସେଥିରେ କିଛି ବକ୍ରତା କିମ୍ବା ଜଟିଳତା ନାହିଁ ? ପାଠକ ତାଙ୍କୁ ପ୍ରଥମେ ଯେଉଁପରି ଦେଖିଥିଲା, ଶେଷରେ ସେ କଣ ଠିକ୍ ସେୟା ? ସେ କଣ ଗୋଟିଏ 'ପୁରାଣବର୍ଣ୍ଣିତ ରାକ୍ଷସ' ? ସେ କଣ କେବଳ

ପାପର ଗୋଟିଏ ବିରାଟ ଅବତାର ? ଏପରି ମନୁଷ୍ୟ ସଂସାରରେ ଅସମ୍ଭବ । ମନୁଷ୍ୟଠାରେ ଭଲ ମନ୍ଦ ଉଭୟ ପ୍ରବୃତ୍ତିର ସ୍ଥିତି ଫକୀର-ମୋହନ ଲକ୍ଷ୍ୟ କରିଅଛନ୍ତି, ସ୍ୱୀକାର କରିଅଛନ୍ତି ମଧ୍ୟ । ସାଆନ୍ତାଣୀଙ୍କ ମୃତଦେହ ପାଖରେ ଯେଉଁ ମଙ୍ଗରାଜ 'ବାହ୍ୟଜ୍ଞାନ-ଶୂନ୍ୟ' ହୋଇ ବସି ରହିଥିଲେ, ସେ ଦିନ ଅଧରାତିର ମନ୍ତ୍ରଣାରେ ଚମ୍ପା ସହିତ ଯେଉଁ ମଙ୍ଗରାଜଙ୍କୁ ପାଠକ ଦେଖିଥିଲି, ଆଜି ଏ ସଙ୍କଟ ମୁହୂର୍ତ୍ତର ମଙ୍ଗରାଜ ସେ ମଙ୍ଗରାଜ ନୁହନ୍ତି ?

ଫକୀରମୋହନ ଏ ବିଷୟରେ ନିଜର ମନ୍ତବ୍ୟ ନ ଦେଇଥିଲେ ମଧ୍ୟ ମଙ୍ଗରାଜଙ୍କ ମନ ଯେ ବର୍ତ୍ତମାନ ସ୍ତ୍ରୀଙ୍କ ପ୍ରତି ଅତୀତର ନିର୍ମମ ବ୍ୟବହାର କଥା ସ୍ମରଣ କରି ଅନୁତାପରେ ଜଳି ଯାଉଛି, ପାଠକ ତାହା ସହଜରେ ଅନୁମାନ କରିପାରିଥାନ୍ତି । ଫକୀର-ମୋହନଙ୍କର "ଦୁଃଖରେ ମନୁଷ୍ୟ କାନ୍ଦେ, ଅନୁତାପରେ କାନ୍ଦେ ନାହିଁ; ଦୁଃଖ ହୃଦୟର ଜ୍ୱଳନ୍ତ ଅଙ୍ଗାର, ଅନୁତାପ ତୁଷାନଳ" ଏଠାରେ ଏପରି କହି, ପାଠକର କରୁଣାର୍ଦ୍ର ଚିତ୍ତରେ ହସ୍ତକ୍ଷେପ କରିବା ହୁଏତ ଠିକ୍ ହୋଇନାହିଁ । କିନ୍ତୁ ସେ ନିରୁପାୟ । ମଙ୍ଗରାଜଙ୍କର ଚରିତ୍ର ଏ ଆକସ୍ମିକ ପରିବର୍ତ୍ତନରେ ତାଙ୍କର ଚିତ୍ତ ମଙ୍ଗରାଜଙ୍କ ପ୍ରତି କରୁଣାରେ ବିଗଳିତ, ସମପ୍ରାଣତାରେ ଅନୁରଣିତ—ଅଲକ୍ଷ୍ୟରେ ତାଙ୍କ ଲେଖନୀରୁ ଏହା ବାହାରି ପଡ଼ୁଛି ।

କିନ୍ତୁ ସେ ଜୀବନରେ ଯେଉଁ ଦୁଷ୍କର୍ମ କରିଛନ୍ତି, ଏଇ ଅନୁତାପ ସେଥିପାଇଁ ଯଥେଷ୍ଟ ନୁହେଁ । ସାରିଆ ଭଗିଆର ସେ ଯେଉଁ ସର୍ବନାଶ କରିଛନ୍ତି, ସେଥିପାଇଁ ତାଙ୍କୁ ଶାସ୍ତି ଗ୍ରହଣ କରିବାକୁ ହେବ । ଉକିଲ ରାମରାମ ଲାଲ ରକ୍ଷା କରି ପାରିବେ ନାହିଁ । ତେଣୁ କଟକ ସେସନ୍ସ ଜଜ୍ କୋର୍ଟରୁ ହୁକୁମ ହେଲା କି,

"ଅସାମୀ ରାମଚନ୍ଦ୍ର ମଙ୍ଗରାଜଙ୍କୁ ନରହତ୍ୟା ଅପରାଧରୁ ମୁକ୍ତି ଦିଆଯାଇ ନେତ ନାମକ ଗାଈକୁ ଆତ୍ମସାତ୍ କରିଥିବା ଅପରାଧରେ କଠିନ ପରିଶ୍ରମ ସହିତ ଛ ମାସ କାରାଦଣ୍ଡ ଏବଂ ପାଞ୍ଚଶତ ଟଙ୍କା ଜୋରିମାନା କରାଯାଉ । ଜୋରିମାନା ଅସୁଲ ନହେଲେ ଅତିରିକ୍ତ ତିନିମାସ କାରାରୁଦ୍ଧ କରାଯାଉ ।"

ଏତିକରେ ବି ସେ ଶାସ୍ତି ସରି ନାହିଁ । ମଙ୍ଗରାଜ କଟକ ଯିବାର ଚୂରିଦିନ ପରେ ଗନ୍ତାଘର ଖୋଲି ଚମ୍ପା ଓ ଗୋବିନ୍ଦା ସବୁ ଟଙ୍କା ନେଇ ଚାଲି ଯାଇଛନ୍ତି । ବାବାଜୀ ଲଳିତ ଦାସ ମଲୁଆ ପୋଇଲି ସହିତ ସାନବୋହୂଙ୍କ ଅଳଙ୍କାରତକ ନେଇ ପଳାଇ ଯାଇଛି । ଜୋରିମାନା ସକାଶେ ଜମାଦାର ଘରେ ପଶି ମାଲମତା-ଗୁଡ଼ିକ ବୋହିଆଣି ଦାଣ୍ଡରେ ଜମା କଲେ । ଦୁଃଖ ଓ ଶୋକରେ ପାଗଳ ହୋଇଯାଇଥିବା ଭଗିଆ ପାଗଳଗାରଦରୁ ଧାଇଁ ଆସି ମଙ୍ଗରାଜଙ୍କ ନାକ କାମୁଡ଼ି ଛିଣ୍ଡାଇ ଦେଲା ।

ଏଠାରେ କେହି କେହି କହିପାରନ୍ତି, ଏତେଗୁଡ଼ିଏ ଶାସ୍ତି ଏକାବେଳେ ମଙ୍ଗରାଜଙ୍କ ଉପରେ ଲଦି ଦେଇ ଫକୀରମୋହନ ତାଙ୍କ ଚରିତ୍ରକୁ ଅବିଶ୍ୱାସ୍ୟ ଓ ଅବାସ୍ତବ କରି ପକାଇଛନ୍ତି । ପାପୀକୁ ଶାସ୍ତି ନଦେଲେ ନଚଳେ, ଏହି ଆଦର୍ଶର ବଶବର୍ତ୍ତୀ ହୋଇ ସେ ଆକସ୍ମିକ ଭାବରେ ଏତେଗୁଡ଼ିଏ ଘଟନାର ସମାବେଶ କରିଅଛନ୍ତି । ଘଟନାକୁ ସେ ନିଜ ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ନିୟନ୍ତ୍ରିତ କରିଅଛନ୍ତି ।

ଏ ପ୍ରଶ୍ନର ଉତ୍ତରରେ ପୂର୍ବରୁ ସୂଚିତ ହୋଇଥିବା ଫକୀର-ମୋହନଙ୍କ ବ୍ୟକ୍ତିତ୍ୱର କଥା ସ୍ମରଣ କରାଯାଇପାରେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ମାନବତାବାଦୀ । ପାପପୁଣ୍ୟବୋଧ ତାଙ୍କର ପ୍ରବଳ

ଥିଲା । ସେ ସମାଜ ଓ ଲୋକଚରିତକୁ ବିଶୁଦ୍ଧ ଓ ନିଷ୍ପାପ କରି ଗଢ଼ିବାକୁ ଚେଷ୍ଟା କରୁଥିଲେ । ସେ ତାଙ୍କର ବରିଷ୍ଠ ବ୍ୟକ୍ତିଗତ ଅଭିଜ୍ଞତାରୁ ଭଲ କରି ଜାଣିଥିଲେ, "ମନୁଷ୍ୟ ଆପଣା କର୍ମଫଳ ଭୋଗ କରେ । ତୁମ୍ଭେ ଭଲ ଅବା ମନ୍ଦ ଯେପରି କର୍ମ କରିବ, ତହିଁର ପ୍ରତିଫଳ ଅବଶ୍ୟ ତୁମକୁ ଭୋଗ କରିବାକୁ ହେବ । × × × ପୁଣି ତୁମେ ଯେଉଁ ବୃକ୍ଷ ରୋପଣ କଲ, ତାହାର ଫଳ ତୁମ୍ଭଙ୍କୁ କଦାଚିତ୍ ବଂଶ ପରମ୍ପରାକୁ ଭୋଗ କରିବାକୁ ହେବ ।"

ଏତିକରେ ମଙ୍ଗରାଜଙ୍କର ଶାସ୍ତି ମଧ୍ୟ ଶେଷ ହୋଇ ନାହିଁ । ଭଗିଆର କାମୁଡ଼ାରେ ମଙ୍ଗରାଜଙ୍କ ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ଡାକ୍ତର ହୁକୁମ ଦେଲେ—ରୋଗୀକୁ ଘରକୁ ନେଇଯାଅ । ବଞ୍ଚିବାର ଆଶା ବଡ଼ କମ୍ । ପୁଅମାନେ ଆସିଲେ ନାହିଁ । ଆସିଲା ବୁଢ଼ା ହଳିଆ ମୁକୁନ୍ଦା ।

ମଙ୍ଗରାଜେ ତୁଳସୀଚଉରା ପାଖେ ଏକ ଧ୍ୟାନରେ ଆକାଶକୁ ଚାହିଁ ପଡ଼ିଥାନ୍ତି । ବେଳେ ବେଳେ କେବଳ କ୍ଷୀଣ କଣ୍ଠରେ କହୁଛନ୍ତି—ଥ—ମା—ଅ—ଗୁ···ତାଙ୍କୁ ଟିକିଏ ଗ୍ଲାନିନିଦ ଲାଗିଲେ ସ୍ୱପ୍ନରେ ଦେଖନ୍ତି ସାରିଆର ଭୟଙ୍କରୀ ମୂର୍ତ୍ତି । ସେ ବିକଟ ଗର୍ଜନ କରି କହୁଛି, 'ମୋ ଛମାଣ ଅଠଗୁଣ୍ଠ ଦେ' । ଆଉ ଭଗିଆ ପରି ସହସ୍ର ବାସ୍ତା ହାତରେ ଖଡ୍‌ଗ ମୁଦ୍‌ଗର ଧରି ତାଙ୍କ ମୁଣ୍ଡକୁ ପ୍ରହାର କରିବାକୁ ଉଦ୍ୟତ । ମଙ୍ଗରାଜଙ୍କର ଆଉ ଉପାୟ କଣ ? କିଏ ତାଙ୍କୁ ଆଜ ଘୋର ବିପଦରେ ସାହାଯ୍ୟ କରିବ ?—ଏକମାତ୍ର ସେହି ଲାବଣ୍ୟମୟୀ ମୂର୍ତ୍ତି—ତାଙ୍କର ପରଲୋକଗତା ସ୍ୱର୍ଗବାସିନୀ ପତ୍ନୀର ସ୍ମୃତି ।

ଜୀବନର ପରପାରରେ ସେ ଶାନ୍ତି ପାଇଲେ କି ନାହିଁ, କିଏ ଜାଣେ, କିନ୍ତୁ ଶେଷ ଜୀବନରେ ସେ ଯେଉଁ ଘୋର ଅଶାନ୍ତି ଭୋଗ କରିଥିଲେ ନିଜର କୁକର୍ମଗୁଣି ଯୋଗୁଁ, ସାଆନ୍ତାଣୀଙ୍କର ସ୍ମୃତିରେ ସେ ସେହି ଅଶାନ୍ତି ଦୂର ହେବାର ସଙ୍କେତ ଦେଖିଥିଲେ। କିନ୍ତୁ ମୃତ୍ୟୁ ତାଙ୍କୁ ଏ ସକଳ ଅଶାନ୍ତିରୁ ରକ୍ଷା କଲା।

ଯୁକ୍ତି ହୋଇପାରେ, ମଙ୍ଗରାଜଙ୍କ ଏ ପରିଣତି ଅତି-ନାଟକୀୟ,—ଘଟନା-ପରମ୍ପରାର ଅନିବାର୍ଯ୍ୟ ପରିଣତି ନୁହଁ। ଜେଲରୁ ଖଲାସ ହୋଇ ଆସି ଜଣେ ଭଲ ଚିକିତ୍ସକଙ୍କ ଦ୍ୱାରା ଚିକିତ୍ସିତ ହୋଇ ଗୋଟିଏ କୃତ୍ରିମ ନାକ ଲଗାଇ ସେ ବୀରଦର୍ପରେ ପୁଣି ନିଜର ଅଭିନୟ ଆରମ୍ଭ କରି ଦେଇଥାନ୍ତେ। ପୁଣି ବୁଦ୍ଧି ଖର୍ଚ୍ଚି କରି ଜମିଦାର ଓ ମାମଲତକାର ହୋଇପାରିଥାନ୍ତେ। କିନ୍ତୁ ବାସ୍ତବବାଦୀ ଫକୀରମୋହନ ମଙ୍ଗରାଜଙ୍କ ଜୀବନର ନାନା ଘଟନାକୁ ଏପରି ଧୀର ଓ ମନ୍ଥର ଭାବରେ ଠିକଣାଖି କରି ବିଶ୍ଳେଷଣ କରି ଦେଇଛନ୍ତି ଯେ ଏ ଶ୍ରେଣୀର ପୈଶାଚିକପ୍ରବୃତ୍ତିସମ୍ପନ୍ନ ବ୍ୟକ୍ତିଙ୍କର ପରିଣତି ଯେ ଘୋର ଅଶାନ୍ତିମୟ, ଏବଂ ସଂସାରରେ ଏପରି ଲୋକଙ୍କର ସଂଖ୍ୟା ଯେ ଅତି ନଗଣ୍ୟ ନୁହେଁ, ଏହି ନିଷ୍ଠୁର ସତ୍ୟ ହିଁ ତାଙ୍କ ଦୁଃଖମୟ ପରିଣତିରେ ଅଭିବ୍ୟକ୍ତ ହୋଇ ଉଠିଛି। ମଙ୍ଗରାଜଙ୍କ ଜୀବନରେ ଆସିଛି କିଣ କମ୍ ପରିବର୍ତ୍ତନ। ସେ ଦିନ ଅଧରାତିରେ ଯେଉଁ ସାଆନ୍ତାଣୀଙ୍କ କଥାକୁ ଭ୍ରୂକ୍ଷେପ ନକରି ମଙ୍ଗରାଜେ ନିର୍ମମ ଭାବରେ କହିଥିଲେ, "ବାହାରକୁ ଯାଅ", ଜୀବନର ଶେଷ ମୁହୂର୍ତ୍ତରେ ଆଶ୍ରୟ ଖୋଜିଲେ ସେହି "ଜ୍ୟୋତିର୍ମୟୀ, ଶାନ୍ତିମୟୀ, ଆଶା ପ୍ରଦାୟିନୀ ସ୍ତ୍ରୀମୂର୍ତ୍ତିଠାରେ।" ମନୁଷ୍ୟ ଜୀବନର 'ଟ୍ରାଜେଡ଼ି' ଏହାଠାରୁ ଆଉ କିଣ ମର୍ମନ୍ତୁଦ ହୋଇପାରେ ? ଭାଗ୍ୟ-ବିପର୍ଯ୍ୟୟ

ଅଉ କାହାକୁ କୁହାଯାଏ ? ଜୀବନର 'ଟ୍ରାଜେଡ଼ି'ରେ ଯାହାର ବିଶ୍ୱାସ ଅଛି, ସେ ଏ ପରିଣତିକୁ 'ଅତି ନାଟକୀୟ' କହିବ କାହିଁକି ?

ଫକୀରମୋହନଙ୍କ ଚରିତ୍ରଚିତ୍ରଣରେ ଅଉ ଗୋଟିଏ ବୈଶିଷ୍ଟ୍ୟ ଲକ୍ଷ୍ୟ କରିବାର କଥା—ହାସ୍ୟ ରସ ସହିତ କରୁଣ ରସର ସମିଶ୍ରଣ—ସମାନ୍ତରାଳ ଗତି । ନାନା ବ୍ୟଙ୍ଗ, କୌତୁକ, ରଙ୍ଗ, ରସ ଓ ରହସ୍ୟରେ ସେ ଯେଉଁ ଅର୍ଥ-ପିଶାଚ ଓ ହୃଦୟହୀନ ମଙ୍ଗରାଜଙ୍କ ଚରିତ୍ରକୁ ହାସ୍ୟମୁଖର କରି ଆସିଅଛନ୍ତି ଉପନ୍ୟାସର ପ୍ରାରମ୍ଭରୁ, ସେହି ମଙ୍ଗରାଜଙ୍କ ପାଇଁ ତାଙ୍କର କି ସହାନୁଭୂତି ! କି ଅମିତ କରୁଣା ! ତାଙ୍କ ଜୀବନର ଏ ନୈତିକ-ଅଧଃପତନ ପାଇଁ ଫକୀରମୋହନ ସତେ ଯେପରି କାନ୍ଦିଛନ୍ତି; ମଙ୍ଗରାଜଙ୍କ ଘରର ଦୁରବସ୍ଥା ଚିତ୍ରକରି ତାଙ୍କ ପ୍ରତି ଦୁଃଖପ୍ରକାଶ କରି ଲେଖିଅଛନ୍ତି, "ଯେଉଁ ଦୁଆରେ ଦିନ ନାହିଁ, ରାତି ନାହିଁ, ଲୋକ ଯିବା ଆସିବା ଗହଳ ଲାଗିଥିଲା, ସେ ଦୁଆରେ ଦୁବ ମାଡ଼ିଲାଣି", ମୃତ୍ୟୁଶଯ୍ୟାରେ ତାଙ୍କର ସାହା ଭରସା କେହି ନାହିଁ । ପୁରୁଣା କତରା ଖଣ୍ଡିକରେ ପଡ଼ିଛନ୍ତି । କରୁଣାର୍ଦ୍ରଚିତ୍ତ ଫକୀରମୋହନ ପାପକୁ ଘୃଣା କରିଛନ୍ତି, ପାପୀକୁ ନୁହେଁ । ମଙ୍ଗରାଜଙ୍କ ମୃତ୍ୟୁରେ ତାଙ୍କ ଚକ୍ଷୁରୁ ଯେପରି ଲୋତକ ଝରି ପଡ଼ୁଛି, ପାଠକ ଚକ୍ଷୁରୁ ମଧ୍ୟ ସେହିପରି ।

ମଙ୍ଗରାଜଙ୍କ ଜୀବନର 'ଟ୍ରାଜେଡ଼ି' ଆସି ନାହିଁ କୌଣସି ଅଦୃଶ୍ୟ ଭାଗ୍ୟ-ଦେବତାର ନିଷ୍ଠୁର ଅଭିସମ୍ପାତରୁ, ହାମେଲଟଙ୍କ ପରି ଆସି ନାହିଁ ଜୀବନର ଦାର୍ଶନିକତାରୁ, ଅଥେଲୋଙ୍କ ପରି ଆସି ନାହିଁ ଦୁରତିକ୍ରମ୍ୟ ଈର୍ଷାପ୍ରଣୋଦିତ ପ୍ରତିହିଂସାପରାୟଣତାରୁ, ଆସି ନାହିଁ ଆଣ୍ଟୋନିଓ-କ୍ଲିଓପାଟ୍ରା ପରି ଦୁରନ୍ତ କାମନାର ବହ୍ନିଛଟାରୁ,—ଆସିଛି ନିଜକୃତ ଦୁଷ୍କୃତିରୁ, ପାପପଙ୍କିଳ ମନରୁ, ଅବାଞ୍ଛିତ ବହିଃ-ପ୍ରଭାବରୁ—ଚମ୍ପାର କୁପ୍ରବର୍ତ୍ତନାରୁ । ମଙ୍ଗରାଜଙ୍କ ଜୀବନର ଏ

'ଟ୍ରାଜେଡ଼ି' ଅତିକାନ୍ତ ହୋଇପାରିଥାନ୍ତା, ଯଦି ତାଙ୍କର ପ୍ରାଣ ଅଗରୁ ଈଶ୍ୱରାଭିମୁଖୀ ହୋଇପାରିଥାନ୍ତା, ଯେପରି ଶେଷ ମୁହୂର୍ତ୍ତିରେ ତାଙ୍କର ଅପିିତ୍ତ ଭଗବତ୍-ଚେତନା । ଜୀବନର ଗତିପଥ ସେ ସହଜରେ ପରିବର୍ତ୍ତିତ କରିପାରିଥାନ୍ତେ, ସେ ଦିନ ଅଧରାତିର ସେହି ମହା-ମୁହୂର୍ତ୍ତିରେ, ଯେଉଁ ଦିନ ସାଆନ୍ତାଣୀ ଅସି ସତର୍କବାଣୀ ଶୁଣାଇ ତାଙ୍କ ଜୀବନ-ନାଟ୍ୟରୁ ଚିରକାଳ ପାଇଁ ଅନ୍ତର୍ହିତ ହୋଇଗଲେ— "ମୁଁ କହୁଛି, ରାତି ହେଲାଣି, ଶୋଇପଡ଼, ଅଉ ସେ କଥାଗୁଡ଼ାକ ପାଅ ନାହିଁ ।" 'ଛମାଣ ଅଠଗୁଣ୍ଠ'ର **Climax** (ଚରମ ମୁହୂର୍ତ୍ତି) ଏହିଠାରେ ।

"ଅପଣା ହସ୍ତେ କହ୍ୱା ଛେଦ
କେ ତାର ଅଛୁ ପ୍ରତିବାଦୀ ।"

ଧର୍ମଶାସ୍ତ୍ରର ଏ ବାଣୀ ଅନ୍ୟଥା ହେବାର ନୁହେଁ । ଫକୀର-ମୋହନଙ୍କ ପରି ମାନବିକତାର ମାଙ୍ଗଳିକ ଗାନ କରିଥିବା ସାହିତ୍ୟ-ସାଧକ ଏ ଚେତାବନୀ ଆମକୁ ଶୁଣାଇବେ ନାହିଁ ତ, ଶୁଣାଇବ କିଏ ? ଏଥିରେ ବାସ୍ତବ ଅବାସ୍ତବର ପ୍ରଶ୍ନ ଅବାନ୍ତର । ଏ ଚିରନ୍ତନ ସମ୍ପଦରେ ଫକୀରମୋହନ ଚିର-ଭାସ୍ୱର, ଚିର ଅମର । କିନ୍ତୁ 'ମାମୁଁ'ର ନାୟକ ନାଜର ନଟବର ଦାସଙ୍କ ଚରିତ୍ର ଚିତ୍ରଣ କରିବାରେ ଫକୀରମୋହନ ଅଭିଜ୍ଞ ଶିଳ୍ପୀ, ଅଧିକ ବାସ୍ତବନିଷ୍ଠ, କଳ୍ପନା ଅଧିକ ଅଧିକ ବିସ୍ତୃତ ଏବଂ ଅଭିଜ୍ଞତା ଅଧିକ ବ୍ୟାପକ । ଅକ୍ଟୋବର ୧୮୯୭ ରୁ 'ଛମାଣ ଅଠଗୁଣ୍ଠ' ଲେଖାର ଆରମ୍ଭ 'ଉତ୍କଳସାହିତ୍ୟ'ରେ, 'ମାମୁଁ' ମୁଦ୍ରିତ ହୁଏ ୧୯୧୩ରେ । ଇତିମଧ୍ୟରେ ବିତିଯାଇଛି ପ୍ରାୟ ପନ୍ଦର ବର୍ଷ । ଫକୀରମୋହନଙ୍କ ଅଭିଜ୍ଞତା ବୃଦ୍ଧି ପାଇଛି । ସମାଜ ନବ୍ୟ ସଭ୍ୟ ହେବାକୁ ବସିଲାଣି ।

ଇଂରେଜୀ ଶିକ୍ଷାର ପ୍ରସାର ହେଲଣି । ପୁରୁଣାକୁ ଛାଡ଼ି ଲୋକେ ନୂତନ ରୀତିନୀତି ଗ୍ରହଣ କରିବାକୁ ଉନ୍ମୁଖ । ଜାତୀୟ ସଂସ୍କୃତିର ଏ ଘୋର ସନ୍ଧି ବେଳ । ଯେ ଗଣ୍ଡେ ଏଣ୍ଟ୍ରାନ୍‌ସ ପାସ କରୁଛି ସେ ନିଜକୁ ହାକିମ ମନେ କରୁଛି । ଭାରତର ପ୍ରାଚୀନ ପରମ୍ପରା ଭୁଷୁଡ଼ି ପଡ଼ିବାକୁ ଯାଉଛି । ନୂଆ ବୋଇଲେ ଇଂରେଜୀ ସଭ୍ୟତାର ଅନ୍ଧ ଅନୁକରଣ । ସୁରା ଓ ବେଶ୍ୟା-ରାକ୍ଷସୀ ଶିକ୍ଷିତଯୁବକମାନଙ୍କୁ ଗ୍ରାସ କରିବାକୁ ମୁଖ ବ୍ୟାଦାନ କରିଛି । ଫକୀରମୋହନ ଉତ୍କଣ୍ଠିତ ହୋଇ ଚାହିଁ ରହିଥିଲେ ଦେଶର ଇଂରେଜୀ ପଢ଼ୁଆ ଶିକ୍ଷିତ ଯୁବକ-ମାନେ ଜ୍ଞାନାଲୋକରେ ଓଡ଼ିଶାକୁ ଉଦ୍ଭାସିତ କରିବେ । କିନ୍ତୁ ହେଲା କଣ ? ଯେ ଇଂରେଜୀ ପଢ଼ିଲା, ଅଳ୍ପ କେତେ ଜଣଙ୍କୁ ବାଦ୍ ଦେଲେ, ସମସ୍ତେ ଚାହିଁ ବସିଲେ କପର ଖଣ୍ଡେ ଚାକିରି କରିବେ । ସାମାନ୍ୟ ମାନ କିରାନି ହୋଇ ନିଜକୁ ହାକିମ ମନେ କରିବେ । ଅତ୍ୟନ୍ତ ସ୍ୱାର୍ଥପର ହୋଇ ପରର, ଏପରିକି ନିଜ ଆତ୍ମୀୟମାନଙ୍କର ତଣ୍ଟି ଚିପିବେ । ଏ ସବୁ ଦେଖି ସେ ଶେଷକୁ ନିରାଶ ହୋଇଥିଲେ । ଏହି ଇଂରେଜୀ ପଢ଼ୁଆ ବ୍ୟକ୍ତିମାନଙ୍କର ଚରିତ୍ର ସଂଶୋଧନ ନକଲେ ପରିଣାମ ବଡ଼ ଭୟାବହ ହୋଇ ଉଠିବ, ଶୋଷକ ଚିରକାଳ ଦୁର୍ବଳକୁ ଶୋଷଣ କରୁଥିବ, ଏମାନଙ୍କ କୁଚକ୍ରାନ୍ତରେ ଦରିଦ୍ର-ମାନେ ସର୍ବସ୍ୱ ହରାଇ ବସିବେ, ନିଜର ରକ୍ତ ଏମାନେ ନିଜେ ଶୋଷିବେ—ଏ ଚିନ୍ତା ଫକୀରମୋହନଙ୍କୁ ବିଶେଷ ଅସ୍ଥିର କରି ପକାଇଥିଲା । ତେଣୁ ଇଂରେଜୀ ପଢ଼ୁଆଙ୍କ ଚାଲିଚଳଣିକୁ ଅତି ସତର୍କ ଭାବରେ ପର୍ଯ୍ୟବେକ୍ଷଣ କରି ସେମାନଙ୍କ ଦୁଷ୍ଟବିଦ୍ୟତା ଉପରେ ବ୍ୟଙ୍ଗ ବିଦ୍ରୂପର ଶାଣିତ କୁଠାର ପ୍ରହାର କରିବାକୁ ହେବ, ଏହି ଅନ୍ତଃପ୍ରେରଣା ଓ ସମାଜ କଲ୍ୟାଣ ଚିନ୍ତା କିମ୍ବା ଶ୍ରେୟବୋଧରୁ ନାଜର ନଟବର ଦାସଙ୍କ ଚରିତ୍ରର ସୃଷ୍ଟି ।

ମଙ୍ଗରାଜଙ୍କ ପରି ନଟବର ଦାସ ନିତାନ୍ତ ମଫସଲିଅ ନୁହନ୍ତି । ସେ ଶିକ୍ଷିତ, ଏଣ୍ଟ୍ରାନ୍‌ସ ପାସ୍ । ବାପା ଦାଶରଥି ଦାସ କଟକ କଲେକ୍ଟରୀ ମୁନ୍‌ସିଖାନାର ମୋହରିର । ଦାଶରଥି ଦାସଙ୍କ ପିଲାମାନଙ୍କ ଶିକ୍ଷାର ଇତିହାସ ଦେବାକୁ ଯାଇ ସେ ଲେଖିଅଛନ୍ତି, "ଭାଇ ଭଉଣୀ-ମାନେ ଏକା ମା ବାପର ପୁଅ ଝିଅ, ହେଲେ ସେମାନଙ୍କ ଚରିତ୍ର ଭିନ୍ନ । × × × ଜ୍ୟେଷ୍ଠ ବାନାମ୍ବର ସୁରୂପ, ସୁଶୀଳ, ସଚ୍ଚରିତ୍ର, ଶୀତଳ ପ୍ରକୃତିର ପିଲା; କିନ୍ତୁ ଶିକ୍ଷା ବିଷୟରେ ଅନାବିଷ୍ଟ । କନିଷ୍ଠ ନଟବର ମେଧାବୀ, ଶିକ୍ଷା ବିଷୟରେ ତତ୍ପର, ଧୂର୍ତ୍ତ, ବିଳାସୀ—ଏହି ପିଲାଦିନରୁ ମଧ୍ୟ କୃପଣ ସ୍ୱଭାବର ପରିଚୟ ମିଳିଲାଣି ।"—ଏହାହିଁ ନାଜର ନଟବର ଦାସଙ୍କର 'ହୃଦୟର ଅଭ୍ୟନ୍ତରସ୍ଥ ପ୍ରଚ୍ଛନ୍ନ ସ୍ୱାଭାବିକ ଗୁଣ ।' ବାପା ଇଚ୍ଛା କରିଥିଲେ ନଟବରର ଏ ଦୁର୍ଗୁଣ ସବୁ ଦମନ କରି ପାରିଥାନ୍ତେ, କିନ୍ତୁ ପିଲାମାନଙ୍କ ପଢ଼ାଶୁଣା ଦେଖିବା ବିଷୟରେ ତାଙ୍କର ସମୟର ନିତାନ୍ତ ଅଭାବ, ପିଲାମାନେ ଯେପରି ପଢ଼ୁଛନ୍ତି, ପଢ଼ୁଥାନ୍ତୁ ।

ନଟବର ବାବୁ ଯେପରି ପାରିଲେ ସେପରି ପଢ଼ିଲେ । ଚରିତ୍ରକୁ ଦୃଷ୍ଟି ନାହିଁ, ଶିକ୍ଷାଗୁରୁଙ୍କୁ ଧ୍ୟାନ ନାହିଁ । ପିଲାଦିନରୁ ତ ବିଳାସୀ ଥିଲେ, ସ୍ୱଭାବ କୃପଣ ଥିଲା, ଅମଡ଼ା ମଡ଼ା ସେଇ ବାଟରେ ଗଲେ ।

ପିତାଙ୍କ ମୃତ୍ୟୁ ପରେ ଉତ୍ତରାଧିକାରୀ ସୂତ୍ରରେ ଇଂରେଜ ହାକିମଙ୍କ ଦୟାରୁ କଟକ କଲେକ୍ଟର କଚେରୀରେ ନାଜର ହେଲେ । ସାକ୍ଷାତ୍ କଣେ ହାକିମ । ଦରମା ମନ୍ଦ ନୁହେଁ । ଉପରି ଦିପଇସା ରୋଜ ଘରକୁ ଆସେ । ଧନ ଆସିଲେ ଲୋଭ ବଢ଼େ । ଲୋଭରୁ ମୃତ୍ୟୁ । ସେ ଦିନ କିଣି ନଟବର ବାବୁ ଏ କଥା ବୁଝିଥିଲେ ?

ସେ ସେଦିନ ବୁଝିଥିଲେ 'ଅର୍ଥ ଉପାର୍ଜନ, ଅର୍ଥ ସଂରକ୍ଷଣ ମାନବ-ଜୀବନର ସାର ଉଦ୍ଦେଶ୍ୟ' ।

'ଛମାଣ ଅଠଗୁଣ୍ଠ'ର ରାମଚନ୍ଦ୍ର, ମଙ୍ଗରାଜ ମଧ୍ୟ ଏହା ବୁଝିଥିଲେ । କିନ୍ତୁ ଧନ ଅର୍ଜିବାର ଉପାୟ ଥିଲା ତାଙ୍କର ଅତି ପୁରୁଣାକାଳିଆ—ଅତି ମଫସଲିଆ । ଗୋରୁଟେ ଗାଈଟେ ବିଲରୁ ବାନ୍ଧି ନେଇଯିବାର କୁଅଭ୍ୟାସ ବି ମଙ୍ଗରାଜଙ୍କର ଥିଲା । ଗାଁ ଚୌକିଦାରକୁ ଲାଞ୍ଚ ଦେଇ ସେ ହାତ କରିବାକୁ ଚେଷ୍ଟା କରୁଥିଲେ । କାହା ଘର ପୋଡ଼ାଇ ଦେଉଥିଲେ ତ, କାହା ଘର ଭାଙ୍ଗି ମାଟିରେ ମିଶାଇ ଦେଉଥିଲେ । କିନ୍ତୁ ଏଣ୍ଟ୍ରାନ୍ସ ପାସ କରିଥିବା ନାଜର ନଟବର ଦାସ ବଡ଼ ପ୍ରତିଭାଶାଳୀ । ସେ ଏପରି ହୀନ ପନ୍ଥାମାନ କିଣ ଅବଲମ୍ବନ କରନ୍ତେ ? ତାଙ୍କର ବୁଦ୍ଧି ମାର୍ଜିତ, ତେଣୁ ଲୁଣ୍ଠନ ଓ ଶୋଷଣର ପନ୍ଥା ସେହିପରି ନବ୍ୟରୁଚିସମ୍ମତ । ତାଙ୍କର ସହରିଆ ବୁଦ୍ଧି ଆଗରେ ମଙ୍ଗରାଜଙ୍କ ମଫସଲିଆ ବୁଦ୍ଧି କୁଆଡ଼େ ଛିଡ଼ା ହୋଇପାରିବ ?

ମଙ୍ଗରାଜଙ୍କ ପରି ତାଙ୍କୁ ବି ଜୁଟିଛନ୍ତି ଗୋଟିଏ ପ୍ରଖର ବୁଦ୍ଧିମତୀ ନାରୀ ଚମ୍ପକଳୀ । ସେ ଗୃହକର୍ତ୍ତ୍ରୀ ନୁହଁ, ଏକରକମ ସାଆନ୍ତାଣୀ—ଯାହା ବୁଦ୍ଧି ପାଖରେ ନାଜର ବାବୁଙ୍କ ବୁଦ୍ଧି ନିଷ୍ପ୍ରଭ । ଚମ୍ପକଳୀ ପ୍ରତି ନାଜରଙ୍କ ହୃଦୟର ଦୁର୍ବଳତା ଅଛି । ତା ହାତରେ ବହୁତ ଧନ ସମ୍ପତ୍ତି ଅଛି, ସେ ମରିଗଲେ ତାଙ୍କୁଇ ସବୁ ସମର୍ପି ଦେବ । ମଙ୍ଗରାଜଙ୍କର ଚମ୍ପାଠାରୁ ଏପରି କିଛି ଲୋଭ ନଥିଲା । ଚମ୍ପାର ବୁଦ୍ଧିଟା ଥିଲା ତାଙ୍କର ପରମ ସମ୍ପଦ । କିନ୍ତୁ ସହରୀ ଶିକ୍ଷିତ ନଟବର ବାବୁ ପ୍ରାୟ ପ୍ରତିଦିନ ରାତିରେ ନିରୋଳାରେ ଚମ୍ପକଳୀ ଘରକୁ ଯାଆନ୍ତି । ଧନଲୋଭ ସହିତ ଲମ୍ପଟ୍ୟ ବି ନାଜରଙ୍କ ଚରିତ୍ରରେ

ଅଛି । ଏ ଲମ୍ପଟ୍ୟରୁ ମଙ୍ଗରାଜ ହୁଏତ ମୁକ୍ତ ହୁହନ୍ତି—କିନ୍ତୁ ଫକୀରମୋହନ ଏ ବିଷୟରେ ନିଶ୍ଚିତ ନଥିଲେ, ତେଣୁ ପାଠକ ମନରେ ସନ୍ଦେହ ।

କିନ୍ତୁ 'ଛମାଣ ଅଠଗୁଣ୍ଠ' ଗୋଟିଏ ଏକମୁଖୀ ଉପନ୍ୟାସ । ସେଥିରେ ଗୋଟିଏ ପରିବାରର ଗଳ୍ପ, ସେ ପରିବାରରେ ମଙ୍ଗରାଜ ଏକମାତ୍ର ଭାଗ୍ୟବିଧାତା । ବାଘସିଂହ ପରିବାର ସହିତ ମଙ୍ଗରାଜଙ୍କର ସମ୍ପର୍କ ଅଛି । ସେ ସମ୍ପର୍କ ବେଶି ଦିନ ସ୍ଥାୟୀ ନୁହଁ । ଚାଙ୍ଗୀ ମାଉସୀ ତାଙ୍କ ଘର ପୋଡ଼ିଦେଇ ସେ ସମ୍ପର୍କ ଯଥାଶୀଘ୍ର ଛିନ୍ନ କରି ଦେଇଛି । ଏଣିକି ମଙ୍ଗରାଜ—ତାଙ୍କ ଚମ୍ପା—ତାଙ୍କ ଧାନଜମି—ତାଙ୍କ ଖମାରର ଧାନ ଓ ଗନ୍ତାଘରର ଟଙ୍କା ଏବଂ ସେ । ସବୁ ଗୋଟିଏ ବ୍ୟକ୍ତି ଉପରେ କେନ୍ଦ୍ରୀଭୂତ । ଆଉ ଭଗିଆ ଓ ସାରିଆ ସେ ତ ଗୋଟେ ଦିନରେ ଖତମ । ତାଙ୍କ ଘର ଉହାର ଚିହ୍ନବର୍ଣ୍ଣ ନାହିଁ । କିନ୍ତୁ 'ମାମୁଁ'ରେ ଦୁଇଟି ପରିବାର ବହୁଦିନ ପର୍ଯ୍ୟନ୍ତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ଗୁନ୍ଦମଣିର ବିବାହଦିନଠାରୁ ସରକାରୀ ତହବିଲ ଆତ୍ମସାତ୍ କରିବା ଅଭିଯୋଗରେ ନାଜରଙ୍କ ଜେଲ୍ ଯିବା ପର୍ଯ୍ୟନ୍ତ ।

କିନ୍ତୁ ଫକୀରମୋହନ ନାଜର ନଟବର ଦାସଙ୍କ ପରିବାର ଏବଂ ଗୁନ୍ଦମଣିଙ୍କ ପରିବାର ମଧ୍ୟରେ,—ଗୋଟିଏ ସାମନ୍ତବାଦୀ ଜମିଦାର ପରିବାର, ଏବଂ ଗୋଟିଏ ମଧ୍ୟବିତ୍ତ ପରିବାର ମଧ୍ୟରେ—ଏପରି ସହିତ ଓ ଐକ୍ୟ ସ୍ଥାପନ କରି ଘଟନାକୁ ଗତିଶୀଳ କରାଇ ଅଛନ୍ତି ଯେ, ମନେହୁଏ ଏହି ଐକ୍ୟବିଧାନ ଫକୀରମୋହନଙ୍କ ରଚନା-ରୀତିର ଗୋଟିଏ ପରମ ଶୈଳ୍ପିକ ସୁଷମା । ଏଥିଯୋଗୁଁ 'ଛମାଣ ଅଠଗୁଣ୍ଠ' ନୁହଁ, 'ମାମୁଁ'କୁ ତାଙ୍କର ସର୍ବଶ୍ରେଷ୍ଠ କୃତିର ଆଖ୍ୟା ଦେବାକୁ ଇଚ୍ଛା ହୁଏ । ଦୁଇଟି ପରିବାର ମଧ୍ୟରେ ଗୁଲ୍ ଚଲଣି, ଗତି-ରୀତି, ଦୈନନ୍ଦିନ ଜୀବନ-ଯାତ୍ରାରେ ଆକାଶ-ପାତାଳ

ପ୍ରଭେଦ । ଗୋଟିଏ ପରିବାର କଟକର ଗୋଟିଏ ବସାରେ ତ, ଅନ୍ୟ ପରିବାରଟି ମଫସଲର ଗୋଟିଏ ଜୁଆସରେ; ଗୋଟିଏ ପରିବାର ଭକ୍ଷ୍ୟ ହେଲେ, ଅନ୍ୟଟି ଭକ୍ଷକ; ତଥାପି ଦୁଇ ପରିବାର ମଧ୍ୟରେ ଫକୀରମୋହନ ଯେଉଁ ଶିଳ୍ପଗତ ଐକ୍ୟ ଓ ସଙ୍ଗତି ସମ୍ପାଦନ କରିଛନ୍ତି, ତାହାହିଁ ପରମ ବିସ୍ମୟର ବିଷୟ ।

ଗୁନ୍ଦମଣି ତାଙ୍କ ନିଜ ଭଉଣୀ । ଏକମାତ୍ର ଭଉଣୀ । ଜାତକରେ ସଧବା ଯୋଗ ଥିଲା, ଦୈବ ଦୁର୍ବିପାକରୁ ବିଧବା ହେଲେ । ନରପୁର କଲା ଉତ୍ତରସୂକ ମୃତ୍ୟୁରେ ହାହାକାର କଲା । ଗୁନ୍ଦମଣିଙ୍କ ଜଗତ୍ ଶୂନ୍ୟ ଦେଖାଗଲା । ନାବାଳକ ପୁଅ ଦୁଇଟି । କିଏ ସମ୍ଭାଳିବ କିଏ ? ବିଧବା ଗୁନ୍ଦମଣି ମହି ସମୁଦ୍ରରେ ଭାସୁଥିଲା ବେଳେ ଅଭିନାଶନ ବାନା ଉଡ଼ାଇ ଉପସ୍ଥିତ ହେଲେ ନାଜର ନଟବର ଦାସ । ଭଉଣୀର ଦୁର୍ଗତିରେ ସତେ ଯେପରି ଶୋକରେ କାତର—ଦଗ ବିଦଗ ଜ୍ଞାନଶୂନ୍ୟ । ଫକୀରମୋହନ ନାଜର ବାବୁଙ୍କର ଭଉଣୀ ପ୍ରତି ଏ କପଟ ସ୍ନେହ ସହାନୁଭୂତିର ଯେଉଁ ଚିତ୍ର ଅଙ୍କନ କରିଅଛନ୍ତି, ତାହା ପରମ ଉପଭୋଗ୍ୟର ବସ୍ତୁ । ପାଠକ ତା ପଢ଼ି ହସେ ଓ କାନ୍ଦେ । ହସେ ଅର୍ଥୋପାର୍ଜନର ଏ ଅମୋଘ ଆକର୍ଷଣ ଦେଖି,—କେତେ ଧନକୁ ଏତେ ଆଡ଼ମ୍ବର— 'ଅର୍ଥମନର୍ଥଂ ଭାବୟ ନିତ୍ୟଂ' । କାନ୍ଦେ, ଏଇ ନାଜର ନଟବର ଜଣେ ଶିକ୍ଷିତ ଯୁବକ, ନିଜକୁ ଜଣେ ହାକିମ ମନେ କରେ, କିନ୍ତୁ ଲୋକଟାର ପ୍ରବୃତ୍ତି କି ପୈଶାଚିକ—କେଡ଼େ ଚରିତ୍ରହୀନ ସେ । ଭଉଣୀର ସର୍ବସ୍ୱ ଲୁଣ୍ଠନ କରିବାକୁ ଯାଉଛି—ଦୁଇଟା ନାବାଳକ ଭଣଜାଙ୍କର ସର୍ବନାଶ କରି ସେମାନଙ୍କୁ ଦାଣ୍ଡର ଭିକାରୀ କରିବାକୁ ବସିଛି । କି ଘୋର ଚରିତ୍ରର ଦୁର୍ବଳତା । ଏ ପାଠ ପଢ଼ାର କି ମୂଲ୍ୟ ?

'ଛମାଣ ଅଠଗୁଣ୍ଠ'ରେ ଅଛି ନାଟକୀୟ ଛଟା—ଫଳାପର ଗୃହବର୍ଣ୍ଣ ଓ ଚିତ୍ରଣଭାବରେ; କିନ୍ତୁ 'ମାମୁଁ'ରେ ନାଟକୀୟ ଭଙ୍ଗୀ ଅଛି କାର୍ଯ୍ୟରେ, ନଟବରଙ୍କର କର୍ମତତ୍ପରତାରେ—ଭଣଜା ଦୁହିଙ୍କର ପରମହିତୈଷୀ ମାମୁଁ ବୋଲି ମୁହଁରେ ରଙ୍ଗ ବୋଳି ବେଶ୍ ଅଭିନୟ କରିବାରେ । ମାମୁଁ ନଟବର ଦାସଙ୍କର ଏ ଅଭିନୟ ପରିପାଟୀ ଅତି ଚମତ୍କାର । ପଢ଼ିଲେ ମନେହୁଏ ଫକୀର-ମୋହନ ନାଟକ ନଲେଖି ଉପନ୍ୟାସ ଲେଖିଲେ କାହିଁକି ? ନାଟ୍ୟକଳାର ପ୍ରତିଭା ମଧ୍ୟ ତାଙ୍କଠାରେ ଥିଲା । ଏ ନାଟ୍ୟ-ପ୍ରତିଭା ସେ ତତ୍କାଳୀନ ଓଡ଼ିଆ ନାଟକ କିମ୍ବା ରଙ୍ଗମଞ୍ଚରୁ ପାଇନଥିଲେ, ରାମଶଙ୍କର ରାୟଙ୍କ 'କାଞ୍ଚିକାବେରୀ' ଏଥିରେ ତାଙ୍କର ପଥପ୍ରଦର୍ଶକ ନୁହେଁ । ଏ ତାଙ୍କର ସହଜାତ ପ୍ରତିଭା, ସଂସାରକୁ ସୂକ୍ଷ୍ମଭାବରେ ପର୍ଯ୍ୟବେକ୍ଷଣ କରିବାର ଦୃଷ୍ଟିଭଙ୍ଗୀ, ଜଗତ୍-ରଙ୍ଗଭୂମିର ପ୍ରେକ୍ଷା-ଳୟରେ ବସି ନିଜେ ଆଖିରେ ଦେଖିଥିବା ଅଭିନୟର ବାସ୍ତବ ଶିଳ୍ପାୟନ । ଏ ତାଙ୍କର ମନର ମାଧୁରୀ ଧରି ଧୃଷ୍ଟ ।

ନାଜର ନଟବର ଚକ୍ରିକତା କରି ରିପୋର୍ଟରେ ସରସ୍ୱତୀ ଦେଈଙ୍କ ହାତରେ ଗୃହମଣିର ନାମଟା ଲେଖାଇ ନେବାଠାରୁ କଲେକ୍ଟର ସାହେବଙ୍କଠାରେ ସେ ରିପୋର୍ଟ ପେଶ କରିବା ପର୍ଯ୍ୟନ୍ତ, କଲେକ୍ଟର ସାହେବଙ୍କୁ ଏଥିପାଇଁ ଯାବତ୍ ଖୋସାମତି କରିବାଠାରୁ ଭଉଣୀର ଗୁଣଗ୍ରାମ ଗାନ କରି ତାଙ୍କ ଆଗରେ କପଟାଶ୍ରୁ ମୋଚନ କରିବା ପର୍ଯ୍ୟନ୍ତ, ଏବଂ ରିପୋର୍ଟ ମଞ୍ଜୁର ହେବାଠାରୁ ଭଣଜାକୁ ବସାରେ ରଖି ତାକୁ ନାନା ନିର୍ଯ୍ୟାତନା ଦେଇ ତା ଖର୍ଚ୍ଚପାଇଁ ଜିଆସରୁ ଆସୁଥିବା ଟଙ୍କା ଆତ୍ମସାତ୍ କରିବା ପର୍ଯ୍ୟନ୍ତ—ଏ ସକଳ ଦୁଷ୍କର୍ମରେ ନାଜର ଯେଉଁ ବିଚିତ୍ର ଅଭିନୟ ତାଙ୍କର ହାତସଫେଇ ବିଦ୍ୟାରେ ଦେଖାଇଛନ୍ତି, ଯେଉଁ କୃତ୍ରିମ ଓ କଳଙ୍କିତ 'କର୍ତ୍ତବ୍ୟ-

ମିଷ୍ଟା'ର ପରିଚୟ ଦେଇଅଛନ୍ତି, ତାହାହିଁ ତାଙ୍କୁ ଅମ ସମ୍ମୁଖରେ ଏକ ସନ୍ଦେହାତୀତ ଓ ରକ୍ତମାଂସଧାରୀ ଦୁର୍ବଳଚିତ୍ତ ଜଘନ୍ୟ ମନୁଷ୍ୟ ରୂପେ ଉପସ୍ଥାପିତ କରିଅଛି । ଘଟନାର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ, ଓ ନାଜରଙ୍କର ଚିନ୍ତା ଓ କାର୍ଯ୍ୟକଳାପର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାରେ ଅମ ମନରେ କୌଣସି ସନ୍ଦେହ ହୁଏ ନାହିଁ ଯେ, ଏ ନାଜର ଫକୀରମୋହନଙ୍କର କଳ୍ପନାନୁରଞ୍ଜିତ ଅତିନାଟକୀୟ ଚରିତ୍ର । ଏବେ କ'ଣ ଶିକ୍ଷିତ-ସମାଜରୁ ଏ ଚରିତ୍ରକତାର ଅଭିନୟ ଲୋପ ପାଇଲଣି ? ପୁଅ ତ ପୁଣି ବୃଦ୍ଧ ପିତାକୁ ପାଗଳ ବୋଲି କାଟିଦେଇ ସମ୍ବାଦପତ୍ରରେ ବିଜ୍ଞାପନ ଦେଇ ତାର ସମସ୍ତ ସମ୍ପତ୍ତି ଗ୍ରାସ କରିବାକୁ ସଚେଷ୍ଟ ! ଏଇ ଟଙ୍କା ଲାଗି ତ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମନାନ୍ତର, ମକଦ୍ଦମା ଓ ଶେଷକୁ କଚେରୀରେ ଛାଡ଼ପତ୍ର ଦାଖଲ । ସ୍ତ୍ରୀ ବିଶାଖା ଦେଈଙ୍କୁ ରାଣୀ ବନାଇଦେବା ପାଇଁ ନାଜର ନଟବର ଭଣଜା ନରୁବାବୁଙ୍କୁ ସମସ୍ତ ପୈତୃକ ସମ୍ପତ୍ତିରୁ ବଞ୍ଚିତ କରି ନିଜେ ସେ କଲର ମାଲିକ ହେବାକୁ ଚାହାନ୍ତି । ଏବେ ତ ସେହି ଦୁର୍ନୀତି ଅମ ସମାଜକୁ ଘେରି ରହିଛି ବୋଲି ଚାରିଆଡ଼ରେ ଚିତ୍କାର । ଏ ଦୁର୍ନୀତି ଲୋପ କରିବା ନିମନ୍ତେ ଶାସନ-ସଂସ୍ଥା କଠୋର ବ୍ୟବସ୍ଥା ଅବଲମ୍ବନ କରୁଛନ୍ତି । ନରୁବାବୁ ମାଉଁଙ୍କଠାରୁ ଅପମାନ ପାଇ ତାଙ୍କ ବସାରୁ ଯାଇ ମଉସାଙ୍କ ବସାରେ ରହିଲେ । କଚେରୀରୁ ଫେରି ମାମୁଁ ଏ ଦୁଃସମ୍ବାଦ ଶୁଣି କହିଲେ—"ନରୁ ପିଛେ ସବୁ ରକମରେ ମାସକୁ ତିରିଶି ଟଙ୍କାରୁ ବଳି ଖରଚ ନୁହଁ । ମୁଁ ମାସକୁ ଅଢ଼େଇଶ ଟଙ୍କା ଖରଚ ପକାଉଥିଲି । ଏତେ-ଗୁଡ଼ାଏ ଟଙ୍କା ଏକାବେଳେକେ ଲୋକସାନ"—ମାମୁଁଙ୍କର ଭଣଜା-ପ୍ରୀତିର ଏହା ଦୃଷ୍ଟାନ୍ତ ।

ମଙ୍ଗରାଜଙ୍କ ପରି ଶେଷରେ ନାଜର ନିଧିବର ଅନୁତପ୍ତ । କିନ୍ତୁ ଏ ଉଭୟଙ୍କ ଅନୁତାପ ମଧ୍ୟରେ ଅଛି ଗଭୀର ପାର୍ଥକ୍ୟ । ମଙ୍ଗରାଜଙ୍କର ପତ୍ନୀ-ବିୟୋଗରେ ଯେଉଁ ଅନୁତାପ, ତାହା ସେତେ ଗଭୀର ନୁହ । ସେ କ୍ଷଣିକ । ଉପସ୍ଥିତ ଦୁଃଖରୁ ତାହାର ଉଦ୍ଭବ । ସ୍ତ୍ରୀଙ୍କ ମୃତ୍ୟୁପରେ ସେ ମଧ୍ୟ ମିଥ୍ୟାର ଆଶ୍ରୟ ନେଇଛନ୍ତି । ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବା ନିମନ୍ତେ କଚେରିରେ ମିଥ୍ୟା ସାକ୍ଷ୍ୟ ଦେଇଛନ୍ତି—ସାରିଆର ସେ କିଛି ଅନିଷ୍ଟ କରିନାହାନ୍ତି ବୋଲି କହିଛନ୍ତି । ମୃତ୍ୟୁ ପୂର୍ବରୁ ସେ ଯେଉଁ ପ୍ରଳାପ କରିଛନ୍ତି 'ଛ-ମା-ଆ-ଗୁ' ତାହା ଉନ୍ମାଦର ପ୍ରଳାପ । ନିଜକୃତ ଭୟଙ୍କର ଦୁଷ୍କର୍ମର ବିଭୀଷିକାରେ ସେ ଉଦ୍‌ଭ୍ରାନ୍ତ । ଭଗବାନଙ୍କ ନାମ ଛଡ଼ା ସେ ନିଃସହାୟ ଅବସ୍ଥାରେ ତାଙ୍କର ଅନ୍ୟ କୌଣସି ଉପାୟ ନଥିଲା । ଫକୀରମୋହନ ନିଜେ ଅନୁତାପ ସମ୍ବନ୍ଧରେ ତାଙ୍କର ଦାର୍ଶନିକ ମତ ପ୍ରଖ୍ୟାପନ କରି କହିଅଛନ୍ତି, "ସାଧାରଣ ଦୁଷ୍କୃତକାରୀ ଲୋକ ନିଜକୃତ ପାପର ପ୍ରତିଫଳ ଭୋଗ ସମୟରେ ଆପଣା ଭାଗ୍ୟକୁ ନିନ୍ଦା କରୁଥାଏ । ମନରେ କରେ, ନିର୍ଦ୍ଦୟ ବିଧାତା ତା ପ୍ରତି ବିମୁଖ । ହୃଦୟରେ ଅନୁତାପ ନାହିଁ—କେବଳ ଉଦ୍ଧାର ପାଇବାର ଚେଷ୍ଟା । ଉପସ୍ଥିତ ବିପଦରୁ ମୁକ୍ତି ପାଇବା ନିମନ୍ତେ ଅଧିକ ମଧ୍ୟ କିଛି ପାପ କାର୍ଯ୍ୟ ଅନୁଷ୍ଠାନ କରିବାର ଆବଶ୍ୟକ ହେଲେ ତାହା କରିବାକୁ ସେ କୁଣ୍ଠିତ ନୁହେ; କଦାଚିତ୍ ଉପାସ୍ୟ ଦେବତାଠାରେ ମୁକ୍ତିପ୍ରାର୍ଥୀ ହୋଇଥାଏ,—କ୍ଷମା ପ୍ରାର୍ଥୀ ନୁହେ । ଅଜ୍ଞାନ ପଶୁବତ୍ ଦୁର୍ବୃତ୍ତ ଲୋକ ଏହି ଶ୍ରେଣୀଭୁକ୍ତ । ବିଦ୍ୟାବନ୍ତ ସାଧୁ ସମାଜରେ ବର୍ଦ୍ଧିତ, ସ୍ୱଭାବ ବା ମନ୍ଦ ସଂସର୍ଗ ହେତୁ ବିବେକ ଅବଜ୍ଞାକାରୀ, ସୁଖାଭିଳାଷୀ, ଦାମ୍ଭିକ ଲୋକ ନିଜକୃତ ପାପର ଦଣ୍ଡ ଉପସ୍ଥିତ ସମୟରେ ଅନୁତାପାନଳରେ

ଦଗ୍ଧ ହେଉଥାଏ—ଈଶ୍ୱରଙ୍କ ମହାମହିମ ପବିତ୍ରତାମୟ ନାମ ସ୍ମରଣ କରିବାକୁ ତାହା ମନରେ ଆତଙ୍କ ଜାତ ହୁଏ । ପ୍ରତିକାରର ଅନ୍ୟ କୌଣସି ଉପାୟ ନାହିଁ—ଅତ୍ୟନ୍ତ ଭୟ ଏବଂ ପ୍ରଗାଢ଼ ଭକ୍ତି ସହିତ ପ୍ରଭୁଙ୍କ ପଦରେ ଅବଶେଷରେ ଆତ୍ମସମର୍ପଣ କରେ,"— ନାଜର ନଟବରଙ୍କ ଅନୁତାପରେ ଏହି ଆତ୍ମସମର୍ପଣ ସୁସ୍ପଷ୍ଟ ଯାହା ମଙ୍ଗରାଜଙ୍କଠାରେ ନାହିଁ ।

କିନ୍ତୁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ନାମକରଣରୁ ଦେଖାଯାଏ, ଲେଖକ ପାପର ପ୍ରାୟଶ୍ଚିତ୍ତ ବିଧାନ କରିବା ନିମନ୍ତେ ସ୍ପଷ୍ଟତଃ ଏହି ଉପନ୍ୟାସ ରଚନା କରିଅଛନ୍ତି । ଏଥିରେ ପ୍ରଧାନ ଅପ୍ରଧାନ ସମସ୍ତ ପୁରୁଷ ଓ ନାରୀ ପାପ ପାଇଁ ପ୍ରାୟଶ୍ଚିତ୍ତ କରିଛନ୍ତି । ଯେଉଁମାନଙ୍କ ପାଇଁ ଫକୀରମୋହନ ସେମାନଙ୍କର ପାପ ସକାଶେ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରି ନାହାନ୍ତି, ସେମାନଙ୍କ ପ୍ରତି କଠୋର ନିର୍ମମତା ପ୍ରଦର୍ଶନ କରିଅଛନ୍ତି । ସେମାନଙ୍କ କାର୍ଯ୍ୟକଳାପକୁ ବ୍ୟର୍ଥତାର ଶୂନ୍ୟତାରେ ପର୍ଯ୍ୟବସିତ କରିଅଛନ୍ତି । ପାଠକ ସେମାନଙ୍କୁ ଚିହ୍ନି ରଖୁ, ଏହି ଇଙ୍ଗିତ ଦେଇଅଛନ୍ତି । 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ସବୁ ନାଟର ଗୋବର୍ଦ୍ଧନ, ଏଫ୍. ଏ. ପଢୁଥିବା କେତେକ କଟକ କଲେଜ ଛାତ୍ର—ସଦାନନ୍ଦ, ରାଜୀବଲୋଚନ, କମଳଲୋଚନ । ସଦାନନ୍ଦ ପାପର ଫଳ ଭୋଗ କରିଛୁ । ସେ ସମସରପୁର ଜମିଦାରଙ୍କଠାରୁ ଯେଉଁ ଅର୍ଥ ପ୍ରାପ୍ତି ଆଶା କରିଥିଲା, ତାହା ପୂର୍ଣ୍ଣ ହୋଇ ନାହିଁ । କମଳଲୋଚନ ଅତି ଗୋଟିଏ ଦୀର୍ଘ ବକ୍ତୃତା ରଚନା କରି ରଖିଥିଲା, ଇନ୍ଦୁମତୀ ସହିତ ଗୋବିନ୍ଦଚନ୍ଦ୍ରର ବିବାହକୁ ଚୂର୍ଣ୍ଣୀଭୂତ କରିଦେଲେ, ରାଜୀବଲୋଚନଠାରୁ ବହୁ ଅର୍ଥ ପାଇବ । ରାଜୀବଲୋଚନ ଭାବିଥିଲା ଏପରି ଜାଲ ଜୁଆଚୋରି କରି ଦୁଇ ବିବଦମାନ କରଣଗୋଷ୍ଠୀ ମଧ୍ୟରେ ସମ୍ବନ୍ଧ ସ୍ଥାପନ

କରିଦେଲେ ସେ ଜଣେ ବଡ଼ ସଂସ୍କାରକର ଖ୍ୟାତି ପାଇବ । କିନ୍ତୁ ତାର ମିଥ୍ୟା ଓ କପଟତା ଯୋଗୁଁ ଇନ୍ଦୁମତୀ ଆତ୍ମହତ୍ୟା କଲେ । ସଙ୍କର୍ଷଣ ମହାନ୍ତି ଅନୁତପ୍ତ ହୋଇ ବୃନ୍ଦାବନକୁ ପାପ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ଗଲେ । ରାଜୀବଲୋଚନର ଆଉ ସନ୍ଧାନ ବର୍ଣ୍ଣି ନାହିଁ । ଲଜ୍ଜା, ସଙ୍କୋଚ ଓ ବ୍ୟର୍ଥତାର ଗ୍ଳାନିରେ ସେ ଆଉ ମୁହଁ ଦେଖାଇ ନାହିଁ ।

କିନ୍ତୁ 'ପ୍ରାୟଶ୍ଚିତ୍ତ'ରେ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ଚରିତ୍ର-ଚିତ୍ରଣରେ ଫକୀରମୋହନ ମାମୁଁଠାରୁ ଅଧିକ ନିର୍ଭୀକତା, ଅଭିଜ୍ଞତାର ବୈଚିତ୍ର୍ୟ ଓ କଳା କୁଶଳତାର ପରିଚୟ ଦେଇ-ଅଛନ୍ତି । ଏ ଉପନ୍ୟାସର ବୈଶିଷ୍ଟ୍ୟ ହେଲା—ପ୍ରେମଜନିତ ଦୃଷ୍ଟିରେ ଯୁବକ-ଚିତ୍ତକୁ ଉତ୍ତେଜିତ କରି ତାକୁ ଜୀବନରେ ମହାସଙ୍କଟର ସମ୍ମୁଖୀନ କରିବା । ଫକୀରମୋହନ ତାଙ୍କର କୌଣସି ଉପନ୍ୟାସରେ ବିବାହପୂର୍ବ ପ୍ରେମର ଚିତ୍ର ଦେଇ-ନାହାନ୍ତି । ଏହି ଉପନ୍ୟାସରେ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ଚିତ୍ତ-ଦୃଷ୍ଟିର ଯେଉଁ ଚିତ୍ର ଅଙ୍କିତ ହୋଇଛି, ତାହା ଏପରି ପ୍ରେମାସକ୍ତ ଯୁବକ ଯୁବତୀମାନଙ୍କ ପ୍ରତି ଯେ ତାଙ୍କର ବ୍ୟଙ୍ଗାତ୍ମକ ଆକ୍ରୋଶ, ଏକଥା ମଧ୍ୟ ଅସ୍ୱୀକାର କରି ହେବ ନାହିଁ । କିନ୍ତୁ ଆଲୋଚନା ସଭାରେ ଇନ୍ଦୁମତୀଙ୍କର ଯେଉଁ ପ୍ରଶଂସା ଗାନ କରାଗଲା, ତାଙ୍କର ରୂପ ଗୁଣର ଯେଉଁ ବିସ୍ତୃତ ବର୍ଣ୍ଣନା ଦିଆଗଲା, ସେଥିରେ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ଚିତ୍ତ ଇନ୍ଦୁମତୀଙ୍କୁ ପତ୍ନୀରୂପେ ପାଇବା ନିମନ୍ତେ ବିଚଳିତ ହୋଇ ଉଠିଲା । ତାଙ୍କ ଚିତ୍ତର ଏ ଦୁର୍ବଳତା ଲକ୍ଷ୍ୟ କରି ଭାଇ ସଦାନନ୍ଦ, ରାଜୀବଲୋଚନ ଓ କମଳଲୋଚନ, ଯୌନ-ନିର୍ବାଚନରେ ସ୍ୱାଧୀନତା ଓ ବିବଦମାନ ଦୁଇ କରଣଗୋଷ୍ଠୀ ମଧ୍ୟରେ ଐକ୍ୟ ସମ୍ପାଦନ କରିବା ଉଦ୍ଦେଶ୍ୟରେ ସରଳପ୍ରାଣ ଓ

ପିତୃମାତୃଭକ୍ତ କୁଅଁରଙ୍କୁ ଉତ୍ସାହିତ କଲେ । କିନ୍ତୁ ଚରିତ୍ରବାନ୍ ଓ କର୍ତ୍ତବ୍ୟନିଷ୍ଠ କୁଅଁର ଗୋବିନ୍ଦଚନ୍ଦ୍ର ସହଜରେ ଇନ୍ଦୁମତୀଙ୍କୁ ବିବାହ କରିବାକୁ ଇଚ୍ଛା କରୁନଥାନ୍ତି । କିନ୍ତୁ ଏଣେ କବିକନ୍ୟା ପ୍ରତି ଚିତ୍ତର ଦୁର୍ବଳତା ଥାଏ । ମନସ୍ତତ୍ତ୍ୱବିତ୍ ଫକୀରମୋହନ କୁଅଁର ଗୋବିନ୍ଦଚନ୍ଦ୍ରଙ୍କର ମନର ଏ ସଂଶୟ ଓ ସଂଘର୍ଷର ଚିତ୍ର ଅତି ନିପୁଣତାର ସହିତ ଅଙ୍କନ କରିଛନ୍ତି । ବଡ଼ଭାଇ ସଦାନନ୍ଦ-ଠାରେ ତାଙ୍କର ଅଟଳ ବିଶ୍ୱାସ । ତାରି କୁଶିକ୍ଷାରେ ପଡ଼ି ଶେଷକୁ ସେ ପିତାମାତାଙ୍କର ଅବାଧ୍ୟ ହେଲେ । ଏଣେ କମଳଲୋଚନ ଓ ରାଜୀବଲୋଚନ ତ ଏ ବିବାହକୁ ସଫଳ କରିବା ନିମନ୍ତେ ଗୋବିନ୍ଦଚନ୍ଦ୍ରଙ୍କୁ ବାରମ୍ବାର ଉତ୍ସାହିତ କରୁଥାନ୍ତି । କିପରି ଚତୁରତା ଓ କୌଶଳରେ ଏ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା, ଫକୀରମୋହନ ତାହାର ଯେଉଁ ବିସ୍ତୃତ ଭୂମିକା ଦେଇଅଛନ୍ତି, ତାହା ପ୍ରଥମଶ୍ରେଣୀ ବାସ୍ତବନିଷ୍ଠ ଔପନ୍ୟାସିକଙ୍କ ପକ୍ଷରେ କେବଳ ସମ୍ଭବ । କେତେ କୁଣ୍ଠା ଓ ସନ୍ତର୍ପଣରେ, ଚିତ୍ତଗ୍ଳାନି ସତ୍ତ୍ୱେ କୁଅଁର ଗୋବିନ୍ଦଚନ୍ଦ୍ର ଏଥିରେ ସମ୍ମତ ହୋଇଛନ୍ତି, ତାହାର ମନସ୍ତାତ୍ତ୍ୱିକ ଆଲୋଚନା, ସ୍ପଷ୍ଟଭାବରେ ନହେଲେ ମଧ୍ୟ, ନାନା ଇଙ୍ଗିତ ଓ ସୂଚନାରେ ଲେଖକ ଦେଇଅଛନ୍ତି । ବିବାହ ତ ହୋଇଗଲା, କିନ୍ତୁ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମନ ଯେପରି ଅସ୍ଥିର—ପିତାମାତାଙ୍କ ପ୍ରତି ତାଙ୍କର ଯେଉଁ ପ୍ରଗାଢ଼ ଅନୁରକ୍ତିର ପରିଚୟ ସଦାନନ୍ଦ ଓ ରାଜୀବଲୋଚନ ପ୍ରଭୃତି ପାଇଛନ୍ତି, ତାଙ୍କ ମନ ଭିତରେ ଯେଉଁ ସଂଘର୍ଷ ଲକ୍ଷ୍ୟ କରିଛନ୍ତି, ସେହି ସଂଘର୍ଷ ଓ ସଂଶୟ ଦୂର କରିବା ପାଇଁ ସଦାନନ୍ଦର ଯେଉଁ ଚତୁରତା, ଓ ମିଥ୍ୟାଜାଲ, ତାହାହିଁ ସ୍ପଷ୍ଟ ସୂଚାଇ ଦିଏ, ଫକୀରମୋହନ ମନଗହନ ଭିତରେ ପ୍ରବେଶ କରି କିପରି ମନୁଷ୍ୟର ପ୍ରଚ୍ଛନ୍ନ ଅଭିପ୍ରାୟ ଆବିଷ୍କାର କରି ପାରନ୍ତି । ଇନ୍ଦୁମତୀଙ୍କୁ

ବିବାହ କରିବା ନିମନ୍ତେ କୁଅଁର ଗୋବିନ୍ଦଚନ୍ଦ୍ର ଯେତେବେଳେ ଅନିଚ୍ଛା ପ୍ରକାଶ କରିଛନ୍ତି, ସେତେବେଳେ ତାଙ୍କୁ ଏଥିରେ ସମ୍ମତ କରାଇବାକୁ ଯାଇ ସଦାନନ୍ଦ କହୁଛନ୍ତି, "ସଙ୍କର୍ଷଣ ବାବୁଙ୍କ କନ୍ୟା ସମ୍ପୂର୍ଣ୍ଣରୂପେ ତୋର ଉପଯୁକ୍ତ, ତା ସମାନ ସୁଗଠନା ସୁନ୍ଦରୀ କରଣ କୁଳରେ ଦୁର୍ଲ୍ଲଭ । ବିଦ୍ୟାବତୀ, ବିଶେଷରେ ପ୍ରତିଭାମୟୀ, ସୁନ୍ଦର ଭାବପୂର୍ଣ୍ଣ କବିତା ଲେଖିପାରେ···।"

ଏ କଥା ଶୁଣି କୁଅଁର ବାବୁଙ୍କର ମୁଣ୍ଡ ବୁଲାଇ ହୋଇଗଲା । ମିଶନ ସ୍କୁଲରେ ପଢ଼ିବାବେଳେ ମାଷ୍ଟରଙ୍କ ମୁଖରୁ ଯେଉଁ ଧର୍ମଶାସ୍ତ୍ର ବଚନ ଶୁଣିଥିଲେ ତାହା ମନେ ପଡ଼ିଲା, "ପୁରୁଷ ପିତାମାତାଙ୍କୁ ପରିତ୍ୟାଗ କରି ଭାର୍ଯ୍ୟା ସହିତ ମିଳିତ ହେବ ।"

କୁଅଁରବାବୁଙ୍କର ଚିତ୍ତ ଦୁର୍ବଳତା ଏହିଠାରେ ସ୍ପଷ୍ଟ । ତାଙ୍କର ପିତୃଭକ୍ତି ଯବନିକାର ଅନ୍ତରାଳକୁ ଚାଲିଗଲା । ଜୀବନ-ମଞ୍ଚରେ, ସଦର୍ପରେ ଅବତୀର୍ଣ୍ଣ ହେଲା ସମସ୍ତ ପ୍ରଲୋଭନର ପରିପାଟୀ ଦେଖାଇ ଭାର୍ଯ୍ୟାସହିତ ମିଳିତ ହେବାର ଦୁର୍ବାର କାମନା ।

କୁଅଁର ବାବୁ ନିରୁପାୟ, ନିଃସହାୟ, ଅନାଥ ଶିଶୁପରି ସେହି ସଦାନନ୍ଦର ଆଶ୍ରୟରେ ନିଜକୁ ସମର୍ପଣ କରିଦେଲେ । କହିଲେ, "ମୁଁ ଭାବି ଭାବି କିଛି କଥା ଠିକଣା ଲଗାଇ ପାରୁ ନାହିଁ । ତୁ ଯାହା ଭଲ ବିବେଚନା କରୁ କର ।"

କବିତା ଦ୍ୱାରା ମନ ଉଚାଟ ଓ ଉତ୍ତେଜିତ ହୁଏ, କବିପ୍ରାଣ ଫକୀରମୋହନ ତା ବୁଝିଥିଲେ । ଯୁବ-ସମାଜରେ ଏପରି ପ୍ରଣୟ ପତ୍ରର ବିନିମୟ ଯେ ସେତେବେଳେ ଆମ ସମାଜରେ ନଥିଲା, ତାହା ନୁହେଁ । ପ୍ରେମଚିଟାଉ ଲେଖିବା ତ ଆମର ପ୍ରାଚୀନ କାବ୍ୟ-ସାହିତ୍ୟରେ ଅଛି । ଏହି ପ୍ରେମଦ୍ୱାରା ହିଁ ମନୁଷ୍ୟର ଦୁର୍ବଳ

ଚିତ୍ତରେ ଆଘାତ ଦେଇଥିବ, ତେଣୁ ସେ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଗୋଟିଏ ସୁନ୍ଦର ପ୍ରେମ-କବିତାର ଅବତାରଣା କରିଛନ୍ତି । ଏହି ପ୍ରେମ-କବିତା, ଯେ ରଚନା କରୁ ପଛେ, ଇନ୍ଦୁମତୀଙ୍କର ସ୍ୱାକ୍ଷର ଏଥିରେ ଅଛି, ତେଣୁ ଏହା ତାଙ୍କର । ଚିତ୍ତର ଚଞ୍ଚଳତା ଏ ଚିଠି ପଢ଼ି ଅଜିର କ୍ଷିପ୍ର ଓ ଅସହ୍ୟ ହୋଇ ଉଠିବ, ଫକୀରମୋହନ ନିପୁଣ ମନସ୍ତତ୍ତ୍ୱବିତ୍ ପରି ଏ କଥା କଳନା କରିଥିଲେ । ତେଣୁ ଚିଠିରେ ଲେଖାଥିଲା :—

"କେବେ ଯେବେ କୃପା କରିବେ ନାହିଁ
ବଞ୍ଚି ରହିବି ମୁଁ କାହାକୁ ଚାହିଁ ?
ନ କର ନିର୍ଘଣ ହେ ପ୍ରାଣେଶ୍ୱର,
ଆସନ୍ତୁ ଚଞ୍ଚଳ ଯୋଡ଼ୁଛି କର ।"

ଗୋବିନ୍ଦଚନ୍ଦ୍ର ଏ ଚିଠି ପଢ଼ି ଚଞ୍ଚଳ ଯିବାକୁ ପ୍ରସ୍ତୁତ ହେଲେ ।

ଗୋବିନ୍ଦଙ୍କର ସବୁ ବିପଦର କାରଣ ହେଲା ଏଇ ଗୋପନ ଶ୍ୱଶୁରାଳୟ ଗମନ—ଏଇ ଚିତ୍ତ-ଚାଞ୍ଚଲ୍ୟ, ମନୁଷ୍ୟଜାତି ପ୍ରତି ସରଳ ବିଶ୍ୱାସ, ଏବଂ ନିଜର ବ୍ୟକ୍ତିତ୍ୱହୀନତା । କେବଳ ନିଜର ସରଳ ବିଶ୍ୱାସ ସକାଶେ ଫକୀରମୋହନ ତାଙ୍କୁ ଶ୍ୱଶୁରାଳୟରେ ନିର୍ମମ ପ୍ରହାର ଦିଆଇ ନାହାନ୍ତି, ଏ କର୍ମଫଳ ସହିତ ଅନ୍ତରାଳରେ ପ୍ରଚ୍ଛନ୍ନ ହୋଇ ରହିଥିଲା ଅଦୃଶ୍ୟ ଇଙ୍ଗିତର ନିର୍ଦ୍ଦେଶ । ତେଣୁ ଶ୍ୱଶୁରାଳୟରେ ପହଞ୍ଚିବା ପୂର୍ବରୁ ଫକୀରମୋହନ ଏହି ଦୁରତିକ୍ରମ୍ୟ ନିୟତିକୁ ଲକ୍ଷ୍ୟ କରି ସତେ ଯେପରି କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ଆସନ୍ନ ବିପଦରେ ଶୋକାତୁର ହୋଇ ଲେଖିଛନ୍ତି,

'ଯଚ୍ଚିନ୍ତିତଂ ତଦିହ ଦୂରତରଂ ପ୍ରୟାତି
ଯତ୍ ଚେତସା ନଗଣିତଂ ତଦିହାଭ୍ୟୁପେତି ।'

ମନୁଷ୍ୟ ଯାହା ଚିନ୍ତା କରିଥାଏ, ତାହା ଦୂରକୁ ଅପସରି ଯାଏ; ଯାହା କଳ୍ପନା କରିନଥାଏ, ତାହା ହଠାତ୍ ଆସି ମନୁଷ୍ୟଙ୍କୁ ବିପର୍ଯ୍ୟସ୍ତ କରିଦିଏ । କଟକ ଜେନେରାଲ ହସପିଟାଲ ଛାଡ଼ି ଗ୍ରାମକୁ ଯିବା ପୂର୍ବରୁ କୁଅଁରବାବୁ ଡାକ୍ତରବାବୁଙ୍କ ପାଖକୁ ଗୋଟିଏ ପତ୍ରରେ ଲେଖିଥିଲେ—"ଘଟନା ପରମ୍ପରା ଆଲୋଚନା କରି ଦେଖୁଛୁ, ମାନବ ସ୍ୱାଧୀନ ଜୀବ; ଏପରି ବିଶ୍ୱାସ କରିବା ମୂର୍ଖତା ଏବଂ ଅହଙ୍କାର ପ୍ରକାଶ ମାତ୍ର । ବେଳେ ବେଳେ ଅନିଚ୍ଛାରେ ବା ଅଜ୍ଞାତ-ସାରରେ ମାନବ-ଜୀବନରେ ଏପରି ଘଟନାମାନ ଆସି ଉପସ୍ଥିତ ହୁଏ, ଯାହା ନିବାରଣ କରିବା ସାଧ୍ୟାତୀତ ଅଟେ । କେଉଁ ଅଲକ୍ଷ୍ୟ ହସ୍ତ ଆସି ଯେପରି ପ୍ରବଳ ରୂପେ ସେହି ବାଟକୁ କଢ଼ାଇ ନେଇଯାଏ । ମାନବର ପରିମିତ ଜ୍ଞାନ ଏବଂ କ୍ଷୁଦ୍ର ବିବେଚନା ତାହାଠାରେ ଚିର ପରାସ୍ତ ।"

ଏ କେବଳ କୁଅଁର ଗୋବିନ୍ଦଚନ୍ଦ୍ରଙ୍କର ନୁହେଁ, ଫକୀର-ମୋହନଙ୍କର ଦୃଢ଼ ବିଶ୍ୱାସ । ତେଣୁ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ପ୍ରତି ତାଙ୍କର ଗଭୀର ସଂବେଦନଶୀଳତା । କୁସଂସର୍ଗ, ଦୁଷ୍ଟ ଲୋକଙ୍କ ଅତି ବିଶ୍ୱାସ ଏବଂ ଅଲକ୍ଷ୍ୟ ହସ୍ତର ଇଙ୍ଗିତ କୁଅଁର ଗୋବିନ୍ଦ-ଚନ୍ଦ୍ରଙ୍କର ସମସ୍ତ ଦୁଃଖ ଦୁର୍ଦ୍ଦଶାର କାରଣ । ସେ ସନ୍ମାର୍ଗଗାମୀ, କିନ୍ତୁ କ୍ଷଣିକ ଚିତ୍ତଦୁର୍ବଳତା ତାଙ୍କର ଏକମାତ୍ର ଦୋଷ । ତାଙ୍କର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ହୋଇନାହିଁ ପିତା ବୈଷ୍ଣବଚରଣ କିମ୍ବା ସଙ୍କର୍ଷଣଙ୍କ ପରି ବୃନ୍ଦାବନର କୁଞ୍ଜବନରେ । ସେ ଅବଶ୍ୟ ସେଠାରେ ଏହି ଦୁଇ ବୈରାଗୀମାନଙ୍କ ଗୋଡ଼ତଳେ ପଡ଼ି କହିଛନ୍ତି, "ଅଜ୍ଞା, ଅଜ୍ଞା, ବାପସାନ୍ତମାନେ, ମୁଁ ଆପଣମାନଙ୍କ ସେହି ଅଧମ, ଦୁରାଚାର, ପାପିଷ୍ଠ ପୁତ୍ର ।" କିନ୍ତୁ ଗୋବିନ୍ଦଚନ୍ଦ୍ର ତ ଅଜ ଦୁର୍ଜନ ଓ ମନ୍ଦବୁଦ୍ଧି ସଙ୍ଗରାଜ ନୁହନ୍ତି, କି ଅର୍ଥଲିପ୍ସୁ ନାଜର ନଟବର ଦାସ

କୁହନ୍ତି । ସେ ଶୁଦ୍ଧ, ସତ୍ ଓ ନିଷ୍ପାପ । ପରୀକ୍ଷାରେ ପଡ଼ି ଦୈବ ଦୁର୍ବିପାକରୁ ତାଙ୍କର ଜୀବନ ଏପରି ଲଣ୍ଡଭଣ୍ଡ ହୋଇଯାଇଛି । ସେ ବର୍ତ୍ତମାନ ଭଲକରି ବୁଝିପାରୁଛନ୍ତି ତାଙ୍କ ଜୀବନର ଦୋଷ ଦୁର୍ବଳତା କଣ । ସେ ମଙ୍ଗରାଜ କିମ୍ବା ନଟବରଙ୍କ ପରି କାହାର ଅନିଷ୍ଟ ଦିନେ ଚିନ୍ତା କରି ନାହାନ୍ତି । କେବଳ ଦିନେ ସ୍ୱାର୍ଥସର୍ବସ୍ୱ ତଥାକଥିତ ଶିକ୍ଷିତ ଯୁବକଙ୍କ କୁପ୍ରରୋଚନାରେ ପଡ଼ି ପିତୃଦ୍ରୋହୀ ହୋଇଥିଲେ । ତାଙ୍କର ଏ କ୍ଷଣିକ ଦୁର୍ବଳତା ଯୋଗୁ ଇନ୍ଦୁମତୀଙ୍କର ଅକାଳ ମୃତ୍ୟୁ । କିନ୍ତୁ ସକ୍ରିୟ ଓ ସଚେତନ ଭାବରେ ସେ କାହାର ଅନିଷ୍ଟ କରି ନାହାନ୍ତି । ଏ ଭଳି ଚରିତ୍ର ପ୍ରତି ଫକୀରମୋହନଙ୍କ ପ୍ରାଣରେ କେବଳ କରୁଣା ନାହିଁ, ଅଛି ଜାତୀୟ ଆଶା ଆକାଂକ୍ଷାର ବିପୁଳ ସମ୍ଭାବନା । ଏଇମାନେ ନିଜର କ୍ଷଣିକ ଦୋଷ ଦୁର୍ବଳତାରୁ ନିଜକୁ ମୁକ୍ତ କରିପାରିଲେ ଜାତୀୟ ଚରିତ୍ର ଗଠନ କରିବାରେ ସହାୟତା କରିବେ । ତେଣୁ ଗୋବିନ୍ଦଚନ୍ଦ୍ରଙ୍କର ପ୍ରାୟଶ୍ଚିତ୍ତ ବୃନ୍ଦାବନରେ ହୋଇ ନାହିଁ, ହୋଇଛି ଦୁଇଟି ତାଲୁକର ବିଶାଳ ଜମିଦାରିର କାର୍ଯ୍ୟ ପରିଚାଳନାରେ । ବୃନ୍ଦାବନରୁ ବିଦାୟ ନେଲା ବେଳେ ବଡ଼ ବୈରାଗୀ ପୁଅ ଗୋବିନ୍ଦଙ୍କୁ ଉପଦେଶ ଦେଇ କହିଥିଲେ, "ପ୍ରଭୁଙ୍କ ଦୟାରୁ ତୁମ୍ଭେ ବିପୁଳ ଧନର ଅଧିକାରୀ । ସେହି ଅର୍ଥ ପ୍ରୟୋଗରେ ଦେଶ ମଧ୍ୟରେ ଜ୍ଞାନ ବିସ୍ତାର, ପୀଡ଼ିତ ଲୋକଙ୍କ ସେବା ଶୁଶ୍ରୂଷା ଏବଂ ଜଳଛତ୍ର, ଅନ୍ନଛତ୍ର ଯୋଗେ ଅନେକ ପ୍ରାଣୀଙ୍କ ରକ୍ଷା କରିବାକୁ ସମର୍ଥ ହେବ ।" କୁଅଁର ଗୋବିନ୍ଦଚନ୍ଦ୍ର ଏହି ଉପଦେଶ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ସଇତା ସନ୍ନ୍ୟାସୀ, ଇନ୍ଦୁମତୀର ପ୍ରାଣସଖୀ ମଲୁଆ ବି ତପସ୍ୱିନୀ—କୁଅଁର ଗୋବିନ୍ଦଚନ୍ଦ୍ର ସଂସାରରେ ଥାଇ ମଧ୍ୟ ପରୋପକାରବ୍ରତଧାରୀ ସନ୍ନ୍ୟାସୀ । ପୁଣ୍ୟାତ୍ମା ଗୋପବନ୍ଧୁ ଥରେ କହିଥିଲେ, "ଦେଶସେବା

ନମନ୍ତେ ସନ୍ନ୍ୟାସୀର ସାଧନା ବର୍ତ୍ତମାନ ନିତାନ୍ତ ଅବଶ୍ୟକ ।" ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' ଉପନ୍ୟାସ ସେହି ସନ୍ନ୍ୟାସୀ-ସାଧନାର ଜୀବନ୍ତ ପ୍ରତୀକ ବୋଲି ମନେହୁଏ । ଫକୀରମୋହନଙ୍କ ଦେଶାତ୍ମବୋଧ ଏବଂ ସତ୍ୟ, ଶିବ ଓ ସୁନ୍ଦରର ଉପାସନାର ଏହା ଆଉ ଗୋଟିଏ ମହନୀୟ ବୈଭବ । ଏ ସନ୍ନ୍ୟାସୀର ସାଧନା ନଥାଇ ଯେ କୌଣସି ଦେଶହିତକର କାର୍ଯ୍ୟରେ ହାତ ଦେଲେ, ଜନସମାଜରେ କେବଳ ହାସ୍ୟାସ୍ପଦ ହେବାକୁ ପଡ଼ିବ ।

ଏହି ପ୍ରଧାନ ଚରିତ୍ରମାନଙ୍କ ବ୍ୟତୀତ ଫକୀରମୋହନଙ୍କ ଉପନ୍ୟାସରେ ବହୁ ଗୌଣ ଚରିତ୍ରର ଅବତାରଣା ଦେଖାଯାଏ । ଭିକ୍ଟୋରିଆ ଯୁଗର ଔପନ୍ୟାସିକ ଡ଼ିକେନ୍‌ସଙ୍କ ଅନୁକରଣ କରି ଏ ଗୌଣ ଚରିତ୍ର ସେ ସୃଷ୍ଟି କରି ନାହାନ୍ତି । ଏଠାରେ ଅନୁକରଣର ପ୍ରଶ୍ନ ନାହିଁ, ଅଛି ଫକୀରମୋହନଙ୍କ ବ୍ୟାପକ ଅଭିଜ୍ଞତାର ଶିଳ୍ପାୟନ । ମନୁଷ୍ୟର ଚରିତ୍ର ବିଶ୍ଳେଷଣ କଲାବେଳେ ଦେଖିବାକୁ ହେବ, ତାର ବ୍ୟବହାର ଅନ୍ୟମାନଙ୍କ ପ୍ରତି କିପରି, ସେ କାହା ସହିତ ମିଳାମିଶା କରୁଛି, କିଏ ତାର ସୁକର୍ମ କିମ୍ବା କୁକର୍ମର ଭାଗୀ—କିଏ ତାକୁ ପ୍ରଭାବିତ କରୁଛି, କିଏ ବା ତା ଦ୍ୱାରା ଏହିପରି ପ୍ରଭାବିତ । ସମାଜରେ ମନୁଷ୍ୟକୁ ବହୁ ଲୋକଙ୍କର ସଂସ୍ପର୍ଶରେ ଆସିବାକୁ ହୁଏ । ତେଣୁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଯେଉଁ ସଇତା ବାରିକ ଚରିତ୍ର ଚିତ୍ରିତ ହୋଇଛି, ତାହାକୁ ଆମେ ଗୌଣ ଚରିତ୍ର ବୋଲି ମାନି ନେଉ । କିନ୍ତୁ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ଉପରେ ତାର ପ୍ରଭାବ ତ କିଛି କମ୍ ନୁହେଁ । ସେ ଭୃତ୍ୟ, କିନ୍ତୁ ଅତି ବିଶ୍ୱାସୀ । ପ୍ରଭୁଙ୍କ ପାଇଁ ଜୀବନ ବଳି ଦେବାକୁ ପ୍ରସ୍ତୁତ । କୁଅଁର ଗୋବିନ୍ଦଚନ୍ଦ୍ର କଟକ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ବେଳେ ସେ ନିଜ ଗାଣ୍ଠିଅରୁ ତା ଉପାର୍ଜିତ ଟଙ୍କା ଅକାତରେ

ଖର୍ଚ୍ଚ କରିଦେଉଛନ୍ତି । ଡାକ୍ତରଖାନାରେ ଏଇ ସଇତା ହିଁ କୁଅଁର ଗୋବିନ୍ଦଚନ୍ଦ୍ରଙ୍କର ଏକମାତ୍ର ସହାୟ । ସଇତା ନଥିଲେ ଗୋବିନ୍ଦଚନ୍ଦ୍ର ପ୍ରାଣ ପାଇଥାନ୍ତେ କି ନାହିଁ ସନ୍ଦେହ । ତେଣୁ ପ୍ରଧାନ ଚରିତ୍ର ସହିତ ଏହି ଗୌଣ ଚରିତ୍ରର ଘନିଷ୍ଠ ସମ୍ପର୍କ । ସମାଜରେ ଏପରି ବିଶ୍ୱାସୀ ଭୃତ୍ୟ ବଡ଼ କମ୍ ଦେଖାଯାନ୍ତି । ଫକୀରମୋହନ ଏହି ଗୌଣ ଚରିତ୍ରର ଅବତାରଣା କରି କେବଳ ଗୋବିନ୍ଦଚନ୍ଦ୍ରଙ୍କ ନାନା ଅସୁବିଧା ଓ ଜୀବନ-ସଙ୍କଟରୁ ଉଦ୍ଧାର କରି ନାହାନ୍ତି, ଅନ୍ୟାନ୍ୟ ଚରିତ୍ରମାନଙ୍କ ଉଜ୍ଜ୍ୱଳରୂପେ ପ୍ରତିଭାତ କରାଇଅଛନ୍ତି । କଲେଜ ପଢ଼ୁଆ ସଦାନନ୍ଦ, କମଳଲୋଚନ ଓ ରାଜୀବଲୋଚନ ଯେତେବେଳେ କୁଟ ଚକ୍ରାନ୍ତରେ ଲିପ୍ତ, ସେତେବେଳେ ସଇତା ବାରିକ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ସକଳ ବିପଦରୁ ରକ୍ଷା କରିବା ନିମନ୍ତେ ସଯତ୍ନ । ସଦାନନ୍ଦ 'ଭିଲ' ହୋଇ ଯେତେବେଳେ ଗୋବିନ୍ଦର ଗଳା କାଟିବାକୁ ପ୍ରସ୍ତୁତ, ସେତେବେଳେ ସଇତା ତା ବାବୁଙ୍କ ଭଲ ପାଇଁ ଚିନ୍ତିତ । ଅସତ୍ ଚରିତ୍ରର ଅନ୍ଧକାର ଦିଗଟିକୁ ଆହୁରି ନିବିଡ଼ ଅନ୍ଧକାରମୟ କରି ଚିତ୍ର କରିବା ନିମନ୍ତେ ସଇତା, 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଫକୀରମୋହନଙ୍କର ଗୋଟିଏ ଅତି ସୁମହାନ୍ ଚରିତ୍ର । ତେଣୁ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ କିଏ ଗୌଣ, କିଏ ମୁଖ୍ୟ ଏ ବିଚାର କଲାବେଳେ ପାଠକ ସନ୍ଦେହରେ ପଡ଼େ । ସେହିପରି ସାଧୁସାହୁ ମହାଜନ ଗୋଟିଏ ଅତି କ୍ଷୁଦ୍ର ଚରିତ୍ର । ସେ 'ମାମୁଁ' ଉପନ୍ୟାସରେ ଦେଖା ଦେଇଛନ୍ତି ଅଳ୍ପ ସମୟ ପାଇଁ । କିନ୍ତୁ ଏଇ ଅଳ୍ପ ସମୟ ମଧ୍ୟରେ ସେ ପାଠକର ଚିତ୍ତକୁ ବହୁକାଳ ପର୍ଯ୍ୟନ୍ତ ଅଧିକାର କରି ବସିଛନ୍ତି । ସେ ସରସ୍ୱତୀଙ୍କ ଅକୁଣ୍ଠିତ ଚିତ୍ତରେ ଧାନ କରଜ ଦେଇନଥିଲେ ନାଜର ନଟବରଙ୍କ ଶୋଷଣ ଓ ଲୁଣ୍ଠନରେ ବୃନ୍ଦମଣିଙ୍କ ଉଆସର ପୋଇଲି ପରିବାରୀମାନେ ଜଣ

ଜଣ ହୋଇ ଅନାହାରରେ ମରୁଥାନ୍ତେ । ଏ ଚରିତ୍ରର ଅବତାରଣା କାହିଁକି, ତୁଳନାତ୍ମକ ଭାବରେ ଦେଖାଇଦେବା—ଗୋଟେ ଦିଗରେ 'ଶିକ୍ଷିତ' ନାଜର ନଟବର ଦାସ, ଅନ୍ୟ ଦିଗରେ 'ମୂର୍ଖ' ସାଧୁସାହୁ ମହାଜନ । କାହାର ମହତ୍ତ୍ୱ କେତେ ? ଏହି ସାଧୁସାହୁ ମହାଜନର ଉଦାରତାର ପରିପ୍ରେକ୍ଷିତରେ ବିଚାର କଲେ ଶିକ୍ଷିତ ନାଜର ବାବୁଙ୍କର କଳଙ୍କ-କାଳିମା ଘନକୃଷ୍ଣ ମସୀରେ ପାଠକ ସମ୍ମୁଖରେ ଚିତ୍ରିତ ହୋଇଯାଏ । ତେଣୁ ଫକୀରମୋହନଙ୍କ ଉପନ୍ୟାସ-ରଚନା-ରୀତିର ଅନ୍ୟ ଗୋଟିଏ ବୈଶିଷ୍ଟ୍ୟ, ଗୌଣ ଚରିତ୍ର ସହିତ ମୁଖ୍ୟ ଚରିତ୍ରର ଐକ୍ୟ ବିଧାନ । କୌଣସି ଗୌଣ ଚରିତ୍ର ତାଙ୍କର ଅବାନ୍ତର ନୁହଁ । ଉପନ୍ୟାସ ଜଗତରେ ସମସ୍ତେ ନିଜ ନିଜ କର୍ତ୍ତବ୍ୟ କରି ଚାଲିଛନ୍ତି—ସମସ୍ତେ ଯେପରି ଗୋଟିଏ ସୂତ୍ରରେ ଗ୍ରଥିତ । ଜଣେ କକ୍ଷଚ୍ୟୁତ ହେଲେ ସମଗ୍ର-ଚରିତ୍ର-ଜଗତ କକ୍ଷଚ୍ୟୁତ ହୋଇ ଛିନ୍ନ ବିଚ୍ଛିନ୍ନ ହୋଇଯିବ ।



# ( ନାରୀ )

ପୁରୁଷ ଚରିତ୍ର ଅପେକ୍ଷା ନାରୀ-ଚରିତ୍ର ଚିତ୍ରଣରେ ଫକୀରମୋହନ ତାଙ୍କ ପୁଙ୍ଖାନୁପୁଙ୍ଖ, ବାସ୍ତବନିଷ୍ଠ ବର୍ଣ୍ଣନା-ନୈପୁଣ୍ୟ ଓ ବିଶ୍ଳେଷଣୀ ଶକ୍ତିର ଅଧିକ ପରିଚୟ ଦେଇଅଛନ୍ତି । ପୁରୁଷ ଚରିତ୍ରର ବୈଭିନ୍ନତା ଅପେକ୍ଷା ନାରୀ-ଚରିତ୍ରର ବୈଭିନ୍ନତା ସେ ଅଧିକ ଜୀବନ୍ତ ଭାବରେ ଅଙ୍କନ କରିଅଛନ୍ତି । ପୁରୁଷ ଉପରେ ନାରୀର ପ୍ରବଳ ପ୍ରଭାବର ସ୍ୱରୂପ ସେ ବିଚିତ୍ର କୌଶଳରେ ଉଦ୍‌ଘାଟନ କରି ପାଠକ-ସମାଜରେ ପରିବେଷଣ କରିଅଛନ୍ତି । 'ନାରୀ ଯେ ନରକର ଦ୍ୱାର', କିମ୍ବା 'ସ୍ତ୍ରୀବୁଦ୍ଧି ପ୍ରଳୟଙ୍କରୀ' ବହୁଦିନ ହେଲା ଆମ ସମାଜରେ ପ୍ରଚଳିତ ଏହି ପ୍ରବଚନର ଯଥାର୍ଥତା ସେ ତାଙ୍କର ଅପୂର୍ବ କଳାକୁଶଳତାରେ ପ୍ରତିପାଦନ କରିଅଛନ୍ତି । କିନ୍ତୁ ତାଙ୍କର ସବୁ ନାରୀ ସେପରି ନୁହନ୍ତି । ଚମ୍ପା ଓ ଚିତ୍ରକଳା ଅତି ଧୂର୍ତ୍ତା, ଛଳନାମୟୀ, ସ୍ୱାର୍ଥପରବଶ, ପରର ଅନିଷ୍ଟକାରିଣୀ ଓ ପୈଶାଚିକପ୍ରବୃତ୍ତିସମ୍ପନ୍ନା । ଦୟା, ମାୟା . ମମତା ଓ କରୁଣା ହୋଇ ଏ ଦୁହିଙ୍କଠାରେ କିଛି ନାହିଁ । ଚିତ୍ରକଳା ତୁଳନାରେ ଚମ୍ପା ଅତିର ଭୟଙ୍କରୀ—ଅତିର ସର୍ବନାଶିନୀ । କିନ୍ତୁ ଉଭୟେ ଅର୍ଥର ଦାସୀ । ଟଙ୍କା ସକାଶେ ସେ ଦୁହେଁ ସବୁ କରିପାରନ୍ତି । କିନ୍ତୁ 'ଛ ମାଣ ଅଠଗୁଣ୍ଠ'ର ସାଆନ୍ତାଣୀ ସକଳ ସଦ୍‌ଗୁଣର ମୂର୍ତ୍ତି ପ୍ରତୀକ । ଦୟାମୟୀ, ସହାନୁଭୂତିସମ୍ପନ୍ନା ଓ ପରଦୁଃଖମୋଚନତତ୍ପରା । 'ମାମୁଁ'ର ଗୃହିଣୀ ଓ ସରସ୍ୱତୀ ଦେଇ ଆଦର୍ଶ ନାରୀ ରୂପେ

ଚରିତ୍ର । ବୈଧବ୍ୟ ପରେ ଚୂଡ଼ାମଣିଙ୍କୁ ଲେଖକ ଏକ ଉଚ୍ଚ ସଂସାର-ବିତୃଷ୍ଣା ସନ୍ନ୍ୟାସିନୀ ରୂପେ ଉପସ୍ଥାପିତ କରିଛନ୍ତି—ଜୀବନଟା ଯେପରି ତାଙ୍କର ଗୋଟିଏ ଉତପ୍ତ ବିରାଟ ମରୁଭୂମିରେ ପରିଣତ ହୋଇଅଛି । ପତ୍ନୀର ଦାମ୍ପତ୍ୟ ପ୍ରଣୟର ମହତ୍ତ୍ୱ ଲେଖକ ତାଙ୍କଠାରେ ଦେଖି ଯେପରି ବିମୁଗ୍ଧ । ତେଣୁ ପାତିବ୍ରତ୍ୟର ଉଜ୍ଜ୍ୱଳ ମହିମାରେ ତାଙ୍କ ଚରିତ୍ରକୁ ସେ ମଣ୍ଡିତ କରିଅଛନ୍ତି । ପତିଙ୍କ ମୃତ୍ୟୁ ପରେ ସେ ନିର୍ବାକ୍, ନିସ୍ପନ୍ଦ । ତାଙ୍କ ପାଇଁ ସବୁ କରି ଦେଉଛନ୍ତି ଧାଈମା । ତାଙ୍କର ଏ ନିସ୍ପୃହତା ଓ ନୀରବତା, ଏବଂ ସଂସାରପ୍ରତି ନିର୍ଲିପ୍ତ ଉଦାସୀନତା ବିଧବା ନାରୀର ତପଃସାଧନା । ତାଙ୍କ ସହିତ କେବଳ ତୁଳନୀୟ 'ପ୍ରାୟଶ୍ଚିତ୍ତ' ଉପନ୍ୟାସର ଇନ୍ଦୁମତୀ । କିଏ ଜାଣେ, ଚୂଡ଼ାମଣି ବୈଧବ୍ୟର କଠୋର ଯନ୍ତ୍ରଣା ସହ୍ୟ କରିନପାରି ଇନ୍ଦୁମତୀଙ୍କ ପରି ଆତ୍ମହତ୍ୟାରେ ମନ ବଳାଇ ନଥାନ୍ତେ ? ପତିଙ୍କ ବିୟୋଗରେ ତାଙ୍କର 'ଜୀବନ-ଗ୍ରନ୍ଥି' ସମସ୍ତ "ଛିନ୍ନଭିନ୍ନ, ଇନ୍ଦ୍ରିୟ ସମସ୍ତ ଅନାୟତ୍ତ ଏବଂ କର୍ମାକ୍ଷମ । ନିଃଶ୍ୱାସ ପ୍ରଶ୍ୱାସ ମାତ୍ର ଜୀବନସତ୍ତ୍ୱର ପରିଚାୟକ" । କିନ୍ତୁ ତାଙ୍କ ଅତନ୍ଦ୍ର ଜାଗରଣ ଏବଂ ଅପୂର୍ବ ମମତାରେ ଜଗି ରହିଛନ୍ତି ଧାଈମା ସରସ୍ୱତୀ ଦେଈ । ଧାଈମାଙ୍କର କର୍ତ୍ତବ୍ୟନିଷ୍ଠା, ଜନନୀସୁଲଭ ସନ୍ତାନ-ବାତ୍ସଲ୍ୟ, ସାଂସାରିକ କାର୍ଯ୍ୟନିର୍ବାହରେ ନିପୁଣ ଦକ୍ଷତା ଓ ପର ପାଇଁ ପ୍ରାଣ ବଳିଦେବା ନିମନ୍ତେ ପ୍ରୟାସ—ଏହା ଯେ କୌଣସି ପୁରୁଷକୁ ଲଜ୍ଜା ଓ ଗ୍ଳାନିରେ ଅଭିଭୂତ କରିଦେବ । 'ଲଛମା' ଉପନ୍ୟାସରେ ସେହିପରି ରାଇବଣିଆ ଦୁର୍ଗର ଅଧୀଶ୍ୱରୀ ଜଣେ ମହୀୟସୀ ନାରୀ, ଉଦାରପ୍ରାଣା ଓ ପରହିତସାଧିନୀ, ନାରୀ-ସମାଜର ମୁକୁଟମଣି । ଓଡ଼ିଶାର ଭାଗ୍ୟ-ରବି ଅସ୍ତମିତ ହୋଇଯିବାକୁ ବସିଥିବା ବେଳେ ସେ ଯେପରି ପଶ୍ଚିମ ଗଗନର ନୟନପ୍ରୀତିକର

ବିକ୍ରମ ଲୁଟା । ବିଦେଶିନୀ ଲଛମା ପ୍ରତି ମହାଦେବୀଙ୍କର କି ଅକପଟ ସନ୍ତାନ-ବାତ୍ସଲ୍ୟ ! ଲଛମା କାନ୍ଦିଲେ ସେ କାନ୍ଦି ବସନ୍ତି । କାଳେ କାଗ୍ରେଳାରେ କାନ୍ଦିବ ବୋଲି 'ମହାଦେବୀ ତାକୁ କାନିଗଣ୍ଠିଲି' କରି ରଖିଥାନ୍ତି । ତାଙ୍କର ନିଜର କିଛି ସ୍ୱାତନ୍ତ୍ର୍ୟ ନଥିଲା । ତାଙ୍କ ଜୀବନର ଏକମାତ୍ର ଆଦର୍ଶ ଥିଲା—'ମନ, ପ୍ରାଣ, ଶରୀର, କାର୍ଯ୍ୟ, ସୁଖ-ସ୍ୱାଚ୍ଛନ୍ଦ୍ୟ, ଧନସମ୍ପତ୍ତି ସମସ୍ତ ଦ୍ରବ୍ୟରେ ସ୍ୱାମୀ ଅଧିକାରୀ; ନିର୍ମଳ ନିଷ୍କଳଙ୍କ ଭାବରେ ସ୍ୱାମୀଙ୍କୁ ଏସବୁ ଅର୍ପଣ କରିବା ତାଙ୍କର ଏକମାତ୍ର କାର୍ଯ୍ୟ ।' ମରହଟ୍ଟାମାନେ ରାଇବଣିଆ ଦୁର୍ଗରେ ପ୍ରବେଶ କରିବା ବେଳେ ସେ ଅପୂର୍ବ ବୀରତ୍ୱ, ତ୍ୟାଗ ଓ ସତୀତ୍ୱର ପରିଚୟ ଦେଇଥିଲେ । ଧର୍ମ ନଷ୍ଟ ହେବା ଭୟରେ ସେ ଗଡ଼ଚଣ୍ଡୀ ଦେବୀଙ୍କୁ ପ୍ରଣାମ କରି ଦେବୀଙ୍କ ଧଣ୍ଡାମାଳ ଗଳାରେ ଲମ୍ବାଇ ବେଣ୍ଟ ପୋଖରୀରେ ପ୍ରାଣତ୍ୟାଗ କଲେ । ପ୍ରାଣ ଯାଉ—ଧର୍ମ ରହୁ, ସତୀତ୍ୱ ରହୁ, ଏହା ଥିଲା ମହାଦେବୀଙ୍କ ଜୀବନର ନୀତି । ତେବେ ଗୁନ୍ଦମଣି, ମହାଦେବୀ ଓ ଇନ୍ଦୁମତୀଙ୍କ ଜୀବନର ଏପରି ଦୁଃଖମୟ ପରିଣତି ହେଲା କାହିଁକି ? ବିଧାତା ଏମାନଙ୍କର ସୁଖ ସହିଲା ନାହିଁ କାହିଁକି ? ଏହାର ଏକମାତ୍ର ଉତ୍ତର, ମନୁଷ୍ୟ ପରିସ୍ଥିତିର ଦାସ—ଘଟଣାର କିଙ୍କର । ସେ ଯେତେ ଭଲ ହେଉ ପଛକେ, କାଳଚକ୍ରର ଆବର୍ତ୍ତନରେ ଯେଉଁ ଘଟଣାପ୍ରବାହ ଘଟିଯାଉଛି, ସେଥିରୁ ଖସି ଯିବାର ତାର ଶକ୍ତି କାହିଁ ? ସେ ଯେପରି ପରିସ୍ଥିତିକୁ ତିଆରି କରୁଛି, ସେହିପରି ପରିସ୍ଥିତି ଓ ଘଟଣା ତାକୁ ପଦେ ପଦେ କଶା-ଘାତରେ ଉତ୍ପୀଡ଼ିତ କରୁଛି ।

'କରି କରାଉ ଥାଏ ମୁହିଁ—
ମୋ ବିନୁ ଅନ୍ୟ ଗତି ନାହିଁ ।'

ଲଛମା ଐତିହାସିକ ଚରିତ୍ର ନୁହଁ । ଏହା ଫକୀରମୋହନଙ୍କର ମାନସୀ କନ୍ୟା—ଇତିହାସର ପୃଷ୍ଠପଟ ଉପରେ ତାହାର ଚରିତ୍ର ଦଣ୍ଡାୟମାନ । କିନ୍ତୁ ସେ କେବଳ ପତିବ୍ରତା ନୁହେଁ—ପୁରୁଷୋଚିତ ବୀର୍ଯ୍ୟଧାରିଣୀ-ବୀରାଙ୍ଗନା । ତା ଜୀବନରେ ଥିଲା ଦୁଇଟି କର୍ତ୍ତବ୍ୟ—ସ୍ୱାମୀଙ୍କ ଅନ୍ୱେଷଣ ଓ ପିତୃହନ୍ତା ମରହଟ୍ଟାର ବଧସାଧନ । ଏଥିପାଇଁ ତାକୁ ପୁରୁଷର ଛଦ୍ମବେଶ ଗ୍ରହଣ କରିବାକୁ ପଡ଼ିଛି—ହସ୍ତରେ ତୀକ୍ଷ୍ଣ ଛୁରିକା ଧରିବାକୁ ପଡ଼ିଛି । ଦେବକନ୍ୟାମାନେ ତାକୁ 'ସ-ଅ-ତୀ ସ-ଅତୀ' ବୋଲି କହୁଥିବାର ତାକୁ ନିଦ୍ରା-ଆଳସ୍ୟରେ ଶୁଣା ଯାଇଛି । ଦେବକନ୍ୟାମାନଙ୍କର ସେହି ବାଣୀ ଜୀବନରେ ପ୍ରମାଣିତ କରିବା ପାଇଁ ସେ ଅସାଧ୍ୟ ସାଧନ କରିଛି ।

କିନ୍ତୁ ନାଜର ନଟବର ଦାସଙ୍କ ସ୍ତ୍ରୀ ବିଶାଖା ଦେଈ ଅତିର ଗୋଟିଏ ବିଚିତ୍ର ରକମର ନାରୀ । ଚମ୍ପା ଓ ଚନ୍ଦ୍ରକଳା ପରି ତାଙ୍କର ବୁଦ୍ଧିଶୁଦ୍ଧି ନାହିଁ । କୂଟ-କାପଟ୍ୟ କଣ ସେ ଜାଣନ୍ତି ନାହିଁ । ସାଂସାରିକ ଜଞ୍ଜାଳରେ ସେ ନିଜକୁ ଲିପ୍ତ ରଖିବାକୁ ଚାହାନ୍ତି ନାହିଁ । ସେ କେବଳ ଚାହାନ୍ତି ଯେ କୌଣସି ଉପାୟରେ ରାଣୀ ହେବାକୁ—ରାଣୀ ବନିଗଲେ ତାଙ୍କ ଜୀବନର ସ୍ୱପ୍ନ ସଫଳ ହୋଇଗଲା । କିନ୍ତୁ ଫକୀର-ମୋହନଙ୍କ ଉପନ୍ୟାସଜଗତରେ ବିଶାଖାଦେଈଙ୍କ ଚରିତ୍ରର ଗୋଟିଏ ବିଶେଷତ୍ୱ ଅଛି, ଯାହା ପାଠକମାନେ ସହଜରେ ଧରି ପାରନ୍ତି ନାହିଁ । ବିଶାଖାଦେଈଙ୍କ ପରି ନିଜର ସୁଖଦୁଃଖ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧରେ କୌଣସି ଚରିତ୍ରକୁ ଏପରି ଚିନ୍ତାଶୀଳ କିମ୍ବା ସନ୍ଦିହାନ ହେବାର ଦେଖାଯାଏ ନାହିଁ । ଅବଶ୍ୟ ସେ ବୁଦ୍ଧିମତୀ ନାରୀ ହୋଇଥିଲେ ସ୍ୱାମୀ ଓ ଚନ୍ଦ୍ରକଳା ମଧ୍ୟରେ ଥିବା ସମ୍ପର୍କ ବିଷୟରେ ଏତେ ଚିନ୍ତା କରିନଥାନ୍ତେ । କିନ୍ତୁ ତାଙ୍କର ସନ୍ଦିଗ୍ଧଚିତ୍ତତା ହିଁ ଫକୀରମୋହନଙ୍କର ମନସ୍ତତ୍ତ୍ୱ ବିଶ୍ଳେଷଣରେ

ପାରଙ୍ଗମତା । ମଙ୍ଗରାଜ ଚମ୍ପା ସହିତ ଅଧରାତରେ କାହାର ଘର ପୋଡ଼ିବେ ସେ ବିଷୟ ପରାମର୍ଶ କରୁଅଛନ୍ତି, ନାଜର ନଟବର ଦାସ ଚନ୍ଦ୍ରକଳା ଓ ବିଶାଖାଦେଈଙ୍କ ସହିତ ପରାମର୍ଶ କରୁଛନ୍ତି କିପରି ଧନ ଉପାର୍ଜନ କରିବେ । କିନ୍ତୁ ଏପରି ଅମୂଲ୍ୟ ଚିନ୍ତା, ବିଶାଖାଙ୍କ ପରି ଆଉ କାହାର ଅଛି ? ଏ ଯେ ଫକୀରମୋହନଙ୍କ ସମୟର ନାଟକୀୟ ସ୍ୱଗତୋକ୍ତି । ଏହି ଚିନ୍ତା କିମ୍ବା ସ୍ୱଗତୋକ୍ତି ଦ୍ୱାରା ଫକୀରମୋହନ ପାଠକଙ୍କୁ ବିଶାଖାଦେଈଙ୍କ ପ୍ରାଣକନ୍ଦର ମଧ୍ୟରେ ପ୍ରବେଶ କରିବାର ସୁବିଧା ଦେଇଅଛନ୍ତି, ସତେ ଯେପରି ହାତରେ ପ୍ରଦୀପଟିଏ ଧରି ଆମକୁ କହୁଛନ୍ତି, "ଦେଖିବାକୁ ଇଚ୍ଛା, ଏ ପର୍ଯ୍ୟନ୍ତ ନାରୀର ବାହାରର କାର୍ଯ୍ୟକଳାପ ମୁଁ ତୁମକୁ ଦେଖାଇଛି, ଅନ୍ତରର କରୁଣ ରହସ୍ୟ ଦେଖାଇ ନାହିଁ । ଏଇ, ବିଶାଖାଦେଈଙ୍କର ଅନ୍ତର୍ଲୋକ ଉପରେ ମୁଁ ପ୍ରଦୀପ ଜାଳୁଛି, ତାଙ୍କ ହୃଦୟର ନିଭୃତ କନ୍ଦରର ନିଗୂଢ଼ ବେଦନା ଦେଖ—ମନରେ କିପରି ତାଙ୍କର ସନ୍ଦେହ ଘନେଇ ଆସୁଛି, ଏ ଚନ୍ଦ୍ରକଳା କଣ ମୋ ସ୍ୱାମୀଙ୍କର ପ୍ରଣୟିନୀ ? ଏ କଣ ମୋ ଜୀବନର ଗୋଟେ ଦୁଷ୍ଟ ଗ୍ରହ ଧୂମକେତୁ ?" ବିଶାଖା ଦେଈଙ୍କ ପ୍ରତି ଫକୀରମୋହନଙ୍କର ଘୃଣା ନାହିଁ—ଅଛି ଦରଦୀ ଚିତ୍ତର ଅନୁକମ୍ପା । ବିଶାଖାଦେଈଙ୍କର ତିନୋଟି ଚିନ୍ତା ମଧ୍ୟରେ ତାଙ୍କର ନାରୀତ୍ୱ ପ୍ରକଟିତ—ତାଙ୍କ ଜୀବନର ଆଶା ଭରସା ବିଧୃତ । ନାକଫୋଡ଼ିଆ ମା କହିଲା, ବାବୁଙ୍କ ସଙ୍ଗରେ ଚନ୍ଦାର ଭାବ ଅଛି । ସେ ପୀରିତି କଣ ? ଦ୍ୱିତୀୟତଃ ଚନ୍ଦାର ଏତେ ଯେ ଅଲଙ୍କାର ଅଛି, ସେ ସବୁ କଣ ବାବୁଙ୍କ ଟଙ୍କାରେ କିଣା ହୋଇଛି ? ତୃତୀୟ ପ୍ରଶ୍ନ ହେଉଛି, ଅଠବର୍ଷ ହେଲା ସେ ସ୍ୱାମୀଘରକୁ ଆସିଲେଣି ଯେ ପିଲାଟିଏର ମୁହଁ ଦେଖିଲେ ନାହିଁ । ଚନ୍ଦା କହୁଛି, କଟକରେ ତେର ବାଈଙ୍କର ସେ ପୁଞ୍ଜା ପୁଞ୍ଜା ପୁଅ କରି ଦେଲଣି । ଚନ୍ଦାକୁ ତଡ଼ି

ଦେଲେ କାକଟପୁର ମଙ୍ଗଳାଙ୍କ ପାଖକୁ କିଏ ଯିବ, କଳା କୁକୁଡ଼ା, କଳା ବଗଡ଼ କିଏ ବଳି ଦେବ ?

ଏହିପରି ଆଉ କୌଣସି ଚରିତ୍ର ନିକର ନିଭୃତ ଚିନ୍ତାରେ ଜୀବନର ଆଶା, ଆକାଂକ୍ଷା, ସନ୍ଦେହ, ଅସ୍ଥିରତା, ବୁଦ୍ଧିହୀନତା ଏବଂ ସାରଲ୍ୟର ପରିଚୟ ଦେଇ ନାହାନ୍ତି ବୋଲି ମନେ ହୁଏ ।

କିନ୍ତୁ ଫକୀରମୋହନଙ୍କ ଉପନ୍ୟାସରେ ଯେଉଁ ଦୁଇଜଣ ନାରୀ ସେମାନଙ୍କର ଘୋର ଦୁଷ୍କର୍ମ ଯୋଗୁ ଆମ ମନରେ ଅଳିଭା ରେଖା ଟାଣି ଦିଅନ୍ତି, ସେ ଦୁହେଁ ଚମ୍ପା ଓ ଶିବକଳା । ଏମାନେ ସଇତାନ୍ କିମ୍ବା ଦୁଷ୍ଟଚରିତା ହୋଇ ପାରନ୍ତି । ଫକୀରମୋହନ ସେମାନଙ୍କୁ ସେହିପରି ଭାବରେ ଚିତ୍ରଣ କରିଅଛନ୍ତି । କିନ୍ତୁ ନାରୀଜାତିର ପୁଣ୍ୟବୋଧ ଜାଗରିତ କରିବାରେ ଏବଂ ମନୁଷ୍ୟତାର ବିକାଶ ସାଧନ କରିବାରେ ଏହି ଦୁଇଟି ଚରିତ୍ର ଆଲୋକ-ବର୍ତ୍ତିକା ସ୍ୱରୂପ । ଏମାନଙ୍କର କୁତ୍ସିତ କାର୍ଯ୍ୟକଳାପ ଦେଖିଲେ ମନରେ ଯେତିକି ଘୃଣାର ଉଦ୍ରେକ ହୁଏ, ସେତିକି ଏମାନଙ୍କ ପ୍ରତି କରୁଣାର ସଞ୍ଚାର ହୁଏ—ଏମାନେ ମନୁଷ୍ୟ ହୋଇ ଜନ୍ମ ପରିଗ୍ରହ କରନ୍ତି କାହିଁକି ? କି କଳା ନେଇ ଏମାନେ ଆସିଥାନ୍ତି ଯେ ଏମାନଙ୍କର ପଦକ୍ଷେପରେ ସର୍ବନାଶ ଅଶାନ୍ତିର ନିଆଁ ଜଳିଉଠେ ? ଏଇ ତ ତାଙ୍କ ଭିତରୁ ଜଣେ ବିଧବା ସ୍ତ୍ରୀ ସରସ୍ୱତୀ ଦେଈ ତାଙ୍କର ଯାହା କିଛି ସମ୍ପତ୍ତି ଥିଲା ସବୁ ଗୃହଦମଣି ପାଇଁ ଖର୍ଚ୍ଚ କରିଦେଲେ । ବିଧବା ଗେହ୍ଲେଇର ବୟସ ତ କୋଡ଼ିକରୁ ଊଣା । ଗେରସ୍ତ, ଶାଶୁ ଓ ଦେଢ଼ବର୍ଷର ଗୋଟିଏ ପୁଅ ହଇଜାରେ ଲଗ ଲଗ ତିନିଦିନ ମଧ୍ୟରେ ଗୁଳିଗଲେ । ସାହା ଭରସା ତାର ଏ ଜଗତରେ କେହି ନାହାନ୍ତି । କିନ୍ତୁ ସେ ତ ପୁଣି ତା ମର୍ଯ୍ୟାଦା ଜଗି ଚଳୁଛି । ତା କଟମଟିଆ ଗୃହାଣିରେ ଦୁଷ୍ଟ

ଭେଣ୍ଡିଆମାନେ ତାକୁ ପାଟି ଫିଟାଇ ପାରନ୍ତି ନାହିଁ । ସେଥିରେ ପୁଣି ତାକୁ ଧାଇପଣିଆ ଜଣା । ଫକୀରମୋହନଙ୍କ ଭାଷାରେ "କେହି ଡାକିଲା ଭଲ—ନ ଡାକିଲା ଚିନ୍ତା ନାହିଁ । ଗ୍ରାମରେ କାହାର ଘର କଥା କାନରେ ପଡ଼ିଲା ତ ହାଜର—ପଇସା କଉଡ଼ିକ ଲୋଭ ନାହିଁ ।" ସତେ ଯେପରି ଆମର ବର୍ତ୍ତମାନ ଗ୍ରାମଗୋଷ୍ଠୀ ଯୋଜନାର ଗେହେଲ୍ଲୀ ଏକ ଆଦର୍ଶ ଗ୍ରାମସେବିକା !

କିନ୍ତୁ ଚମ୍ପା ଓ ଚନ୍ଦ୍ରକଳା ଏପରି ହେଲେ କାହିଁକି ? ତାଙ୍କର କିଛି କୁଳଶୀଳ ନଥିଲା ବୋଲି ସେ ଏପରି ହେଲେ ? କୁଳଶୀଳ ନଥିବା ଲୋକଙ୍କ ପ୍ରତି ଫକୀରମୋହନଙ୍କର ଅବଶ୍ୟ ବଡ଼ ବିତୃଷ୍ଣା । ତଣ୍ଟିକଟା ପୁଅ କଦାପି ସାଧୁ ହୋଇ ପାରିବ ନାହିଁ—ଏହା ଫକୀରମୋହନଙ୍କର ବିଶ୍ୱାସ ଥିଲା । ଏମାନେ କଣ ଅଜ୍ଞାତ କୁଳଶୀଳା ବୋଲି ଜୀବନରେ ଏପରି କୁକର୍ମ କଲେ ? ନା ଅବସ୍ଥା ଏମାନଙ୍କୁ ଏପରି କଦର୍ଯ୍ୟଚରିତ୍ରା କଲା ? ବଂଶଗୌରବ କିମ୍ବା ପରମ୍ପରା ନଥିଲେ ମନୁଷ୍ୟ ହୋଇପଡ଼େ ଛିନ୍ନମୂଳ ବୃକ୍ଷପରି । କାହାକୁ ସମ୍ବଳ କରି ସେ ଉଠିବ ? କିନ୍ତୁ ସେପରି ଅବସ୍ଥାରେ ଯଦି ଶିକ୍ଷାଦୀକ୍ଷା କିମ୍ବା ସୁସ୍ଥ ପାରିବାରିକ ଓ ସାମାଜିକ ବେଷ୍ଟନୀର ପ୍ରଭାବ ପଡ଼େ, ତେବେ ବଂଶଗୌରବ ଓ କୁଳମର୍ଯ୍ୟାଦା ନଥିଲେ ମଧ୍ୟ ମନୁଷ୍ୟ ସେତେ ଉଚ୍ଚାସନକୁ ଉଠିନପାରେ, କିନ୍ତୁ ଏପରି ଅମନୁଷ୍ୟ କିମ୍ବା ପିଶାଚ ହେବ ନାହିଁ । ହୋଇପାରେ, ଏମାନଙ୍କର ପିତା-ମାତାମାନେ ଅତି କଦର୍ଯ୍ୟ ଲୋକ ଥିଲେ । ପରର ରକ୍ତ ଶୋଷି ବଞ୍ଚିବା ସେମାନଙ୍କର ପ୍ରବୃତ୍ତି ଥିଲା । ନାନା ପ୍ରଲୋଭନ ଓ କପଟର ମାୟାଜାଲ ବିସ୍ତାର କରି ଧନ ସଞ୍ଚୟ କରିବା ଥିଲା ସେମାନଙ୍କର କାର୍ଯ୍ୟ । ସେମାନେ ଲିପ୍ତ ଥିଲେ ନିତାନ୍ତ ଅସାମାଜିକ ଓ କୁତ୍ସିତ

କର୍ମରେ । ରକ୍ତ-ପ୍ରବାହରେ ଉତ୍ତରାଧିକାରୀ ରୂପେ ତାଙ୍କ ସନ୍ତାନ-ସନ୍ତତିମାନେ ସେହି କୁତ୍ସିତ ପ୍ରବୃତ୍ତି ଧାରଣ କରି ଜନ୍ମ ହୋଇଥାନ୍ତି । କୁସଂସର୍ଗର ପ୍ରଭାବରୁ ସେ ପ୍ରବୃତ୍ତିସବୁ ଉତ୍ତେଜିତ ହୋଇଉଠେ । ଉତ୍ତେଜିତ ହୋଇ ଉଠିଲେ ତାକୁ ସଂଯତ କରିବାକୁ କେହି ନଥିଲେ, ତାହା ଅତି ଉଗ୍ର, ଅତି ଉଚ୍ଛୃଙ୍ଖଳ ଏବଂ ଦୁର୍ଦ୍ଦମନୀୟ ହୋଇଉଠେ । ଫକୀରମୋହନଙ୍କ ଭାଷାରେ, "ସାଧାରଣ ରୂପେ ବୋଲିବାକୁ ଗଲେ ପୈତ୍ରିକ ବା ବଂଶଗତ ଅଥବା ସାମାଜିକ ଦୋଷ ଗୁଣ ମାନବ ଜୀବନରେ ଅଧିକାର ସ୍ଥାପନ କରିଥାଏ ।" କିନ୍ତୁ ଚମ୍ପା ଓ ଚନ୍ଦ୍ରକଳାଙ୍କର ଏହି ପୈତ୍ରିକ କିମ୍ବା ବଂଶଗତ ଗୁଣ ବୋଲି କିଛି ନଥିଲା, ଥିଲା ଅନେକ ଦୋଷ । ସେଥିରେ ସେମାନେ ଯେଉଁ ପରିସ୍ଥିତିରେ ଆସି ପଡ଼ିଲେ, ସେଥିରେ ସେମାନେ ପିଶାଚୀ ନହୋଇ ଆଉ ହୁଅନ୍ତେ ବା କଣ ?

ସେତେବେଳେ ଜମିଦାରମାନଙ୍କ ଉଆସରେ ବହୁତ ପୋଇଲି ପରିବାରୀ ରହୁଥିଲେ । ଏମାନଙ୍କ ମଧ୍ୟରୁ ଜଣେ ଜଣେ ନିଜ ବୁଦ୍ଧି ଓ ଚତୁରତାରେ ଉଆସରେ ନିଜେ ଜମିଦାର ଓ ଜମିଦାରଙ୍କ ସ୍ତ୍ରୀ ଏବଂ ଅନ୍ୟାନ୍ୟ ପୋଇଲି-ପରିଜନଙ୍କ ଉପରେ ଏପରି ପ୍ରଭାବ ବିସ୍ତାର କରୁଥିଲେ ଯେ, ସାଆନ୍ତାଣୀ ଓ ଏହି ବୁଦ୍ଧିମତୀ ଦାସୀ ଏମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖା ଯାଉନଥିଲା । ଏମାନଙ୍କର ଛଳନା ଓ ଗୁପ୍ତଚରୀ ଏତେ ଚମତ୍କାର ଯେ, ନିଜେ ଜମିଦାର ଏମାନଙ୍କର କିଙ୍କର ହୋଇ ପଡ଼ୁଥିଲେ । ଆଉ ସେତେବେଳେ ରମଣୀ-ବିଳାସ ଓ ଅର୍ଥୋପାର୍ଜନ ଥିଲା ଜମିଦାରମାନଙ୍କ ଜୀବନର ଧ୍ରୁବତାରା । ଯେ ଏଥିରେ ସାହାଯ୍ୟ କଲା, ସେ ହେଲା ଜମିଦାରଙ୍କର ଆଦରଣୀ । ତେଣୁ ମଙ୍ଗରାଜଙ୍କ ଉଆସରେ ଚମ୍ପା, ଦାସୀ କି ସାଆନ୍ତାଣୀ ଜଣାପଡ଼େ ନାହିଁ ।

ନାଜର ନଟବର ଦାସ ତ ଜମିଦାର ନୁହନ୍ତି । ତାଙ୍କର ତ ଉଆସ ନଥିଲା । ସେ ଥିଲେ ଜଣେ ନାଜର—ସରକାରୀ କର୍ମଚାରୀ । କିନ୍ତୁ ଚନ୍ଦ୍ରକଳାର ମଧ୍ୟ ଚମ୍ପା ପରି ନାଜରଙ୍କ ପରିବାରରେ ଅଖଣ୍ଡ ପ୍ରଭୁତ୍ୱ । "ଜାଣିଲା ଶୁଣିଲା ଲୋକେ ତାକୁ ଚାକରାଣୀ ବୋଲି ଜାଣନ୍ତି, ହେଲେ ନୂଆଁଲୋକ କେହି ଆସିଲେ ସାଆନ୍ତାଣୀ ବୋଲି ଡାକି ପକାଏ ।" ତାର କାରଣ ଫକୀରମୋହନ ନିଜେ ଏହିପରି ଦେଇଅଛନ୍ତି, "ଯେପରି ରୂପ, ଲୁଗାପଟା, ଗହଣାଗଣ୍ଠିର ଢଙ୍ଗଢାଙ୍ଗ, ଚାଲିଚଳନର ଛଟକ, କଥାଭାଷାର ଧମକ—କିଏ କହିବ ଚାକରାଣୀ ?" ଏହି 'କଥାଭାଷାର ଚମକ' ଓ 'ଚାଲିଚଳନର ଛଟକ' ମଙ୍ଗରାଜଙ୍କୁ ଯେପରି ବଶୀଭୂତ କରିଥିଲା, ଏଣ୍ଟ୍ରାନ୍ସ ପାସ ନାଜର ନଟବରଙ୍କୁ ସେହିପରି ସମ୍ମୋହିତ କରି ରଖିଥିଲା । ଯେ ଧନ ଆଣିବାର ଉପାୟ ବତାଇଦେଲା, ତା'ଠାରୁ ଆଉ ବଡ଼ ପୃଥିବୀରେ କିଏ ଅଛି ? ତେଣୁ ରାମଚନ୍ଦ୍ର ମଙ୍ଗରାଜ ଯେପରି ଭାବୁଥିଲେ ଚମ୍ପା ମୋର ଭାରି ବୁଦ୍ଧିଆ, ତା'ପରି ଏ ଜଗତରେ କେହି ନାହାନ୍ତି, ନାଜର ନଟବର ଦାସେ ସେହିପରି ଭାବୁଥିଲେ, "ମୋର ଗୋଟିଏ ଲକ୍ଷ୍ମୀ (ବଣାଖା), ଆଉ ଗୋଟିଏ ସରସ୍ୱତୀ (ଚନ୍ଦ୍ରକଳା)" । ଚମ୍ପା ତ ସାକ୍ଷାତ୍ ସରସ୍ୱତୀ ମଙ୍ଗରାଜଙ୍କ ପ୍ରତି । ସେଥିପାଇଁ ନିଜ ଧର୍ମପତ୍ନୀ ସାଆନ୍ତାଣୀଙ୍କ ପ୍ରତି ଏତେ ନିର୍ମମ ବ୍ୟବହାର । ଚମ୍ପା ବାଟ ବତାଇ ଦେଉଛି କିପରି ଅର୍ଥ ଉପାର୍ଜନ କରି ହେବ ଏବଂ କିପରି ପ୍ରାଧାନ୍ୟ ପ୍ରତିପତ୍ତି ବିସ୍ତାର କରିବାକୁ ହେବ । ସ୍ତ୍ରୀଟା କଣ ନା ଖାଲି ତୁଳସୀ ଚଉଁରା ମୂଳେ ବସିଥିବ, ଦାନଧର୍ମ କରି ଧନ କାଟୁଥିବ, କାହାକୁ ଖାଲି ହାତରେ ଦୁଆରରୁ ଫେରାଇ ଦେବ ନାହିଁ । ସାରିଆ ସେ ଦିନ ଆସିଥିଲା ତାର ଜମି ତାକୁ ଫେରାଇ ଦେବାକୁ ମଙ୍ଗରାଜଙ୍କ ଠାରେ ଆପତ୍ତି କରିବାକୁ । ସ୍ତ୍ରୀଟା ତା ଦୁଃଖ ଦେଖି କାନ୍ଦି ପକାଇଲା,

କିନ୍ତୁ ଏଇ ବୁଦ୍ଧିମତୀ ଚମ୍ପା ତାକୁ ଘୂର୍ଣ୍ଣୀରେ ମାରି ଘଉଡ଼ି ଦେଲା । ଘର କରିବା ଲୋକ ଚମ୍ପା । ତେଣୁ ଅର୍ଥ-ପିଶାଚ ମଙ୍ଗରାଜଙ୍କର ଚମ୍ପା ଉପରେ ପ୍ରଗାଢ଼ ବିଶ୍ୱାସ ।

ନାଜର ନଟବର ଅବଶ୍ୟ ସ୍ତ୍ରୀ ବିଶାଖାଦେଈଙ୍କ ଉପରେ ସେତେ ଦୁର୍ବ୍ୟବହାର କରି ନାହାନ୍ତି । କିନ୍ତୁ ଚନ୍ଦକଳା ଉପରେ ତାଙ୍କର ଭାରି ବିଶ୍ୱାସ—ଗୋପନରେ ସେ ତାହାର ସହିତ ସବୁ ପରାମର୍ଶ କରନ୍ତି । ରାତି ଅଠଟା ପରେ ରୋଜ ଚନ୍ଦକଳା ବସାକୁ ଯାନ୍ତି । ତା ଟଙ୍କା ସୁନା ଉପରେ ନଟବରଙ୍କର ଭାରି ଲୋଭ । ଚନ୍ଦା ତାଙ୍କୁ ବୁଝେଇ ଦେଇଛି, ତାରି ଯୋଗୁଁ ତାଙ୍କ ବସାକାମ ସୁରୁଖୁରୁରେ ଚାଲୁଛି । ସେ ଏ ବସାକୁ ମୁହୂର୍ତ୍ତେ ନ ଆସିଲେ ସବୁ କାମ ଅଟକିଯିବ । ତେଣୁ ନାକଫୋଡ଼ିଆ ସାଙ୍ଗେ କଳି ଓ ମାଡ଼ଗୋଳ । ଏପରି ଛଳନାରି ବହୁ ଅଭିନୟ କରି ସେ ନାଜରଙ୍କୁ ନିଜର କରି ରଖିଛି । ଅଳଙ୍କାର ପୁଟୁଳା ନାଜର ନରପୁର ଉଆସରୁ ଚୋରି କରି ଆଣିଲେ 'ଲଳିତା' ନାମଧାରିଣୀ ଏହି ଚନ୍ଦକଳାର ବୁଦ୍ଧିରେ ।

ମଙ୍ଗରାଜ ଓ ନାଜର ନଟବରଙ୍କୁ ପାପର ପଙ୍କିଳ ପଥକୁ ଧୀରେ ଧୀରେ ଅତି ସାବଧାନତାର ସହିତ ଟାଣି ନେଇଛନ୍ତି ଚମ୍ପା ଓ ଚନ୍ଦକଳା । ଏଇ ଦୁଇଜଣ ନାରୀ ଏପରି ଛଳନାମୟୀ ଯେ ଏମାନଙ୍କର ସ୍ୱରୂପ ଚିହ୍ନିବା ବଡ଼ କଷ୍ଟ । ଫକୀରମୋହନଙ୍କର ସୃଜନୀ-ଶକ୍ତିର ବିସ୍ମୟକର ମହତ୍ତ୍ୱ ଏହିଠାରେ । କେବଳ ଅର୍ଥଲୋଭୀ ମଙ୍ଗରାଜ କିମ୍ବା ନାଜର କାହିଁକି, ବର୍ତ୍ତମାନ ସମୟର ଯେ କୌଣସି ଚତୁର ଓ ସୁଶିକ୍ଷିତ ଲୋକ ଏପରି ନାରୀମାନଙ୍କୁ ଚିହ୍ନିନପାରି ସେମାନଙ୍କ କବଳରେ ପଡ଼ିଯିବା କିଛି ବିଚିତ୍ର ନୁହେଁ ।

ଏ ଛଳନା ଓ ଗୃହଭୂମି ଶଶିକଳାଠାରୁ ଚମ୍ପାଠାରେ ଅଧିକ । ସେ ଝାଙ୍ଗା ମାଜିସୀ ସାଜ ବାଘସିଂହ ପରିବାରର ସ୍ତ୍ରୀଲୋକମାନଙ୍କୁ ଯେପରି ଭାବରେ ଭୁଲାଇ ଦେଲା, ସେ ବୁଦ୍ଧି ସମସ୍ତଙ୍କୁ ଦେଖାଯିବ ନାହିଁ । ଦେଖାଦେଲେ ମଧ୍ୟ ସେ କୂଟବୁଦ୍ଧି ପ୍ରୟୋଗ କରି ଗୋଟେ ବଂଶର ସର୍ବନାଶ କରିବାକୁ କିଏ ଅଗେଇବ ନାହିଁ । ଚମ୍ପା ପରି ନାରୀ ଆମ ସମାଜରେ ବିରଳ । ଚମ୍ପାର ଏ 'ବ୍ୟକ୍ତିସ୍ୱାତନ୍ତ୍ର୍ୟ' ଯୋଗୁଁ ସେ ସରଳଚରିତ୍ର ନୁହେଁ, ଜଟିଳଚରିତ୍ର । ସାରିଆକୁ ଭୁଲାଇ ତା' ଛ ମାଣ ଅଠ ଗୁଣ୍ଠ ଜମି ଯେପରି ମଙ୍ଗରାଜଙ୍କ ପାଇଁ ସେ କରାଇ ଦେଲା, ଏ କଣ ସାମାନ୍ୟ ଗୃହଭୂମିର ପରିଚୟ ? ସମସ୍ତଙ୍କ ହାତରେ ଏହା ହେବ ନାହିଁ । ସମାଜରେ କ୍ୱୋଟିକେ ଗୋଟିଏ ଏପରି ପିଶାଚୀ ଦେଖାଯାନ୍ତି ।

କିନ୍ତୁ ଶଶିକଳାର ଗୃହଭୂମି ସେତେ ପ୍ରଳୟଙ୍କରୀ ନୁହଁ । ଶଶି ଚରିତ୍ରରେ ଅବଶ୍ୟ ଦୋଷ ଦୁର୍ବଳତା ପୂରି ରହିଛି । ନଟବର ଦାସଙ୍କୁ ଛଳନା ଓ କୂଟ କପଟତାରେ ଭୁଲାଇ, ବଣାଖାଦେଇଙ୍କର ଅତି ଆପଣାର ହୋଇ ସେ ତାଙ୍କ ଘରୁ ସରକାରୀ ଟଙ୍କା ରାଘବ ମହାନ୍ତି ସାହାଯ୍ୟରେ ଚୋରାଇ ନେଇଛି । ଏ ଚୋରିର ମୂଳରେ ଶଶି । ସେସନ୍‌ସ ଜଜ୍ ସାହେବଙ୍କ ରାୟ ଶଶିକଳାର ଉପଯୁକ୍ତ 'ପ୍ରଶଂସାପତ୍ର' । ଏହି ରାୟରେ ହିଁ ତାର ଚରିତ୍ର ପରିସ୍ଫୁଟ । ଶଶିକଳା ବିରୁଦ୍ଧରେ ସାକ୍ଷୀମାନେ ହୁଏତ ବଢ଼ାଇ କହି କହି କହିପାରିଥାନ୍ତି । ଏପରି ଲୋକଙ୍କୁ ଭଲ ପାଇବ ବା କିଏ ? ସେ ସବୁ ସାକ୍ଷ୍ୟ ଯଦି ଥାଏ, ତାକୁ ବାଦ୍ ଦେଲେ ଜଜ୍ ସାହେବ ଯେଉଁ ରାୟ ଦେଇ-ଅଛନ୍ତି, ତାହା ମଧ୍ୟ ପାଠକସାଧାରଣଙ୍କର ରାୟ ।

"ଏହି ଅସାମୀ ଗୋଟାଏ ଭୟଙ୍କର ବୁଦ୍ଧିମତୀ, ଭୟଙ୍କର ଦୁଷ୍ଟଚରିତ୍ରା ବଜାରୀ ସ୍ତ୍ରୀ ଅଟେ । ଚତୁରତାରେ ନାଜର ନଟବର

ଦାସଙ୍କୁ ଭୁଲାଇ ରଖିଥିଲା । ଏହି ଦୁଷ୍ଟା ସ୍ତ୍ରୀର ପରାମର୍ଶ, କୌଶଳ, ସହାୟତା, ସନ୍ଧାନରେ ଅନ୍ୟାନ୍ୟ ଆସାମୀମାନେ ଚୋରି କରିବାକୁ କ୍ଷମ ହୋଇଛନ୍ତି । ଅତି କୌଶଳ ଓ ବିଶ୍ୱାସଘାତକତା ପୂର୍ବକ ନାଜର ବିସାର ଅଳଙ୍କାର ଚୋରାଇ ଅଣିଛି । ପୁଣି ଚୋରି ଅପରାଧରୁ ମୁକ୍ତି ପାଇବା ନିମନ୍ତେ ନାନା ପ୍ରକାର କୌଶଳ ଅବଲମ୍ବନ କରିବାକୁ ତ୍ରୁଟି କରି ନାହିଁ । ଅତଏବ ହୁକୁମ କରୁଅଛୁ କି, ଦଣ୍ଡବିଧି ଆଇନର ୩୭୯ ଓ ୧୦୯ ଦଫା ଅନୁସାରେ ପରିଶ୍ରମ ସହିତ ପାଞ୍ଚବର୍ଷ ମିଆଦ ଏବଂ ଦୁଇଶତ ଟଙ୍କା ଜରିମାନା କରାଯାଉ । ଜରିମାନା ଅସୁଲ ନହେଲେ ଅତିରିକ୍ତ ଏକବର୍ଷ ଜେଲରେ ଅବଦ୍ଧ ରଖାଯାଉ ।”

ଚମ୍ପକଳା ତା ପାପ ସକାଶେ ଏ ଦଣ୍ଡ ପାଇଲା । ଫକୀରମୋହନଙ୍କର ଚମ୍ପକଳା ଗୋଟିଏ ସଇତାନ ଚରିତ୍ର—କିନ୍ତୁ ତାର ଶେଷ ଶୋଚନୀୟ ପରିଣତିରୁ ଯେଉଁ ଶିକ୍ଷା କିମ୍ବା ଉପଦେଶ ମିଳେ, ତାହା ଫକୀରମୋହନଙ୍କ ଘଟନା-ଉପସ୍ଥାପନ ଓ ପରିସ୍ଥିତିର ବିଶ୍ଳେଷଣ ଶୃଙ୍ଖଳାରେ କି ଜୀବନ୍ତ ! ପଢ଼ିଲେ ଚମ୍ପକଳା ପ୍ରତି ଘୃଣା ଆସେ ସତ, କିନ୍ତୁ କମନୀୟ ଓ କୋମଳ ଉପାଦାନରେ ଗଠିତ ନାରୀହୃଦୟରେ ଏ ଜୀବନଘାତୀ ବିଷ କିପରି ସଞ୍ଚାରିତ ହେଲା, ଏହା ଭାବି କରୁଣାରେ ଚିତ୍ତ ଦ୍ରବୀଭୂତ ହୁଏ । ଯେଉଁ କ୍ଷତର ରେଖା ପାଠକ ଚିତ୍ତରେ ଚମ୍ପକଳା ଅଙ୍କନ କରିଦିଏ, ସେହି ରେଖା ଫକୀରମୋହନଙ୍କ ପ୍ରାଣର ସଂବେଦନାର ପ୍ରତିଫଳନ ମାତ୍ର । ଫକୀରମୋହନଙ୍କ ସମାଜ-କଲ୍ୟାଣ ଚିନ୍ତା କିମ୍ବା ଶ୍ରେୟବୋଧ ତାହାର ଚରିତ୍ରଚିତ୍ରଣରେ ଅଭିବ୍ୟକ୍ତ । ସେ ଅଭିବ୍ୟକ୍ତି ଶୂନ୍ୟ ବ୍ୟର୍ଥତାରେ ପର୍ଯ୍ୟବସିତ ହେବାର ନୁହେଁ । ତାହା ଯୁଗ ଯୁଗ ଧରି ନର ଓ ନାରୀ ଉଭୟଙ୍କ ଚିତ୍ତକୁ ସ୍ପନ୍ଦିତ କରୁଥିବ, ଏବଂ

ମନୁଷ୍ୟତାର ବିକାଶ-ପଥରେ ସହାୟକ ହେଉଥିବ । ଚମ୍ପା ବିସ୍ମୃତି ଗର୍ଭରେ ଲୀନ ହୋଇପାରେ, କିନ୍ତୁ ଚମ୍ପାର ପାପ ସହଜରେ ବିସ୍ମୃତ ହେବାର ନୁହେଁ । ଏହି ଭୟଙ୍କର ପାପ-ଚିତ୍ରାରେ ମନୁଷ୍ୟର ପ୍ରାଣ କାଳକାଳକୁ ଆତଙ୍କିତ ହୋଇ ଉଠୁଥିବ ।

ଚମ୍ପାର ପରିଣାମ ଚମ୍ପାଠାରୁ ଅଧିକ ଭୟଙ୍କର । ପାପକୁ ନୁହେଁ ତ ଦଣ୍ଡ । ଚମ୍ପା ଯାହା କରିଛି—ଯେତେ ଲୋକଙ୍କର ସର୍ବନାଶ କରିଛି ଏବଂ ଯେଉଁ ମଙ୍ଗରାଜ ତାର କଥାରେ ପଡ଼ି ତାର ସକଳ ଦୁଷ୍କର୍ମକୁ ପ୍ରଶ୍ରୟ ଦେଇଥିଲେ, ଶେଷରେ ସେ ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ ହୋଇ ଗୃହୀନ ହେଲବେଳେ, କପଟାଶ୍ରୁ ବିର୍ଜନ କରି ତାଙ୍କଠାରୁ ଯେପରି ଗନ୍ତାଘରର କଞ୍ଚି ହାସଲ କରିଛି ଏବଂ ଗନ୍ତାଘର ଖୋଲି ଟଙ୍କା ପଇସା ନେଇ ଗୋବିନ୍ଦ ଭଣ୍ଡାରି ସହିତ ଯେପରି ପଳାଇ ଯାଇଛି, ଅଗରୁ ସାରିଆ ଓ ବାଘସିଂହ ବଂଶର ଯେଉଁ ସର୍ବନାଶ କରିଛି ଏବଂ ଦେବୀପ୍ରତିମା ସାଆନ୍ତାଣୀଙ୍କୁ ଯେପରି କନ୍ଦାଇ କନ୍ଦାଇ ମାରିଛି, ସେ ଉତ୍କଟ ପାପରାଶିର ବିଗ୍ରହ ବିଗ୍ରହାଳୟରେ ନାହିଁ । ଅଛି କୌଣସି ଅଦୃଶ୍ୟ ଶକ୍ତିର ଗୀର ସଞ୍ଚାଳନରେ—କୌଣସି ଦୁର୍ଜ୍ଞେୟ ନିୟତିର ଇଙ୍ଗିତରେ । ତେଣୁ ଯେଉଁ ଟଙ୍କା ପାଇଁ ଚମ୍ପା ଜୀବନଯାକ ବ୍ୟାକୁଳ ହେଉଥିଲା, ଯେଉଁ-ମାନଙ୍କର ସର୍ବନାଶ ସାଧନ କରିଥିଲା, ସେମାନଙ୍କର ଉତ୍ତପ୍ତ ଦୀର୍ଘ-ନିଃଶ୍ୱାସ ତା ଚତୁର୍ଦ୍ଦିଗରେ ଘୂରି ବୁଲୁଛି, ସେଥିରୁ ତାର ନିସ୍ତାର ନାହିଁ । ଯେଉଁ ଟଙ୍କା ଗଣ୍ଠିରିଟି ସେ ମଙ୍ଗରାଜଙ୍କ ଗନ୍ତାଘର ଖୋଲି ଆଣିଥିଲା, ସେଇ ଗଣ୍ଠିରି ହେଲା ତାର ମୃତ୍ୟୁର କାରଣ—ଗୋବିନ୍ଦା ଭଣ୍ଡାରିକି ସେଥିରୁ ଅଧେ ଦେଇଦେଲେ ଜୀବନଟା ଚମ୍ପାର ରହିଯାଇ ଥାନ୍ତା । ସେ ବୁଦ୍ଧି ଚମ୍ପା ମନକୁ ଆସିବ କିପରି ? ସେ ତ ଜୀବନଯାକ ସମସ୍ତଙ୍କୁ ଅଘାତ କରିଆସିଛି, ଦିନେ ତ ହେଲେ

କାହାଠାରୁ ପ୍ରତିଘାତ ପାଉନାହିଁ,—ତେଣୁ ସିଧାସଳଖ ଅମୁହାଁ ସେ ଚାଲିଛି ପାପର କର୍ଦ୍ଦମାକ୍ତ ପଥରେ । ପାଦରେ କାଦୁଅ ଲାଗିଛି । କିନ୍ତୁ ସେ କେଉଁଠାରେ ଗୋଡ଼ ଖସି ଭୂଇଁରେ ପଡ଼ୁନାହିଁ । ପଡ଼ିଲେ ଶିଖିଥାନ୍ତା । ତେଣୁ ଶେଷକୁ ସେହି ଟଙ୍କା ପାଇଁ ମଲା ଗୋବିନ୍ଦା ଭଣ୍ଡାରି ହାତରେ । ଫକୀରମୋହନ ଏପରି ଗୋଟିଏ ପିଶାଚୀ ନାରୀକୁ ବଞ୍ଚାଇ ରଖିବାର କୌଣସି ସମ୍ଭାବନା ଆଉ ଦେଖି ପାରିଲେ ନାହିଁ । ଏପରି ରାକ୍ଷସୀର ଏ ପୃଥିବୀରେ ଆଉ ସ୍ଥାନ ନାହିଁ । ମୃତ୍ୟୁକୁ ମଧ୍ୟ ସେ ଅପେ ଅପେ ବରଣ କରି ଆଣିଛି—ନିଜର କବର ନିଜେ ଖୋଳିଛି । ହତ୍ୟା ହିଁ ତା ଜୀବନର ଅନିବାର୍ଯ୍ୟ ପରିଣତି । ସେଥିପାଇଁ ଫକୀରମୋହନ ଚମ୍ପା ପ୍ରାଣରେ ବିନ୍ଦୁଏ କରୁଣା କାହାପାଇଁ କେଉଁଠାରେ ସୃଷ୍ଟି କରି ନାହାନ୍ତି । ସାଆନ୍ତାଣୀଙ୍କ ମୃତ୍ୟୁଶଯ୍ୟା ପାଖରେ ସମସ୍ତେ ଏକଜ ହୋଇ କିଏ ଶୋକରେ ନିର୍ବାକ୍ ହୋଇ ବସିଥିଲା, କିଏ ଅଶ୍ରୁମୋଚନ କଲା, କିନ୍ତୁ ଚମ୍ପା କାହିଁ ? ଚମ୍ପା ଆଖିରେ ଟୋପେ ସୁଦ୍ଧା ଲୁହ ଫକୀରମୋହନ ସାଇତି ରଖିନଥିଲେ—ସେ ପାପର ଜୀବନ୍ତ ପ୍ରତୀକ । ପ୍ରଶ୍ନ ହୁଏ, ଏ ଚରିତ୍ରଚିତ୍ରଣରେ ଅଛି ଫକୀରମୋହନଙ୍କର ତ୍ରୁଟି-ବିଚ୍ୟୁତି । କୌଣସି ନାରୀ ଏପରି ପାଷାଣୀ କିମ୍ବା ପିଶାଚୀ ହୋଇ ନପାରେ । ହୋଇପାରେ କି ହୋଇ ନପାରେ ସେ ଭିନ୍ନ କଥା । କିନ୍ତୁ ପାଠକର କେଉଁଠାରେ କି ଅବିଶ୍ୱାସ କିମ୍ବା ସନ୍ଦେହ ହୁଏ—ଚମ୍ପାର ଏପରି କାର୍ଯ୍ୟ ତା ପକ୍ଷରେ ସମ୍ଭବ ନୁହେଁ ? ଯାହା ଅସମ୍ଭବ ବୋଧହୁଏ, ତାକୁ ଫକୀରମୋହନ ଘଟନାର ବିଶ୍ଳେଷଣ ଓ ବାସ୍ତବବୋଧ ଦ୍ୱାରା ଏପରି ଶିଳ୍ପାୟିତ କରିଛନ୍ତି ଯେ, ସବୁ ଅତିନାଟକୀୟ ଛଟା ବାସ୍ତବତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇପାରିଛି । ଚମ୍ପାର ଅଛପା ରହିଛି କେଉଁ

କୁକାର୍ଯ୍ୟଟା ? କେଉଁ କୁକାର୍ଯ୍ୟର କାରଣ ସ୍ରଷ୍ଟା ନିର୍ଦ୍ଦେଶ କରି ନାହାନ୍ତି ? ମଙ୍ଗଳପରେ ବି ଫକୀରମୋହନଙ୍କ ହାତରୁ ଚମ୍ପାର ମୁକ୍ତି ନାହିଁ । ଚମ୍ପାର ମୃତଦେହର ବର୍ଣ୍ଣନା କି ବୀଭତ୍ସ ! "ଲସଟା ଫୁଲି ଗୁରୁଗୁଣ ମୋଟ ହୋଇଗଲାଣି, କଳଭଟା ଗୋଟିଏ ସାନ କଦଳୀକଣ୍ଡା ପରି ଦିଶୁଛି । ଦୁର୍ଗନ୍ଧ କଥା ଛାଡ଼ । ଉଲଙ୍ଗ ସ୍ତ୍ରୀମୂର୍ତ୍ତି ସତ, ଏହାର ଗୋଡ଼ ପାପୁଲି ନାହିଁ, ଗୁଳିଥିଲା କିପରି ? ଏଟା କି ରାକ୍ଷସୀ ?" କିନ୍ତୁ ଇନ୍ଦୁମତୀର ମୃତଦେହର ବର୍ଣ୍ଣନା ଦେବାକୁ ଯାଇ ଫକୀରମୋହନ ଲେଖିଛନ୍ତି, "ଦେବୀମୂର୍ତ୍ତି ନଦୀରେ ଭାସି ଭାସି ଆସିଛନ୍ତି । ନିଶ୍ଚୟ କଟକର ସବୁଠାରୁ ବଡ଼ କାଉଗର ହାତ ତିଆରି ।" ଏ ଦେଖଣାହାରୀ ଲୋକଙ୍କର କଳ୍ପନା ଜଳ୍ପନା ନୁହେଁ, ଫକୀରମୋହନଙ୍କ ଅନ୍ତରର କଥା । ଜଣେ ରାକ୍ଷସୀ, ଆଉ ଜଣେ ଜୀବନରେ ଥିଲେ ଦେବୀ । ନାରୀ-ଚରିତ୍ରର ଏ ବୈଚିତ୍ର୍ୟ ଫକୀରମୋହନଙ୍କ ପରି ଆଉ ବର୍ଣ୍ଣନା କରିବ କିଏ ? ଏବର ଔପନ୍ୟାସିକମାନେ ଚରିତ୍ରଚିତ୍ରଣ କରୁନାହାନ୍ତି, ଚରିତ୍ର ଏବେ ଉପନ୍ୟାସ-ଶିଳ୍ପରୁ ଲୋପ ପାଇଲାଣି । ମନୁଷ୍ୟ ଜୀବନ ଅସମାପ୍ତ, ତେଣୁ ଉପନ୍ୟାସର ଉପସଂହାରରେ ଅସମାପ୍ତିର ଅତୃପ୍ତି । ମନୁଷ୍ୟର ମନ ନାନା ମାନସିକ ବିକାରରେ ଗ୍ରସ୍ତ । ମନସ୍ତତ୍ତ୍ୱ ନାମରେ ପୀଡ଼ା, ବ୍ୟାଧି ଓ ବିକାରର ନିକାନିଖି ବିଶ୍ଳେଷଣ—ଏହାହିଁ ଆଧୁନିକ ଯୁଗର ଉପନ୍ୟାସ-ସାହିତ୍ୟର ଲକ୍ଷଣ । ସୌନ୍ଦର୍ଯ୍ୟସୃଷ୍ଟି ହେଲା ବର୍ତ୍ତମାନ ଔପନ୍ୟାସିକଙ୍କର ପ୍ରଧାନ କର୍ମ । କିନ୍ତୁ ଫକୀର-ମୋହନ ସୌନ୍ଦର୍ଯ୍ୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସତ୍ୟ ଓ ଶିବର ଅନୁସନ୍ଧାନ କରିଅଛନ୍ତି । ଚମ୍ପାର ଚରିତ୍ର ଯେଉଁ ଜଘନ୍ୟ ଓ ପାପଭାରାକ୍ରାନ୍ତ ହୋଇପଡ଼ିଛି ଫକୀରମୋହନଙ୍କର ସେହି ଚେତାବନୀ—

'କ୍ଷଣମିହ ସଜ୍ଜନସଙ୍ଗତିରେକା
ଭବତି ଭବାର୍ଣ୍ଣବ ତରଣେ ନୌକା ।'
ଏବଂ

ସନାତନ ବ୍ରାହ୍ମଧର୍ମର ଉପଦେଶ—"ତୁମ୍ଭେ ପାପକୁ ଘୃଣା କର, ପାପୀକୁ ଘୃଣା କର ନାହିଁ" ଆମ୍ଭମାନଙ୍କ ମର୍ମରେ ପ୍ରତିଧ୍ୱନିତ ହୋଇ ଆମକୁ ଯେପରି ସତର୍କ ବାଣୀ ଶୁଣାଇଦିଏ,—ଚମ୍ପା ଚରିତ୍ରକୁ କେବଳ ସଇତାନ ମନେ କରି ଦୂରକୁ ଘୃଣାରେ ଫିଙ୍ଗି ଦିଅ ନାହିଁ । ଚମ୍ପାକୁ ଘୃଣା କର ନାହିଁ, ତା କୃତ ପାପକୁ ଘୃଣା କର, ସେ ପାପପଙ୍କିଳ ପଥରେ ନଯାଇ ସତ୍‌ପଥ ଅବଲମ୍ବନ କର । ଚମ୍ପାର ଘୋର ଦୁଷ୍କୃତି ପାଇଁ ଅଶ୍ରୁ ବିସର୍ଜନ କର ।

ଏ ଶିଳ୍ପାନୁସନ୍ଧାନ, ଜୀବନ-ଜିଜ୍ଞାସା, ମନନଶୀଳତା ଓ ଆଦର୍ଶବାଦିତା ସାହିତ୍ୟିକର ସୃଷ୍ଟିରେ ଆମେ ଦେଖିବାକୁ ପାଇବା ନାହିଁ ତ, ଆଉ ଦେଖିବା କଣ ଏହି ନାନାଜଟିଳତାପୂର୍ଣ୍ଣ ସଂସାରରେ ? ଯେଉଁମାନେ ଫକୀରମୋହନଙ୍କ ମୌଳିକ ପ୍ରତିଭା ଉପରେ କଟାକ୍ଷ କରି କହନ୍ତି—'ଛ ମାଣ ଆଠ ଗୁଣ୍ଠ'ର ଚମ୍ପା ଚରିତ୍ର ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ 'ବିଷବୃକ୍ଷ'ର ହୀରା ଚରିତ୍ରର ଅନୁକରଣ ମାତ୍ର, ସେମାନଙ୍କ କଟାକ୍ଷ ବୃଥା । ଅନ୍ୟର କୁତ୍ସାରଟନା କରି ଆତ୍ମପ୍ରସାଦ ଲଭ କରିବାର ପ୍ରୟାସ ସେମାନଙ୍କର ଅତୀବ ହାସ୍ୟାସ୍ପଦ । ପ୍ରଥମତଃ ବିଷବୃକ୍ଷ ଗୋଟିଏ ପ୍ରେମମୂଳକ ଉପନ୍ୟାସ—ବିଧବାବିବାହ ଏହାର ସମସ୍ୟା । ବିଷବୃକ୍ଷର ହୀରା ଅବଶ୍ୟ ଦୁଷ୍ଟଚରିତ୍ରା । ଦେବେନ୍ଦ୍ର ପ୍ରତି ସେ ପ୍ରଣୟାସକ୍ତା । କିନ୍ତୁ ସେ ପ୍ରଣୟାକାଂକ୍ଷା ତାର ଚରିତାର୍ଥ ହୋଇ ନାହିଁ । ସେ ପ୍ରଣୟୀଠାରୁ ପଦାଘାତ ପାଇଛି । କୁନ୍ଦ ତାର ପ୍ରତିଦ୍ୱନ୍ଦ୍ୱୀ । ଦେବେନ୍ଦ୍ର ତାକୁ ପ୍ରତ୍ୟାଖ୍ୟାନ କରି କୁନ୍ଦର ପ୍ରଣୟରେ ଆସକ୍ତ । ତେଣୁ କୁନ୍ଦ ଓ

ଦେବେନ୍ଦ୍ର ଉଭୟଙ୍କ ପ୍ରତି ହୀରାର ବିଦ୍ୱେଷାନଳ ପ୍ରଜ୍ୱଳିତ ହୋଇ ଉଠିଛି । ଏହି ପ୍ରେମଜନିତ ନୈରାଶ୍ୟରେ ସେ ଯେଉଁ ବିଷପାନ କରି ଆତ୍ମହତ୍ୟା କରିବାକୁ ବସିଥିଲା, ସେ ବିଷ ସେ ପ୍ରତିଶୋଧ ନେବା ନିମନ୍ତେ କୁନ୍ଦକୁ ଦେଇଛି । କୁନ୍ଦ ସେ ବିଷ ପାନ କରି ମରିଛି । ଶେଷରେ ହୀରା ଉନ୍ମାଦଗ୍ରସ୍ତା ହୋଇ ଭିଖାରୁଣୀଙ୍କ ପରି ଏଣେ ତେଣେ ବୁଲିଛି । ସେହି ଉନ୍ମାଦ ଅବସ୍ଥାରେ ସେ ଥରେ କୁନ୍ଦ ନନ୍ଦିନୀର ବିୟୋଗ ପରେ ଦେବେନ୍ଦ୍ର ନିକଟକୁ ଯାଇ କହିଛି, "ବର୍ତ୍ତମାନ ତୁମର ମରଣ ନିକଟ ହୋଇ ଆସୁଛି ଶୁଣି ଆନନ୍ଦରେ ତୁମ ପାଖକୁ ଆସିଛି । ଆଶୀର୍ବାଦ କରେ, ନରକରେ ତୁମେ ଯେପରି ସ୍ଥାନ ନପାଅ ।" ଏଇ ତ 'ବିଷବୃକ୍ଷ'ର ସାରମର୍ମ । ହୀରା ଦୁଷ୍ଟା । ତାର ପ୍ରେମ-ପିପାସା ଚରିତାର୍ଥ ହୋଇ ପାରି ନାହିଁ । କିନ୍ତୁ ଚମ୍ପାର ଏପରି ବ୍ୟାକୁଳ ପ୍ରେମ-ପିପାସା 'ଛ ମାଣ ଆଠ ଗୁଣ୍ଠ'ରେ କେଉଁଠାରେ ଅଛି ? ଏପରି ଖୋଜି ବସିଲେ ଏ ସଂସାରରେ ଯେତେ ଦୁଷ୍ଟା ନାରୀ ଅଛନ୍ତି, ସମସ୍ତଙ୍କ ଚରିତ୍ର ମଧ୍ୟରେ କିଛି ନା କିଛି ସାମଞ୍ଜସ୍ୟ ମିଳିବ । ବଙ୍କିମ ଚଟ୍ଟୋପାଧ୍ୟାୟଙ୍କ ଉପନ୍ୟାସ ଲେଖାରୁ ଫକୀରମୋହନ କଥା-ସାହିତ୍ୟ ସୃଷ୍ଟି କରିବାର ପ୍ରେରଣା ପାଇଥିଲେ ହେଁ, ହୀରା ଓ ଚମ୍ପା ଚରିତ୍ର ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଓଡ଼ିଶାର ତତ୍କାଳୀନ ପରିସ୍ଥିତିକ ସୃଷ୍ଟି ଚମ୍ପା ଖାଣ୍ଟି ଓଡ଼ିଆଣୀ ନାରୀ । ସେ ପ୍ରେମ-ପ୍ରାର୍ଥିନୀ ହୋଇ କାହା ପାଖକୁ ଯାଇ ନାହିଁ । ବରଂ ତା ପ୍ରେମରେ ସେ ମଙ୍ଗରାଜଙ୍କୁ ଅନୁକୃଷ୍ଟ କରିଥିଲା ପରି ମନେ ହୁଏ । ସେ କାହାକୁ ପ୍ରତ୍ୟକ୍ଷ ଭାବରେ ବିଷ ଦେଇ ନାହିଁ । ସେ ନିଜେ ଯେଉଁ ବିଷବୃକ୍ଷ ଲଗାଇଥିଲା ତାରି ତିକ୍ତ ଫଳ ତାକୁ ଭୋଗ କରିବାକୁ ପଡ଼ିଛି । କେବଳ ଏତିକି ନୁହେଁ, ବଙ୍କିମବାବୁଙ୍କ 'ବିଷବୃକ୍ଷ'ର ପରିକଳ୍ପନା, 'ଘଟନା ସଂସ୍ଥାନ' ଏବଂ 'ଭାଷାବିନ୍ୟାସ'

'ଛ ମାଣ ଅଠ ଗୁଣ୍ଠ' ଠାରୁ ସମ୍ପୂର୍ଣ୍ଣ ପୃଥକ୍ । ତା'ପରେ ପାପ ଓ ପୁଣ୍ୟବୋଧ—ଏହା ସକଳ ସମାଜକଲ୍ୟାଣକାମୀ ଆଦର୍ଶୋନ୍ମୁଖୀ ବାସ୍ତବବାଦୀ ଔପନ୍ୟାସିକଙ୍କ ପକ୍ଷରେ ସମାନ । ସମାଜରୁ କଳଙ୍କ ଦୂର କରିବା ସେମାନଙ୍କର ବ୍ରତ—ସେହି ଶୁଦ୍ଧ ଅନ୍ତଃପ୍ରେରଣାରୁ ସେମାନଙ୍କର ସାହିତ୍ୟସୃଷ୍ଟି । **'Art for Arts sake'** କଳା କୈବଲ୍ୟବାଦରେ ସେମାନଙ୍କର ବିଶ୍ୱାସ ନାହିଁ । ରୁଷିଆର ଋଷି ଟଲଷ୍ଟୟଙ୍କ ଭାଷାରେ **"That what incites the author to work at his production should be an inner need and not an external inducement."** ଫକୀରମୋହନଙ୍କ କଳାସୃଷ୍ଟି ହୃଦୟର ଏହି ସ୍ୱତଃସ୍ଫୂର୍ତ୍ତି ଗଭୀର ପ୍ରେରଣାରୁ ଉଦ୍ଭାବିତ, ଶସ୍ତା ନାମ ପାଇଁ ନୁହେଁ—ଅର୍ଥ ପାଇଁ ନୁହେଁ ।

---

# ଗଳ୍ପ ଓ ଗାଳ୍ପିକତା

( ୧୦ )

ଅତ୍ୟାଧୁନିକ କ୍ଷୁଦ୍ରଗଳ୍ପର ସଂଜ୍ଞା ଓ ସ୍ୱରୂପ ନିର୍ଦ୍ଦେଶ କରିବାକୁ ଯାଇ ନାନା କ୍ଷୁଦ୍ରଗଳ୍ପ ଲେଖକ ଓ ସାହିତ୍ୟ-ବିଶ୍ଳେଷକ ନାନା ମତବାଦର ଅବତାରଣା କରିଅଛନ୍ତି । ଅବଶ୍ୟ ଏ ବିଭିନ୍ନ ମତବାଦ ମଧ୍ୟରେ ସାମଞ୍ଜସ୍ୟ ଅଛି, ତଥାପି ଏମାନଙ୍କର ପ୍ରକାଶଭଙ୍ଗୀ ପରସ୍ପରଠାରୁ କେତେକ ପରିମାଣରେ ସ୍ୱତନ୍ତ୍ର । ଇତିମଧ୍ୟରେ ଗଳ୍ପ-ସାହିତ୍ୟର ଗୋଟିଏ ବିଶିଷ୍ଟ ଦର୍ଶନ ମଧ୍ୟ ପ୍ରତିଷ୍ଠିତ ହୋଇ ସାରିଲାଣି । ଏହି ସାହିତ୍ୟର ପ୍ରଥମ ଦାର୍ଶନିକ **Brander Mathews**ଙ୍କ ମତରେ **"The story by its effect, a certain unity of impression which set it apart from other kinds of fiction."** ଅନ୍ୟାନ୍ୟ ଜାତୀୟ କଥାସାହିତ୍ୟ, ଅର୍ଥାତ୍ ଉପନ୍ୟାସଠାରୁ କ୍ଷୁଦ୍ରଗଳ୍ପର ପାର୍ଥକ୍ୟ ନିରୂପଣ କରିବାକୁ ଯାଇ କେତେକ ସମାଲୋଚକ ଅଳଙ୍କାରିକ ଭାଷା ପ୍ରୟୋଗ କରି କହିଲେଣି,—ଛୋଟଗଳ୍ପ ଗୀତିକାବ୍ୟ, ଉପନ୍ୟାସ ମହାକାବ୍ୟ; ଛୋଟଗଳ୍ପ 'ମେଲୋଡ଼ି', ଉପନ୍ୟାସ 'ହାର୍ମୋନି'; ଛୋଟଗଳ୍ପରେ ବଂଶୀର ମଧୁର ମୋହନ ମୂର୍ଚ୍ଛନା, ଉପନ୍ୟାସରେ ବହୁ ବିଚିତ୍ର ସ୍ୱରର ଐକ୍ୟତାନ; ଛୋଟ-ଗଳ୍ପ ନାଟକୀୟ ଦ୍ରୁତଗତିସମ୍ପନ୍ନ, ଉପନ୍ୟାସ ମନ୍ଥର ଓ ଲଘୁଗତି-

ସମ୍ପନ୍ନ । ଯେଉଁଠିଗଳ୍ପକୁ କେହି କେହି ମଧ୍ୟ ଏକାଙ୍କିକା ସହିତ ତୁଳନା କରି କହିଲେଣି—ଏକାଙ୍କିକାର ତୀକ୍ଷ୍ଣତା, ପରିସମାପ୍ତିରେ ଆକସ୍ମିକତା, ଅଯୁତନରେ କୁଶଳତା ଏବଂ ରସପରିଣାମର ଏକମୁଖିତା କ୍ଷୁଦ୍ର ଗଳ୍ପରେ ଦେଖିବାକୁ ମିଳେ । ଆଉ ମଧ୍ୟ କେହି କେହି କହିଲେଣି—ଉପନ୍ୟାସ ଯେପରି ଗୋଟିଏ ବିରାଟ ରାଗିଣୀ ଅର୍କେଷ୍ଟ୍ରା ଉପନ୍ୟାସର ଶିଳ୍ପ ପଲ୍ଲବିତ କଥା-ବିସ୍ତାରରେ ଓ ଧୀର ମନ୍ଥର ବିଶ୍ଳେଷଣରେ । କିନ୍ତୁ ଅନାବଶ୍ୟକ ଘଟନା, ଚରିତ୍ରବାହୁଲ୍ୟ ଓ ଜଟିଳତା କ୍ଷୁଦ୍ରଗଳ୍ପରେ ପରିହାର୍ଯ୍ୟ । ଯେଉଁଠିଗଳ୍ପ ଲଘୁପକ୍ଷ ପ୍ରଜାପତି, ତାର ପ୍ରତି ପକ୍ଷରେ ଦ୍ରୁତ ଲୟର ଛନ୍ଦ, ସେ ଭାବମୁକ୍ତ, ସେ ଲଘୁଛନ୍ଦ । ଫୁଲରୁ ମହୁଟିକକ ଶୋଷି ନେବାପାଇଁ ଯେତିକ ସମୟ ପ୍ରୟୋଜନ, ସେହି ସମୟ ମଧ୍ୟରେ ଯେଉଁଠିଗଳ୍ପ ନିବଦ୍ଧ । ସମୟ ତା ପ୍ରତି ଅତି ମୂଲ୍ୟବାନ୍ । ମୁହୂର୍ତ୍ତେ ମାତ୍ର ସମୟର ଅପବ୍ୟୟ କରିବାର ତାର ସାଧ ନାହିଁ । ମୂଳତଃ 'ଉପନ୍ୟାସର ବୈଶିଷ୍ଟ୍ୟ କଥା-ବିସ୍ତାରରେ, ଯେଉଁଠିଗଳ୍ପର ବୈଶିଷ୍ଟ୍ୟ କଥା-ସଂହତିରେ; ଉପନ୍ୟାସର ବୈଶିଷ୍ଟ୍ୟ ବର୍ଣ୍ଣନାରେ, ଯେଉଁଠିଗଳ୍ପର ବୈଶିଷ୍ଟ୍ୟ ସ୍ୱଳ୍ପଭାଷୀ ବ୍ୟଞ୍ଜନାରେ; ଉପନ୍ୟାସର ଆସ୍ୱାଦନରେ କଥାରସ-ପିପାସୁର ପରିତୃପ୍ତି, କିନ୍ତୁ କ୍ଷୁଦ୍ର ଗଳ୍ପର ଆସ୍ୱାଦନରେ ଥାଏ ଅନ୍ତହୀନ ଜିଜ୍ଞାସା ଓ ଅତୃପ୍ତ ପିପାସା । ଗୋଟିଏ ଘଟନା ବା ଜୀବନର ଖଣ୍ଡାଂଶକୁ ଅତି ଅଳ୍ପ ପରିସର ଓ ସମୟ ମଧ୍ୟରେ ଉଦ୍ଭାସିତ କରିବା ହେଲା ଯେଉଁଠିଗଳ୍ପର ଧର୍ମ ।'

ଆଉ ଜଣେ ସମାଲୋଚକ ତାଙ୍କର ପ୍ରକାଶଭଙ୍ଗୀକୁ ଗମ୍ଭୀରରୁ ଗମ୍ଭୀରତର କରି କହିଅଛନ୍ତି, "ଆଧୁନିକ ଗଳ୍ପ ଯେଉଁଠାରେ ସାର୍ଥକତାର ଚରମ ପର୍ଯ୍ୟାୟରେ ଉପନୀତ ହୋଇଅଛି, ସେଠାରେ ସେ ବାସ୍ତବ-ସଚେତନ ଏବଂ ଜୀବନବୋଧରେ ଉଜ୍ଜ୍ୱଳ" । ଏହି

ସଜ୍ଞାରେ ସନ୍ତୁଷ୍ଟ ନ ହୋଇ ଆଉ ଜଣେ ବଙ୍ଗ ସମାଲୋଚକ କହନ୍ତି, "ଛୋଟଗଳ୍ପ ହେଉଛି ପ୍ରତୀତଜାତ (Impression) ଗୋଟିଏ ସଂକ୍ଷିପ୍ତ ଗଦ୍ୟକାହାଣୀ, ଯାହାର ଏକମାତ୍ର ଉଦ୍ଦେଶ୍ୟ—କୌଣସି ଗୋଟିଏ ଘଟନା, ପରିବେଶ ବା ମାନସିକତାର ଅବଲମ୍ବନରେ ଗୋଟିଏ ସଙ୍କଟମୟ ମୁହୂର୍ତ୍ତି ସୃଷ୍ଟି କରି ସମଗ୍ରତା ଲାଭ କରିବା" । ଏ ସଜ୍ଞାକୁ ବ୍ୟାଖ୍ୟା କରିବାକୁ ଯାଇ ସେ ଲେଖିଅଛନ୍ତି—

(୧) ପ୍ରଥମ କଥା ହେଲା, ଛୋଟଗଳ୍ପରେ ଘଟନାଗତ, ମନସ୍ତତ୍ତ୍ୱଗତ ବା ଚରିତ୍ରଗତ କୌଣସି ଗୋଟିଏ ସମସ୍ୟାର ସଙ୍କଟ ରୂପ ଅର୍ଥାତ୍ ସଙ୍କଟମୟ ମୁହୂର୍ତ୍ତି ଦେଖାଇବାକୁ ହେବ ।

(୨) ମାନବଜୀବନର ପ୍ରବାହରୁ ଲେଖକର ବହୁ ଅନୁଭୂତ ସଞ୍ଚିତ ଅଛି । ସେହି ଅନୁଭୂତ ମଧ୍ୟରୁ ଯେଉଁ ଅନୁଭୂତିଟି ତା ପ୍ରାଣକୁ ଗଭୀର ଭାବରେ ଆଲୋଡ଼ିତ କରିଛି, ଏବଂ ଯେଉଁ ଘଟନାରୁ ସେ ଗଭୀର ପ୍ରତୀତ ଆହରଣ କରିଛି, ତାକୁ ତାର ଜୀବନ-ଦର୍ଶନ ବା ଆଦର୍ଶର ଅନୁକୂଳ କିମ୍ବା ପ୍ରତିକୂଳ କରି କ୍ଷୁଦ୍ର ଗଳ୍ପ ସୃଷ୍ଟି କରିବାକୁ ହେବ । 'ରେବତୀ' ଗଳ୍ପରେ ଫକୀରମୋହନଙ୍କ ଆଦର୍ଶ ହେଲା ଆମ ସମାଜରେ ସ୍ତ୍ରୀଶିକ୍ଷାର ବିକାଶ । ରେବତୀର ବୃଢ଼ୀମା ରେବତୀପ୍ରତି ଯେପରି ବ୍ୟବହାର କରିଛି, ଏବଂ ତାର ଦୁଃଖ-ଦୁର୍ଦ୍ଦଶା ସକାଶେ ରେବତୀର ପାଠପଢ଼ାକୁ ଯେପରି ଭାବରେ ଦୋଷ ଦେଇଛି, ତାହା ଫକୀରମୋହନଙ୍କର ଜୀବନାଦର୍ଶର ପ୍ରତିକୂଳ । ସ୍ତ୍ରୀଶିକ୍ଷାର ଅଭାବରୁ ଯେଉଁ ପାରିବାରିକ କିମ୍ବା ବ୍ୟକ୍ତିଗତ ଦୁଃଖଦୁର୍ଗତି ଓ ବିଡ଼ମ୍ବନାର ପ୍ରତୀତ ଫକୀରମୋହନ ତାଙ୍କ ପାରିପାର୍ଶ୍ୱିକ ବେଷ୍ଟନୀରୁ ଆହରଣ କରିଥିଲେ, ସେହି ପ୍ରତୀତ କେବଳ ତାଙ୍କର 'ରେବତୀ' ଗଳ୍ପରେ ସମଗ୍ରତା ଓ ଐକ୍ୟ ଲାଭ

କରି ନାହିଁ, କରିଛି 'ଗାରୁଡ଼ମନ୍ତ୍ର', 'ପାଠୋଇବୋହୂ' ଓ 'ସୁନାବୋହୂ' ଗଳ୍ପରେ ।

(୩) କ୍ଷୁଦ୍ର ଗଳ୍ପରେ ଅମ୍ଭେମାନେ ଲେଖକଙ୍କ ବ୍ୟକ୍ତିତ୍ୱର ଗୋଟିଏ ସୁନ୍ଦର ପ୍ରତିଛବି ଦେଖିବାକୁ ପାଉ । ଲେଖକର ମାନବିକତା, ଦୃଷ୍ଟିଭଙ୍ଗୀ ଓ ରୁଚିବୋଧ ତାର କ୍ଷୁଦ୍ର ଗଳ୍ପ ମଧ୍ୟରେ ଅଭିବ୍ୟକ୍ତି ଲାଭ କରିଥାଏ । ଶ୍ରେଷ୍ଠଗଳ୍ପ, ଲେଖକର ବ୍ୟକ୍ତିତ୍ୱର ବିଚିତ୍ର ବିକାଶ । ଜଣେ ପାଶ୍ଚାତ୍ୟ ସମାଲୋଚକ ମଧ୍ୟ ଏ ସମ୍ପର୍କରେ ଯଥାର୍ଥ କହିଅଛନ୍ତି, **"In other words the short story is an emphatically personal exposition."**

(୪) ଶ୍ରେଷ୍ଠଗଳ୍ପର ପରିଣତି ହେବ ବ୍ୟଞ୍ଜନାମୟ ବା ଇଙ୍ଗିତ-ଧର୍ମୀ । ଏହାର ଯେଉଁଠାରେ ସମାପ୍ତି, ସେହିଠାରୁ ଆସ୍ୱାଦନର ଆରମ୍ଭ । ଲେଖକର ବକ୍ତବ୍ୟ ଶେଷ ହୋଇଯିବ, କିନ୍ତୁ ବହୁ ସମୟ ଧରି ଭାବର ଅନୁରଣନଟି ପାଠକ ମନକୁ ସ୍ପନ୍ଦିତ ଓ ଆଲୋଡ଼ିତ କରୁଥିବ ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ—

ନାହିଁ ବର୍ଣ୍ଣନାର ଛଟା, ଘଟନାର ଘନଘଟା
ନାହିଁ ତତ୍ତ୍ୱ, ନାହିଁ ଉପଦେଶ
ଅନ୍ତରେ ଅତୃପ୍ତି ରବେ, ସାଙ୍ଗ କରି ମନେ ହବେ
ଶେଷ ହୟେ୍ ହଇଲନା ଶେଷ ।

ଯେଉଁ କ୍ଷୁଦ୍ର ଗଳ୍ପ ଶେଷ ହୋଇ ମଧ୍ୟ ଶେଷ ହୋଇନଥିବ, ପାଠକ ମନରେ ଅତୃପ୍ତିର ବେଦନା ଓ କୌତୂହଳ ଉଦ୍ରେକ କରୁଥିବ, ତାହାହିଁ ସାର୍ଥକ ଶ୍ରେଷ୍ଠଗଳ୍ପ ।

(୫) ଛୋଟଗଳ୍ପର ଏ ଇଙ୍ଗିତମୟତାର ଉଦାହରଣ ନିମ୍ନଲିଖିତ ବିଷୟରୁ ସହଜରେ ଅନୁମେୟ:—

ମନେକର, ଜଣେ ଗଳ୍ପଲେଖକ ଗୋଟିଏ ଗଳ୍ପ ଲେଖିଛନ୍ତି । ସେଥିରେ ଘଟଣାକ୍ରମେ ସେ ଜ୍ୟୋତ୍ସ୍ନାରଜନୀର ଏକ ସୁନ୍ଦର ଓ ପ୍ରାଞ୍ଜଳ ବର୍ଣ୍ଣନା ଦେଇଅଛନ୍ତି । ପ୍ରଚଳିତ ରୀତି ଅନୁସାରେ ସେ ଜ୍ୟୋତ୍ସ୍ନାରଜନୀର ଅନବଦ୍ୟ ପ୍ରତିଚ୍ଛବି ଅଙ୍କନ କରି ପ୍ରଚୁର କବିତ୍ୱର ପରାକାଷ୍ଠା ଦେଖାଇ ଅଛନ୍ତି । କାହାଣୀଟି କାବ୍ୟଧର୍ମୀ ହୋଇ ପଡ଼ିଛି । କିନ୍ତୁ ସେ ଗଳ୍ପଟି ପଢ଼ି ପଢ଼ି ଜଣେ ଇଙ୍ଗିତଧର୍ମୀ କ୍ଷୁଦ୍ର ଗଳ୍ପ ଲେଖକ ଅବଜ୍ଞାସୂଚକ ସ୍ୱରରେ ଚିତ୍କାର କରି କହିଲେ, "ଏ ଅତି ପୁରୁଣାକାଳିଆ ଚନ୍ଦ୍ର-ବର୍ଣ୍ଣନା—ଏଥିରେ ଆଧୁନିକ କ୍ଷୁଦ୍ର ଗଳ୍ପର କାମ ଚଳିବ ନାହିଁ । ଏ ରକ୍ଷଣଶୀଳ ମନୋବୃତ୍ତି ଛାଡ଼ । ଯଦି ଜ୍ୟୋତ୍ସ୍ନାରଜନୀର ବର୍ଣ୍ଣନା କରିବାକୁ ଚାହିଁ, ତେବେ ଏତିକି ମାତ୍ର ଦେଖାଇଦେଲେ ଯଥେଷ୍ଟ ହେବ ଯେ, କାରଖାନା ପାଖରେ ଗୋଟିଏ ଛୋଟ ଝରକା ସେପଟେ ଗୋଟିଏ ପୁରୁଣା ଭଙ୍ଗା ବୋତଲ ଉପରେ ଚନ୍ଦ୍ରକିରଣ ପଡ଼ି କାପରି ଜକ୍ ଜକ୍ ଦେଖାଯାଉଛି ।" ଏହି ଉକ୍ତି ମଧ୍ୟରେ ଯେଉଁ ବ୍ୟଞ୍ଜନାଟି ଅଛି ତାହା ହେଉଛି, କାରଖାନାଟି ଯାନ୍ତ୍ରିକ ଶୋଷଣବାଦର ପ୍ରତୀକ, ଏବଂ ଛୋଟ ଝରକା-ବାଟେ ଯେଉଁ ଭଙ୍ଗା ବୋତଲ ପ୍ରଭୃତି ବାହାରକୁ ଫିଙ୍ଗାଯାଏ, ସେସବୁ ହେଲା ଶ୍ରମିକମାନଙ୍କର ରିକ୍ତ ଏବଂ ବେଦନାଜର୍ଜରିତ ହୃଦୟ । ସେହି ହୃଦୟ ଉପରେ ଚନ୍ଦ୍ରକିରଣ ପଡ଼ି ଚିକ୍ ଚିକ୍ ହେଉଛି, ସତେ ଯେପରି ତାହା ଏହି ରିକ୍ତ ଓ ଅତ୍ୟାଚାର-ନିପୀଡ଼ିତ ଶ୍ରମିକମାନଙ୍କର ଦୁଃଖ ଓ ଦୁର୍ଦ୍ଦଶାକୁ ଆଉରି ସ୍ପଷ୍ଟତର ଭାବରେ ଉଜ୍ଜ୍ୱଳ କରି ଜଗତବାସୀଙ୍କୁ ଦେଖାଇ ଦେବାକୁ ଉଦ୍ୟତ । ଏ ହେଲା ସମଗ୍ର କ୍ଷୁଦ୍ର ଗଳ୍ପର ପ୍ରତୀକ କିମ୍ବା ଇଙ୍ଗିତ । କିନ୍ତୁ

ସମୟେ ସମୟେ କ୍ଷୁଦ୍ର ଗଳ୍ପର ପ୍ରଧାନ ଚରିତ୍ର କିମ୍ବା ଉପସଂହାରଟି ଇଙ୍ଗିତମୟ ହୋଇଥାଏ । ସେହିପରି ଫକୀରମୋହନଙ୍କର ପ୍ରତ୍ୟେକ ଗଳ୍ପକୁ ଇଙ୍ଗିତମୟ ବା ପ୍ରତୀକଧର୍ମୀ କୁହାଯାଇପାରେ । 'ରେବତୀ' ଗଳ୍ପରେ କଣ କେବଳ ରେବତୀ କିମ୍ବା ତାର ବୁଢ଼ୀମା'ର ବ୍ୟକ୍ତିଗତ ଜୀବନର ଦୁଃଖ ବିଡ଼ମ୍ବନା ଓ ଭାଗ୍ୟର କ୍ରୁର ଉପହାସର ଚିତ୍ର ଅଛି ? ଏଥିରେ କଣ ଏହି ବ୍ୟଞ୍ଜନା ଓ ପ୍ରତୀକ ଅନ୍ତଃସଲିଳା ଫଲ୍‌ଗୁ ପରି ପ୍ରବାହିତ ନୁହେଁ,—ରେବତୀ ପରି ଆମ ଦେଶରେ କେତେ ନିଃସହାୟା ବାଳିକା ହୃଦୟର ଗଭୀର ବେଦନା ଓ ନୈରାଶ୍ୟରେ ହାହାକାର କରି, କେତେ ନିର୍ଯାତନା ଓ ଅପମାନ ସହ୍ୟ କରି ଅସମୟରେ ବନର ମାଳତୀ ପରି ଝଡ଼ି ପଡ଼ୁଛନ୍ତି, ତାହାର ହିସାବ ରଖୁଛି କିଏ ? ତାଙ୍କ ପାଇଁ କାହାର ପ୍ରାଣ ସଂବେଦନାରେ ବ୍ୟଥିତ ହୋଇ ଉଠୁଛି ?

(୭) ଅତ୍ୟାଧୁନିକ ଛୋଟଗଳ୍ପର ଆଉ ଗୋଟିଏ ଲକ୍ଷଣ— ଛୋଟଗଳ୍ପରୁ ବର୍ତ୍ତମାନ କ୍ରମେ କ୍ରମେ ଗଳ୍ପ ବିଦାୟ ନେବାକୁ ବସିଲାଣି । ବର୍ତ୍ତମାନ ଛୋଟଗଳ୍ପ ବହିର୍ମୁଖୀ ନୁହେଁ, ଅନ୍ତର୍ମୁଖୀ । ଛୋଟଗଳ୍ପର ଲେଖକ ଆତ୍ମଲୀନ—ସେ ମନୁଷ୍ୟର ଚିତ୍ତ-ସମୁଦ୍ରରେ ଅବଗାହନ କରି ତା ଅବଚେତନ ମନର ଲୀଳା-ସ୍ପନ୍ଦନ ଆସ୍ୱାଦନ କରିବାକୁ ଚାହେଁ । ମନୁଷ୍ୟର ମନ-ଗହନର ଗୋଟିଏ ଚରମ ମୁହୂର୍ତ୍ତର ଆତ୍ମପ୍ରକାଶ ଆଧୁନିକ କ୍ଷୁଦ୍ର ଗଳ୍ପର ପରମ ସମ୍ପଦ । କ୍ଷୁଦ୍ର ଗଳ୍ପର ଏହି ମନସ୍ତାତ୍ତ୍ୱିକ ଦିଗ ଉପରେ ଆଲୋକ ସମ୍ପାତ କରି ଜଣେ ସମାଲୋଚକ କହନ୍ତି, "କିନ୍ତୁ ଆଧୁନିକ ଗଳ୍ପର ଯଦି ମୃତ୍ୟୁକେନ୍ଦ୍ର କେଉଁଠାରେ ଥାଏ, ତାହାହେଲେ ତାହା ଏହି ଧରଣର ମନସ୍ତାତ୍ତ୍ୱିକ ଗଳ୍ପରେ । ଅନ୍ତର ଲୋକର ଗୂଢ଼ ଗହନର ଗୋପନ ସନ୍ଧାନ କରୁ କରୁ ଲେଖକ ଏପରି ଗୋଟିଏ ଭୟଙ୍କର

ସ୍ଥାନରେ ଯାଇ ପହଞ୍ଚେ—ସେଠାରେ କେବଳ ମନୁଷ୍ୟର ଅନ୍ଧ-ପ୍ରବୃତ୍ତି ସରୀସୃପ ପରି କଲବଲ ହେଉଛନ୍ତି । ସେହି ଅନ୍ଧ କାମ୍ୟ ଯୌନ ବ୍ୟାଧି ବିକୃତି ଯଦି କ୍ଷୁଦ୍ର ଗଳ୍ପର ଏକମାତ୍ର ଉପଜୀବ୍ୟ ବିଷୟ ହୁଏ, ତେବେ ବିକ୍ତ ମାନସିକତାର ଏକ ଶୋଚନୀୟ ପଙ୍କ-ମନ୍ଥନ ହିଁ ଲେଖକର ଲକ୍ଷ୍ୟ ବୋଲି ଧରିନେବାକୁ ହେବ ।”

ଏହିପରି ଦୁର୍ବୋଧ, ଘଟନାବିବର୍ଜିତ ଓ ଅଙ୍ଗଲଗ୍ନ କଳ୍ପନା-ବିଳାସପୂର୍ଣ୍ଣ ମନସ୍ତାତ୍ତ୍ୱିକ ଗଳ୍ପ ଲେଖକର ଅସୁସ୍ଥ ଚିତ୍ତ-ବିକୃତିର କିପରି ଅଶୋଭନୀୟ ପରିଚୟ ଦିଏ, ତାହାର ଜ୍ୱଳନ୍ତ ନିଦର୍ଶନ ଏଇ କ୍ଷୁଦ୍ର ଗଳ୍ପଟି । ଗଳ୍ପଟିର ନାମ ହେଉଛି ‘ନିଜସ୍ୱ ସର୍ପ’ **(Snake of one’s own)** । ଏ ଗଳ୍ପ ଉପରେ ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ଗବେଷଣାର ପ୍ରଭାବ ସୁସ୍ପଷ୍ଟ । ଗଳ୍ପଟି ଏହିପରି—ଜଣେ ଯୁବକ ଜୀବ-ବିଜ୍ଞାନ ଗବେଷଣାରେ ପରୀକ୍ଷାଗାରରେ ବ୍ୟାପୃତ । ତା ଲାବରେଟରୀରେ ଅଛନ୍ତି ହରେକ ରକମର ଜୀବ—ବିଲେଇ, ମୂଷା ଓ ବୋଡ଼ାସାପ । ଦିନେ ଯୁବକଟି ଗୋଟିଏ ମାଛ ଧରି ପରୀକ୍ଷା କରୁଛି, ହଠାତ୍ ତା ଆଗରେ ଆସି ଉପସ୍ଥିତ ଜଣେ କ୍ଷୀଣାଙ୍ଗୀ ତରୁଣୀ । ସେ ଆସି କହିଲେ, “ମୋର ଗୋଟିଏ ଅନୁରୋଧ ଅଛି, ମତେ ଆପଣଙ୍କର ଏହି ବୋଡ଼ାସାପ ମଧ୍ୟରୁ ଗୋଟିଏ ଦିଅନ୍ତୁ । ମୁଁ ଉଚିତ ଦାମ ଦେଇ କିଣି ନେବି ।” ଯୁବକ ଏ ପ୍ରସ୍ତାବରେ ଅଗ୍ରହସୂଚକ ସମ୍ମତି ଦେଲେ । କିନ୍ତୁ ତରୁଣୀଟି କହିଲେ—“ମୁଁ ସେ ସାପଟି ଜମା ଘରକୁ ନେବି ନାହିଁ । ସେ ଆପଣଙ୍କ ପାଖରେ ରହିବ । ମୁଁ ମଝିରେ ମଝିରେ ଆସି ସାପଟିକୁ ଖାଇବାକୁ ଦେଇ ଚାଲି ଯାଉଥିବି । ସାପଟି କିପରି ଖାଉଛି ନିଜ ଆଖିରେ ତା ଦେଖି ଯାଉଥିବି ।”

ତା ପରେ ଲେଖକ ବର୍ଣ୍ଣନା କରଛନ୍ତି, ସାପଟି କପର ଗୋଟିଏ ବଡ଼ ମୂଷାକୁ ଅକ୍ରମଣ କରୁଛି ତାକୁ ଖାଇବାକୁ । ମୂଷାକୁ ଅକ୍ରମଣ କରବା ପୂର୍ବରୁ ସାପର ସତର୍କ ପ୍ରସ୍ତୁତ, ତାର ଫଣାର ଅନ୍ଦୋଳନ, ତାର ହିଂସ୍ର ଗର୍ଜନ, ତା ପରେ ଶିକାରକୁ ଗ୍ରାସ କରବା, ଏ ସବୁ ନିଜ ଅଖିରେ ଦେଖି ତରୁଣୀର ମନରେ ଉଦ୍ରେକ ହେଲ ଅବଦମିତ ଯୌନଲିପ୍ସା । ସାପଫଣାର ଅନ୍ଦୋଳନ ସହିତ ତରୁଣୀର କାମଚେତନା ଚଞ୍ଚଳ ହୋଇ ଉଠିଲ । ଏହାହିଁ ଫ୍ରୟେଡ଼ୀୟ ମନସ୍ତତ୍ତ୍ୱର ବଶ୍ଳେଷଣ—ଅବଚେତନ ମନର ଅବଦମିତ କାମଲିପ୍ସା । ଏପରି ଅସୁସ୍ଥ ଯୌନ ବକୃତକୁ ବାଦ୍ ଦେଲେ ବି ଦାର୍ଶନିକତତ୍ତ୍ୱସମ୍ବଳିତ ଓ ମନସ୍ତାତ୍ତ୍ୱିକ କ୍ଷୁଦ୍ର ଗଳ୍ପ ପାଠକ ପ୍ରାଣରେ କପରି ବସ୍ମିଷିକା ସୃଷ୍ଟି କରେ ତାହାର ଉଦାହରଣ ଅଉ ଗୋଟିଏ ଗଳ୍ପ । ଗଳ୍ପଟିର ନାମ 'କଳାଜାଇ' (The birth-mark) । ଡାକ୍ତର ଏଲ୍‌ମାରଙ୍କ ରୂପବତୀ ସ୍ତ୍ରୀ ଜର୍ଜିୟାନା । ଅନନ୍ୟ ତାଙ୍କର ରୂପଲାବଣ୍ୟ । କନ୍ତୁ ଗୋଟିଏ ଦୋଷ ରହିଛି ତାଙ୍କ ଜନ୍ମରୁ । ଗୋଟିଏ ଗାଲରେ ତାଙ୍କର ଗୋଟିଏ କଳାଜାଇ । ଲୋକେ ଦେଖି କହନ୍ତି—ଜର୍ଜିୟାନାଙ୍କ ମୁହଁର ସୌନ୍ଦର୍ଯ୍ୟ ଏହିଠାରେ—ସତେ ଯେପରି ତାଙ୍କ ଗଣ୍ଡଦେଶରେ ବଧାତାଙ୍କ ଶିଳ୍ପ-ପରାକାଷ୍ଠାର ଏହା ଅଙ୍ଗୁଳି-ସଙ୍କେତ ! କନ୍ତୁ ଚିନ୍ତାଶୀଳ ଡାକ୍ତର ଭାବଲେ—ଜର୍ଜିୟାନାର ସୁନ୍ଦର ମୁଖମଣ୍ଡଳରେ 'ଏ ଯେପରି ମରଣଶୀଳ ପୃଥିବୀର ସ୍ୱାକ୍ଷର' । ଏ ବଷୟ ଡାକ୍ତର ଯେତେ ଭାବଲେ, ସେତକ ତାଙ୍କର ମୁଣ୍ଡ ବଗିଡ଼ିଗଲ, ଏବଂ ମନସ୍ତତ୍ତ୍ୱ ବଜ୍ଞାନର ଭାଷାରେ ତାଙ୍କର 'ମନୋବକାର' ଘଟିଲ । ମନ ଅଶାନ୍ତିରେ ଛଟପଟ ହେଲ । ଦାମ୍ପତ୍ୟ ଜୀବନର ସୁଖ ବାଧା ପାଇଲ । ଡାକ୍ତର ଦନେ ସ୍ତ୍ରୀଙ୍କୁ କହିଲେ, "ମୁଁ ତୁମର ଏ ଜନ୍ମ-

ଚହ୍ନଟି ସମ୍ପୂର୍ଣ୍ଣରୂପେ ନିଶ୍ଚିହ୍ନ କରିଦେବ । କ'ଣ ରାଜି ?" ଜର୍ଜିଆନା ରାଜି ହେଲେ । ଡାକ୍ତର ତାଙ୍କର ଡାକ୍ତରୀବିଦ୍ୟାର ଚରମ ବିଜୟ ଦେଖାଇବାକୁ ଯାଇ କୌଣସି ବିଷାକ୍ତ ଔଷଧ ପ୍ରୟୋଗ କରି ସେହି ଜନ୍ମଚହ୍ନଟି ଲୁପ୍ତ କରିଦେଲେ, କିନ୍ତୁ ସଙ୍ଗେ ସଙ୍ଗେ ପତ୍ନୀଙ୍କ ଜୀବନଦୀପଟି ନିଭିଗଲା ।*

ଏହାହିଁ ଅଧୁନିକ ମନସ୍ତତ୍ତ୍ୱଧର୍ମୀ କ୍ଷୁଦ୍ର ଗଳ୍ପର ସ୍ୱରୂପ ।

ଅଧୁନିକ କ୍ଷୁଦ୍ର ଗଳ୍ପର ଶିଳ୍ପ ଓ ଶୈଳୀର ପରିପ୍ରେକ୍ଷିତରେ ଆମ୍ଭେମାନେ ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପର ଅଲୋଚନା କଲେ ସ୍ୱତଃ ମନରେ ଏ ସନ୍ଦେହ-ପ୍ରବଣତା ଜାଗି ଉଠେ—ତାଙ୍କ କ୍ଷୁଦ୍ର ଗଳ୍ପମାନଙ୍କ ମଧ୍ୟରେ ଏହି ଲକ୍ଷଣ ସବୁ କାହିଁ ? ମନସ୍ତତ୍ତ୍ୱର ବିଶ୍ଳେଷଣ କାହିଁ ? ଇଙ୍ଗିତମୟତ୍ୱ କାହିଁ ? ଘଟନାର ଏକମୁଖିତା କାହିଁ ? ପରିଣତିରେ ଅସମାପ୍ତି ଓ ଅତୃପ୍ତି କାହିଁ ? ଗୀତିକବିତାର ମଧୁର ମୋହନ ମୂର୍ଚ୍ଛନା କାହିଁ ? ଏକାଙ୍କିକାର ରସଘନନିବିଡ଼ତା ଓ ସଂହତି କାହିଁ ? ତେବେ ସେ କଣ କେବଳ ଗୁଡ଼ିଏ କାହାଣୀ ରଚନା କରିଯାଇ ଅଛନ୍ତି ? ସେଗୁଡ଼ିକରେ କଣ ବାସ୍ତବ ଜୀବନର ମଧୁର ସ୍ପର୍ଶ ନାହିଁ ? ସେ ଗୁଡ଼ିକ କଣ ଅବାସ୍ତବ, ଅତିନାଟକୀୟ ଓ ଅତିରଞ୍ଜନ ଦୋଷରେ ଲିପ୍ତ ? ସେଗୁଡ଼ିକ କଣ ଗୋଟିଏ ଗୋଟିଏ କ୍ଷୁଦ୍ରୀକୃତ ଉପନ୍ୟାସ ? ତେବେ ଫକୀରମୋହନଙ୍କର ଏ ସୁନାମ କାହିଁକି ଅଛି—'ସେ ଓଡ଼ିଆ କ୍ଷୁଦ୍ର ଗଳ୍ପ ସାହିତ୍ୟର ଯେପରି ପ୍ରବର୍ତ୍ତକ, ସେହିପରି ବିକାଶକ ମଧ୍ୟ' ?

---

* 'ସାହିତ୍ୟେ ଛୋଟଗଳ୍ପ'—ଶ୍ରୀ ନାରାୟଣ ଗଙ୍ଗୋପାଧ୍ୟାୟ, ପୃ. ୨୫୨-୫୩ ଦ୍ରଷ୍ଟବ୍ୟ ।

ଆଧୁନିକ କ୍ଷୁଦ୍ରଗଳ୍ପକୁ ନିମ୍ନଲିଖିତ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା—(୧) ଦାର୍ଶନିକ, (୨) ସମାଜସମସ୍ୟାମୂଳକ, (୩) ମନସ୍ତାତ୍ତ୍ୱିକ, (୪) ଚରିତ୍ରାତ୍ମକ, (୫) ରୂପକ, (୬) ବ୍ୟଙ୍ଗ-ମୂଳକ, (୭) କାବ୍ୟଧର୍ମୀ, (୮) ଆଦର୍ଶାତ୍ମକ, ଏବଂ କ୍ଷୁଦ୍ରଗଳ୍ପର ବିଚାର ନିମନ୍ତେ ନିମ୍ନଲିଖିତ ସୂତ୍ରଗୁଡ଼ିକ ଯଥାସମ୍ଭବ ଅବଲମ୍ବନ କରି ସମୀକ୍ଷା-କ୍ଷେତ୍ରରେ ଅଗ୍ରସର ହେବାକୁ ପଡ଼େ, ଯଥା—

(୧) ଗଳ୍ପର ଶ୍ରେଣୀ ନିର୍ଣ୍ଣୟ ।

(୨) ଗଳ୍ପମଧ୍ୟରେ ଗୋଟିଏ 'ମହାମୁହୂର୍ତ୍ତି' କିମ୍ବା ଚରମକ୍ଷଣ **(climax)** ସୃଷ୍ଟି କରିପାରିଛି କି ନାହିଁ ।

(୩) ଭାବର ଏକମୁଖିତା ରକ୍ଷା କରାଯାଇଛି କି ନାହିଁ, ଅନାବଶ୍ୟକ ଅତିବିସ୍ତାର ଅଛି କି ନାହିଁ, ଲେଖକର ବୃତ୍ତାନ୍ତ-ପ୍ରବଣତା କ୍ଷୁଦ୍ରଗଳ୍ପର ଅନ୍ତରାୟରୂପେ ଛିଡ଼ା ହୋଇଛି କି ନାହିଁ ।

(୪) ପ୍ରକାଶଭଙ୍ଗୀ ମଧ୍ୟରେ ବିବୃତିମୂଳକତା ଠାରୁ ଇଙ୍ଗିତଧର୍ମିତା ପ୍ରାଧାନ୍ୟ ଲାଭ କରିଛି କି ନାହିଁ ।

(୫) ବିଷୟବସ୍ତୁ ସହିତ ଭାଷାର ସାମଞ୍ଜସ୍ୟ ଅଛି କି ନାହିଁ ।

(୬) ଲେଖକର ଜୀବନାଦର୍ଶ, ଜୀବନ-ଜିଜ୍ଞାସା ଏବଂ ବ୍ୟକ୍ତିତ୍ୱ କ୍ଷୁଦ୍ରଗଳ୍ପରେ କେତେଦୂର ପ୍ରତିଫଳିତ ।

(୭) ଲେଖକ ଆଦର୍ଶବାଦୀ ନା ବାସ୍ତବଧର୍ମୀ ।

(୮) ଗଳ୍ପର ନାମକରଣର ସମୀଚୀନତା ।

ପ୍ରଥମେ ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପର ଶ୍ରେଣୀନିର୍ଣ୍ଣୟ ଉପରେ ଦୃଷ୍ଟିନିବଦ୍ଧ କଲେ ମନେହୁଏ—'ରେବତୀ' ମନସ୍ତାତ୍ତ୍ୱିକ ଓ ଇଙ୍ଗିତଧର୍ମୀ, 'ପେଟେଣ୍ଟ ମେଡ଼ସନ୍' ବ୍ୟଙ୍ଗାତ୍ମକ, 'ଡାକମୁନ୍‌ସି' ଚରିତ୍ରାତ୍ମକ, 'ଅଧର୍ମବିତ୍ତ' ଆଦର୍ଶାତ୍ମକ, 'ବାଗେଇ ଶିଆଳ' 'ଗାରୁଡ଼ିମନ୍ତ୍ର', 'ପାଠୋଇ ବୋହୂ ଓ ମାଧ ମହାନ୍ତିଙ୍କ କନ୍ୟାସୁନା' ସମାଜସମସ୍ୟାମୂଳକ କିମ୍ବା ସଂସ୍କାରଭିତ୍ତିକ, 'ରଣ୍ଡିପୁଅ ଅନନ୍ତା'ର ଶେଷାଂଶ କାବ୍ୟଧର୍ମୀ, 'ସଭ୍ୟ ଜମିଦାର' ଓ 'ସୁନାବୋହୂ' ରୂପକ କିମ୍ବା ପ୍ରତୀକଧର୍ମୀ । କିନ୍ତୁ ଗାଳ୍ପିକ ଫକୀରମୋହନଙ୍କର ଅନ୍ୟତମ ଶିଳ୍ପ-ଗୁରୁତ୍ୱ—ତାଙ୍କର କୌଣସି ଗୋଟିଏ ଗଳ୍ପକୁ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ଅନ୍ତର୍ଭୁକ୍ତ କରିବା ଅଙ୍କତାର ପରିଗୃହୀତ । ଯେଉଁ ଗଳ୍ପ ବ୍ୟଙ୍ଗଧର୍ମୀ, ସେଥିରେ ଜଡ଼ିତ ହୋଇ ରହିଛି ତାଙ୍କର ସମାଜ-ସଂସ୍କାରପ୍ରବଣତା, ଯଥା—'ପେଟେଣ୍ଟ ମେଡ଼ସନ୍' । ଯେଉଁ ଗଳ୍ପରେ ସେ ମନସ୍ତତ୍ତ୍ୱର ସୂକ୍ଷ୍ମ ଚିତ୍ର ଅଙ୍କନ କରିବାକୁ ଯାଇଛନ୍ତି, ସେଥିରେ ମଧ୍ୟ ଆତ୍ମପ୍ରକାଶ କରିଛି ତାଙ୍କର ହାସ୍ୟରସିକତା, ଯଥା—'ରେବତୀ' । ଯେଉଁଠାରେ ସେ ପ୍ରତୀକଧର୍ମୀ, ଅର୍ଥାତ୍ ସମଗ୍ର ଗଳ୍ପର ଅନ୍ତରାତ୍ମାରେ ନିହିତ ଅଛି ଲେଖକଙ୍କର ବ୍ୟକ୍ତିତ୍ୱ, ଦୃଷ୍ଟିଭଙ୍ଗୀ ଓ ଜୀବନାଦର୍ଶ, ଯାହା ବାଚ୍ୟାର୍ଥକୁ ଅତିକ୍ରମ କରି ଗୋଟିଏ ବ୍ୟଞ୍ଜନାର୍ଥର ସୂଚନା ଦିଏ, ଯଥା—'ସଭ୍ୟ ଜମିଦାର' ଓ 'ସୁନାବୋହୂ', ସେଥିରେ ମଧ୍ୟ ତାଙ୍କର ବ୍ୟଙ୍ଗ ଓ ବିଦ୍ରୂପ-ପ୍ରବଣତା ପରିସ୍ଫୁଟ । ଅର୍ଥାତ୍, ଫକୀରମୋହନଙ୍କ ପ୍ରତ୍ୟେକ ଗଳ୍ପ ବିଭିନ୍ନ ରସରେ ରସାପ୍ଳୁତ, ଏବଂ ବିଭିନ୍ନ ଘଟନା-ସଂସ୍ଥାନରେ ବୈଚିତ୍ର୍ୟସମ୍ପନ୍ନ । ତାଙ୍କ ଗଳ୍ପରେ ଯେଉଁଠାରେ ହସ, ସେହିଠାରେ କାନ୍ଦ । ହସକାନ୍ଦର ଗଙ୍ଗାଯମୁନା ସଙ୍ଗମରେ 'ରେବତୀ' ଯେପରି ମର୍ମସ୍ପର୍ଶୀ, ରଣ୍ଡିପୁଅ ଅନନ୍ତାର ଆତ୍ମବିସର୍ଜନର ଚିତ୍ର ସେହିପରି ରସାଳ, ମଞ୍ଜୁଳ ଓ ଚିତ୍ତଚମତ୍କାରିକାରୀ ।

ନାଟକରେ ଯେପରି ମହାନୁଭୂତି କିମ୍ବା ଚରମକ୍ଷଣ (climax) ସୃଷ୍ଟି କରାଯାଇଥାଏ, କ୍ଷୁଦ୍ରଗଳ୍ପରେ ସେପରି ଗୋଟିଏ ମହାନୁଭୂତି ଥାଏ । ପାଠକର ଆବେଗ ଓ ଉତ୍କଣ୍ଠା ସେହିଠାରେ ଚରମ ତୀବ୍ରତା ଲାଭ କରେ । ପାଠକର ହୃତ୍ସ୍ପନ୍ଦନ ଜାତହୁଏ ସେହି ଚରମକ୍ଷଣରେ । ତା ପରେ କ୍ରମେ କ୍ରମେ ତାହାର ଉତ୍କଣ୍ଠା ଶିଥିଳ ହୋଇ ଆସେ ଏବଂ ସ୍ୱାଭାବିକ ଗତିରେ କ୍ଷୁଦ୍ରଗଳ୍ପ ତାର ଅନିବାର୍ଯ୍ୟ ପରିଣତି ଲାଭ କରେ । ଏ 'ଚରମମୁହୂର୍ତ୍ତି'ର ଅଭିବ୍ୟକ୍ତି ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପରେ ଅନିନ୍ଦ୍ୟସୁନ୍ଦର ମାଧୁର୍ଯ୍ୟ ଲାଭ କରିଛି । ପାଠକକୁ ଦେଇଛି ମନୁଷ୍ୟଜୀବନର ନୂତନ ସ୍ୱାଦ ଓ ରସ, ନିତାନ୍ତ ପରିଚିତ ଓ ତୁଚ୍ଛାତିତୁଚ୍ଛ ବସ୍ତୁ ମଧ୍ୟରେ ଆଣିଦେଇଛି ଅପରିଚିତର ଦୂରତ୍ୱ, ଅତିକ୍ଷୁଦ୍ର ମଧ୍ୟରେ ସୃଷ୍ଟି କରିଛି ଗୌରବର ଦୀପ୍ତ ଗାରିମା, ବିନ୍ଦୁ ମଧ୍ୟରେ ସୃଷ୍ଟି କରିଛି ସିନ୍ଧୁ, ଏବଂ ନିସ୍ତରଙ୍ଗ ଓ ପ୍ରଶାନ୍ତ ସାଗରବକ୍ଷରେ ସୃଷ୍ଟି କରିଛି ଉଦ୍ବେଳନର ଅସ୍ଥିର ଲହରୀମାଳା । ଏହିଠାରେ ଫକୀରମୋହନ କ୍ଷୁଦ୍ରଗଳ୍ପ-ଶିଳ୍ପରେ ଅତ୍ୟାଧୁନିକତାର କୋଠୀକୁ ପୂର୍ଣ୍ଣ କରିଛନ୍ତି ।

ବାପ ମା ମରିବାର ଆଜକୁ ଛ' ଦିନ । ବାପ ମା ମଲାଦିନରୁ ରେବତୀ ଦାଣ୍ଡକୁଆର ଦେଖିନାଥିଲା । ବାସୁ ବି ନାହିଁ । ଯାଇଛି ହରିହରପୁର ଥାନାକୁ ପିଲାଙ୍କୁ ନେଇ ଡ଼ିପୋଟି ଇନ୍‌ସପେକ୍ଟରଙ୍କ ନିକଟକୁ । କହି ଯାଇଛି ପାଞ୍ଚଦିନ ପରେ ଆସିବ । ବାସୁ ବିଦାୟ ନେବା ସମୟରୁ ରେବତୀର ଜୀବନ ଅନ୍ଧକାରମୟ ହୋଇଯାଇଛି । କିନ୍ତୁ ସେ ଅନ୍ଧକାର ମଧ୍ୟରେ ରେବତୀ ଆଲୋକର କ୍ଷୀଣ ରେଖାର ମଧୁର ସ୍ୱପ୍ନ ଦେଖୁଛି । ପାଞ୍ଚ ଦିନ ତ ଆସି ହୋଇଗଲା—ଆଜି ଛ' ଦିନ, କେଜାଣି ଆଜି ଆବା ବାସୁ ଫେରିବ । ଆଜି ସକାଳୁ ଦାଣ୍ଡ

ଦୁଆରେ ଦୁଇଥର ମୁହଁମାରି ଗଲଣି । ମନରେ ଆଶାର ଚମକ, ହୃଦୟରେ ଆନନ୍ଦର ଉନ୍ମାଦନା । ବାପୁ ଫେରିବ । କିନ୍ତୁ ବେଳ ଅଧାକ ଛ ଘଡ଼ି ବେଳକୁ ହରିହରପୁରରୁ ସ୍କୁଲ୍ ପିଲେ ଫେରିଆସି ଖବର ଦେଲେ ପଣ୍ଡିତେ ଆଉ ନାହାନ୍ତି । ହଇଜାରେ ତାଙ୍କର କାଳ ହୋଇଛି । ଏ ଖବର ବୁଢ଼ୀ ଶୁଣିଲା—ରେବତୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ଅସ୍ଥିର ହୋଇଗଲା । କିନ୍ତୁ ରେବତୀ ସେହିଦିନ ଠାରୁ ହେଲା ମୃତ୍ୟୁପଥର ଯାତ୍ରୀ । ରେବତୀ-ଜୀବନର ସୁଖଦୁଃଖର ଲୀଳାଖେଳା ସେହିଦିନଠାରୁ ଶେଷ ପାଇଛି । ଏହିଠାରେ ହିଁ 'ରେବତୀ' ଗଳ୍ପର ଚରମ ମୁହୂର୍ତ୍ତ । ଏହିଠାରେ ହିଁ ପାଠକର ଚକ୍ଷୁ ଧାରାସ୍ରାବୀ ହୁଏ । କରୁଣରସରେ ଚିତ୍ତ ପ୍ଳାବିତ ହୁଏ । ଚିତ୍ତର ସଂକୋଚ ଅପସରି ଯାଏ । ନିରାଶ୍ରୟ ଓ ନିଃସଙ୍ଗ ରେବତୀ ପ୍ରତି ପ୍ରାଣରେ ଗଭୀର ସମବେଦନା ଜାଗିଉଠେ । ଜଗତର ସକଳ ନିରାଶ, ଦୁଃଖୀ ଓ ଅନାଥ ବାଳକବାଳିକାଙ୍କୁ ଆପଣାର କରିନେଇ ସ୍ନେହର ଗାଢ଼ ଆଲିଙ୍ଗନରେ ସେମାନଙ୍କ ଜୀବନର ଦୁଃଖ ଓ ବେଦନାକୁ ନିଶ୍ଚିହ୍ନ ଓ ନିଃଶେଷ କରିଦେବାକୁ ଇଚ୍ଛା ହୁଏ । ଅପରିଚିତା ରେବତୀ ଆମ ହୃଦୟର ଚିରପରିଚିତା ହୋଇ ଉଠେ । ଯେଉଁ ବେଦନା ଥିଲା ରେବତୀର ବ୍ୟକ୍ତିଗତ, ତାହା ଫକୀରମୋହନଙ୍କ ଲେଖନୀରେ ହେଲା ସାର୍ବଜନୀନ ଓ ସାର୍ବକାଳିକ ।

'ରେବତୀ' ଗଳ୍ପର ପରିସମାପ୍ତି ମଧ୍ୟ ଇଙ୍ଗିତମୟ । ଲେଖକ ଏହି ଗଳ୍ପରେ ପୂର୍ଣ୍ଣଚ୍ଛେଦ କାଟି ଦେଇ ମଧ୍ୟ ନିର୍ଭିନ୍ତ ହୁହନ୍ତି । ପରିସମାପ୍ତି ଗତାନୁଗତିକ ନୁହଁ । ଅତିନାଟକୀୟ ଛଟା କିମ୍ବା ଅପ୍ରତ୍ୟାଶିତ ଆକସ୍ମିକତା ଏହି ଗଳ୍ପର ପରିଣତିରେ ନାହିଁ । ପଡ଼ୋଶୀମାନେ ରାତି ପହରକ ସମୟରେ ବୁଢ଼ୀର ଶେଷ ଶବ୍ଦ

ଶୁଣିଥିଲେ, 'ଲେ ରେବ, ଲେ ନାଅଁ, ଲେ ଚୁଲି'। ଶ୍ୟାମବନ୍ଧୁ ମହାନ୍ତିଙ୍କର ପଡ଼ୋଶୀମାନେ ଅନ୍ତକୁ ହୁଏତ ସତୁରି ଅଶୀ ବର୍ଷ ତଳେ ବୁଢ଼ୀର ଗାଳି ଶେଷଥର ପାଇଁ ରାତି ପହରକ ସମୟରେ ଶୁଣିଥିଲେ। କିନ୍ତୁ ଖାଣ୍ଟି ଓଡ଼ିଆ ପଲ୍ଲୀଜୀବନର ଏହି ସ୍ନେହମିଶ୍ରିତ ଭର୍ତ୍ସନା ସେଦିନ ବୁଢ଼ୀମୁହଁରୁ ସେମାନେ ଯେପରି ଭାବରେ ଶୁଣିଥିଲେ, ଆଜିର 'ଅଧୁନିକ ରୁଚିବାୟୁଗ୍ରସ୍ତ' ପାଠକ ଠିକ୍ ସେହିପରି ଶୁଣିବାକୁ ପାଉଛି। ଏ ଗଳ୍ପ ୧୮୯୮ ମସିହା ଅକ୍ଟୋବର ମାସରେ 'ଉତ୍କଳ-ସାହିତ୍ୟ'ରେ ପ୍ରଥମେ ପ୍ରକାଶ ପାଇଥିଲା। ସେଦିନର ପାଠକ-ଚିତ୍ତରେ ବୁଢ଼ୀର 'ଲେ ରେବତୀ, ଲେ ରେବ' ଇତ୍ୟାଦି ଯେଉଁ ଅନୁରଣନ ସୃଷ୍ଟି କରିଥିଲା, ଆଜିର ପାଠକଚିତ୍ତକୁ ଠିକ୍ ସେହିପରି ଅନୁରଣନରେ ପ୍ରତିଧ୍ୱନିତ କରେ। ଆଜିର ପାଠକ ଏବର ରାଶି ରାଶି କ୍ଷୁଦ୍ରରୁ କ୍ଷୁଦ୍ରତର ଗଳ୍ପମାନ ପଢ଼ି ହୁଏତ ସ୍ତମ୍ଭୀଭୂତ ହୋଇ ମନରେ ଭାବୁଥିବ—ଏପରି ଗଳ୍ପ ଯେ ସୃଷ୍ଟି କରିପାରେ ସେ କେବଳ କ୍ଷୁଦ୍ରଗଳ୍ପର ପ୍ରବର୍ତ୍ତକ ନା ବିକାଶକ! ସେଥିରେ ପୁଣି ମନସ୍ତତ୍ତ୍ୱର ଚିତ୍ର କି ଜୀବନ୍ତ ଓ ବାସ୍ତବାନୁଗ। ଏହା ଫ୍ରଏଡ଼ୀୟ ମନସ୍ତତ୍ତ୍ୱ ନୁହେଁ। ଏଥିରେ ଅସୁସ୍ଥ ମନୋବିକାରର ପ୍ରତିଛବି ନାହିଁ। ଏହା ଫକୀରମୋହନଙ୍କ ସୂକ୍ଷ୍ମ ପର୍ଯ୍ୟବେକ୍ଷଣପ୍ରସୂତ ଓ ନିଗୂଢ଼ ଅନୁଭୂତିଉପଲବ୍ଧ ମନ-ଗହନର ଗୋପନ ଲୀଳା-ସ୍ପନ୍ଦନର ପ୍ରତିଛବି। ଏଥିରେ ଧାର ଉଧାରର କଥା ନାହିଁ। ବୈଦେଶିକ ମନୋବିଜ୍ଞାନର ଅନ୍ଧାନୁସରଣ ନାହିଁ। ରେବତୀର ବୁଢ଼ୀମା ପୁରୁଣାକାଳିଆ ସ୍ତ୍ରୀଲୋକ। ଶିକ୍ଷା ଓ ସଂସ୍କୃତିର ପ୍ରଭାବ ତା ଉପରେ ପଡ଼ି ନାହିଁ। ତେଣୁ ତାର ଏପରି ହାସ୍ୟାସ୍ପଦ ଚିନ୍ତାଧାରା—ତା ଘରେ ଯେତେ କିଛି ଅନିଷ୍ଟ ଘଟିଲା, ସେ ସବୁର ମୂଳକାରଣ ରେବତୀର ପାଠପଢ଼ା। ସାଧାରଣ ମନୁଷ୍ୟ ନିଜର ସୀମିତ ବୁଦ୍ଧିର

କ୍ଷୁଦ୍ର ପରିସର ମଧ୍ୟରେ କାର୍ଯ୍ୟ-କାରଣର ସମ୍ପର୍କ ନିର୍ଣ୍ଣୟ କରେ । ବୁଢ଼ୀଙ୍କ ତା ପୁଅ, ବୋହୂ ଓ ବାସୁର ମୃତ୍ୟୁର କାରଣ ସ୍ୱରୂପ ଦେଖାଗଲା ରେବତୀର ପାଠପଢ଼ା । ବୁଢ଼ୀ ଏହାଠାରୁ ଅଧିକ ଅଧିକ କଣ ଚିନ୍ତା କରି ପାରିଥାନ୍ତା ? ବୁଢ଼ୀ ମନର କଥା ଫକୀରମୋହନ ବୁଝିପାରିଥିଲେ ବୋଲି ଏ ମନସ୍ତାତ୍ତ୍ୱିକ ଚିତ୍ର ଏଠାରେ ଜୀବନ୍ତ ।

ବାସୁଦେବ ଯେଉଁ ଦିନ ବୁଢ଼ୀମା ଓ ରେବତୀଠାରୁ ବିଦାୟ ନେଇ ହରିହରପୁର ଗଲା—ଅସ୍ଫୁଟଯୌବନା ପିତୃମାତୃବିୟୋଗ-କାତର୍ ଏବଂ ସାଂସାରିକ ଜୀବନରେ ଅତି ନିଃସହାୟା ରେବତୀର ସେଦିନର ମନଗହନର ଗୋପନ କଥା କି ଚମତ୍କାର ଭଙ୍ଗୀରେ ବିନ୍ୟସ୍ତ ହୋଇଅଛି ! "ରେବତୀ ଏକଧ୍ୟାନରେ ବାସୁକୁ ଚାହିଁ ରହିଥାଏ, ଆଜିକା ଚାହାଣି ଅନ୍ୟରକମ । ଆଗେ ବାସୁକୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିଲା, ଆଜି ସେ ଭାବ ନାହିଁ, ଏକ ଧ୍ୟାନରେ ବାସୁକୁ ଚାହିଁ ରହିଛି ।" ଆଜି କାହିଁକି ଏହି 'ଏକ ଧ୍ୟାନ' ? ଆଜି ଯେ ସଂସାରରେ ରେବତୀର ବାସୁ ବ୍ୟତୀତ ଉପାୟାନ୍ତର ନାହିଁ—ଆଜି ତାର ଏକମାତ୍ର ସାହା ଭରସାର ସ୍ଥଳ ବାସୁ । ଅଲକ୍ଷିତ ଭାବରେ ସେ ବାସୁଠାରେ ଜୀବନ ସମର୍ପି ଦେଇଛି । ଏହି ନବୀନ ନିସ୍ପନ୍ଦ ଆତ୍ମ-ସମର୍ପଣର ନୀରବ-ଭାଷା ଆଜିକାଲିର ଗଳ୍ପ ସାହିତ୍ୟରେ କାହିଁ ?

କିନ୍ତୁ ରାଣ୍ଡୀପୁଅ ଅନନ୍ତା ଗଳ୍ପର ଚରମ ମୁହୂର୍ତ୍ତ ସୃଷ୍ଟି ହୋଇଛି ଗଳ୍ପର ଶେଷାଂଶରେ । ପାଠକ ତାର ବାଲ୍ୟ ଓ କୈଶୋର ଜୀବନର ଇତିହାସ ପଢ଼ି ଉପଲବ୍ଧି କରେ, ଅନନ୍ତା ମୂର୍ଖ, ଦୁର୍ବୃତ୍ତ, ଅପଦାର୍ଥ, ଅକର୍ମଣ୍ୟ—ନିତାନ୍ତ ଅଧମ—ଅମନୁଷ୍ୟ । କିନ୍ତୁ

ଯେତେବେଳେ ସେ ଗ୍ରାମବାସୀଙ୍କୁ ବନ୍ୟାର ପ୍ରଳୟଙ୍କର ପ୍ରକୋପରୁ ରକ୍ଷା କରିବା ନିମନ୍ତେ ପିଠି ଉଡ଼ାଦେଇ ଛବାଃଃଃାକୁ ପେଲି ଧରି କହିଲା—'ପକାଅ ମାଟି, ପକାଅ ମାଟି', ସେତିକ ବେଳେ ସୃଷ୍ଟି ହେଲା ଗଳ୍ପର ଚରମ ମୁହୂର୍ତ୍ତ । ଅନନ୍ତା ଜୀବନର ଏ ଅଦ୍ଭୁତ ପରିବର୍ତ୍ତନ ଦେଖି ପାଠକର ବିସ୍ମୟ ଓ ଉତ୍କଣ୍ଠା ଚରମ ସୀମାରେ ଉପନୀତ ହୁଏ । ପାଠକ ଭାବି ଅବାକ୍ ହୁଏ—ତେବେ କଣ ପରର ଉପକାର ସାଧନ କରିବା ଯେ କୌଣସି ମନୁଷ୍ୟର ଗୋଟିଏ ଦୁର୍ଦ୍ଦମନୀୟ ସହଜାତ ପ୍ରବୃତ୍ତି ? ପ୍ରତିକୂଳ ଅବସ୍ଥା ମଧ୍ୟରେ ଏହା ଗୁପ୍ତ ହୋଇ ନିର୍ଜୀବପରି ପଡ଼ି ରହିଥାଏ, କିନ୍ତୁ ଅନୁକୂଳ ପରିସ୍ଥିତିର ମଙ୍ଗଳମୟ ଆହ୍ୱାନରେ ଏହା ସତେ ଯେପରି ସଞ୍ଜୀବନୀ ସୁଧା ପାନ କରି ଜାଗ୍ରତ ଓ ସକ୍ରିୟ ହୋଇଉଠେ । ଏ କଣ ଫକୀର-ମୋହନଙ୍କ ମନସ୍ତାତ୍ତ୍ୱିକତାର ଅଢ଼ ଗୋଟିଏ ଦିଗ୍‌ଦର୍ଶକ ସଙ୍କେତ ନୁହେଁ ?

ସମାଜସମସ୍ୟାମୂଳକ ଗଳ୍ପ 'ଶୀରେଇ ବିଶାଳ'ରେ ଫକୀରମୋହନ ତତ୍କାଳୀନ ସମାଜର ଯେଉଁ ସମସ୍ୟା ଉପସ୍ଥାପିତ କରିଛନ୍ତି, ତାହା ଗୋଟିଏ ଅତି ଲଜ୍ଜାଜନକ ବ୍ୟାପାର । ଯେ କୌଣସି ଦେଶ ଏ ଅବାଞ୍ଛିତ ପ୍ରଥାରେ ଅସମ୍ମାନରେ ସଙ୍କୁଚିତ ହେବାର କଥା । ଫକୀରମୋହନଙ୍କ ଜାଗ୍ରତ ଦେଶାତ୍ମବୋଧ ଓ ସ୍ୱଚ୍ଛ ଉଦାର ପ୍ରାଣକୁ ତାହା ପୀଡ଼ିତ କରିଛି । ତାଙ୍କର ଶୁଦ୍ଧ ବ୍ୟକ୍ତିତ୍ୱ ସମ୍ପ୍ରସାରିତ ହୋଇ ସତେ ଯେପରି ଏଥିରେ ଆତ୍ମପ୍ରକାଶ କରିଛି । 'କଂସେଇ' ବାପ ଏଠାରେ ଝିଅକୁ ଟଙ୍କା ଲୋଭରେ ଗାଈ ବଳଦ ପରି ଚଢ଼ାଦାମରେ ବିକି କରିଛି । ପାତ୍ର ଭଲ କି ମନ୍ଦ ସେ ବିଚାର କନ୍ୟାପିତାର ନାହିଁ । ସେ କେବଳ ବୁଝେ ଟଙ୍କା । ତାର କେବଳ ଲୋଡ଼ା 'କନ୍ୟାପୁନା ନଗଦ ହଜାରେ ଟଙ୍କା' । ବଡ଼ଝିଅ ଯୋଡ଼ାକୁ

ବକି କର ସେ ଦୁଇ ହଜାର ପାଇଛୁ । ସାନଝିଅକୁ ବିକ ସେ କାହିଁକି ହଜାରେ ନ ପାଇବ ? ସେ ଦୁହେଁ ବୁଢ଼ା ବର ବାହା ହୋଇଥିଲେ । ଅଳ୍ପଦିନ ମଧ୍ୟରେ ବିଧବା ହେଲେ । ପିତା ପାଟଣ୍ଟଙ୍କର ସେଥିକି ଦୁଃଖ ନାହିଁ । 'ତାଙ୍କ କପାଳରେ ଥିଲା, ସେମାନେ ବିଧବା ହେଲେ ।' ମଧ୍ୟସ୍ଥ ଯେତେ ବୁଝାଇଲେ, ପାଟଣ୍ଟ କୌଣସି କଥାରେ ରାଜି ହେଲେ ନାହିଁ । ଶେଷକୁ ବହୁତ କଷ୍ଟରେ ସାତଶ' ଟଙ୍କା ସାନଝିଅ ପାଇଁ କନ୍ୟାସୁନା ଛିଡ଼ିଲା । କିନ୍ତୁ ଝିଅ କମଳୀ ଏହାର ଠିକ୍ ପ୍ରତିଶୋଧ ନେଇଛୁ ବାପାଙ୍କ ଉପରେ । କମଳୀର ଅମ୍ବା ବାପାଙ୍କର ଏହି ଅର୍ଥଲୋଲୁପତାରେ ଯେଉଁ ବିଦ୍ରୋହାଗ୍ନିରେ ଜଳି ଉଠିଛୁ, ସେ ଅମ୍ବା ଫକୀରମୋହନଙ୍କର । ଫକୀରମୋହନ ଆମ ସମାଜର ଏକ କଳଙ୍କମୟ ଇତିହାସ କମଳୀର ବିବାହରେ ଯେପରି ଲିପିବଦ୍ଧ କରିଯାଇ ଅଛନ୍ତି, ପାଟଣ୍ଟଙ୍କର ଏ ନିର୍ମମ ନିଷ୍ଠୁରତାରେ ଫକୀରମୋହନ 'ଘାଟରେଇ ବିଶାଳ' ଗଳ୍ପରେ ସତେ ଯେପରି ବିପ୍ଳବର ଅଗ୍ନିକଣା ବିଚ୍ଛୁରିତ କରି ଦେଉଅଛନ୍ତି । କମଳୀ ଏଠାରେ ଫକୀରମୋହନଙ୍କ ବୈପ୍ଳବିକ ଅମ୍ବାର ମାନସୀ କନ୍ୟା । ଯେଉଁମାନେ କନ୍ୟାସୁନାର ଶିକାର ହେଉଥିଲେ, ସମାଜର ସେହି ନାରୀଜାତି ହାତରେ ସେ କନ୍ୟାପିତା ପାଇଁ ସମୁଚିତ ଶାସ୍ତିବିଧାନ କରିଛନ୍ତି ।

'ପାଟେଣ୍ଟ ବୋହୂ' ଫକୀରମୋହନଙ୍କର ଆଉ ଗୋଟିଏ ସମାଜସମସ୍ୟାମୂଳକ ଗଳ୍ପ । ଏଥିରେ 'ରେବତୀ' ଗଳ୍ପପରି ନାରୀ-ସମାଜର ରକ୍ଷଣଶୀଳତା କୌଣସି ବେଦନାଦାୟକ ଘଟଣାର ଅନ୍ତରାଳରେ ପ୍ରଚ୍ଛନ୍ନ ହୋଇ ରହି ନାହିଁ । 'ପାଟେଣ୍ଟ ବୋହୂ'ର ନାମକରଣରେ ହିଁ ଅତି ବ୍ୟଙ୍ଗାତ୍ମକଭାବରେ ଏ ଗଳ୍ପର ବିଷୟ-ବସ୍ତୁର ଇଙ୍ଗିତ ସୁସ୍ପଷ୍ଟ । 'ରେବତୀ' ଗଳ୍ପରେ ଗୋଟିଏ ବୁଢ଼ୀ ଥିଲା

ତାଙ୍କର ବ୍ୟଙ୍ଗବିଦ୍ରୂପର ଶିକାର । ଏ ବ୍ୟଙ୍ଗ ପୁଣି କରୁଣ-ରସାଶ୍ରିତ । କିନ୍ତୁ 'ପାଠୋଈ ବୋହୂ'ରେ ଫକୀରମୋହନ ଜଣେ ନିର୍ଭୀକ ସମାଜସଂସ୍କାରକ । ଏ ଗଳ୍ପ କେବଳ ହାସ୍ୟରସରେ ମାଧୁର୍ଯ୍ୟମୟ ନୁହଁ, ଏଥିରେ ଅଛି ଅଶିକ୍ଷିତା କୁଳବଧୂର ନିର୍ବୁଦ୍ଧିତା ଉପରେ ଶାଣିତ ବ୍ୟଙ୍ଗ । ବ୍ୟଙ୍ଗ, ହାସ୍ୟରସ, ବିଦ୍ରୂପ, କୌତୁକ, ରଙ୍ଗ, ରହସ୍ୟ, ତିର୍ଯ୍ୟକ୍ ବାକ୍‌ଭଙ୍ଗୀ ଓ ବକ୍ରୋକ୍ତିର ମଧୁର ସମନ୍ୱୟରେ ଏହାର ଦୀର୍ଘାୟୁତନ ସତ୍ତ୍ୱେ ଏ ଗଳ୍ପଟି ଓଡ଼ିଆ ସାହିତ୍ୟର ଗୋଟିଏ ଅତି ହୃଦ୍ୟ ଓ ଉପଭୋଗ୍ୟ ସାମଗ୍ରୀ । 'ଭକ୍ତିଦାୟିନୀ ସଭା'କୁ ଯେଉଁ ସରସ୍ୱତୀ ଦେଈ 'ଭଗବତୀ ଡାଆଣୀ' ବୋଲି ନିଜ ବିଚକ୍ଷଣ ବୁଦ୍ଧିରେ ଅର୍ଥ କରି, ଘରେ ଏଡ଼େ ବଡ଼ ଗୋଟାଏ ଲଜ୍ଜାଜନକ ଅନର୍ଥ ସୃଷ୍ଟି କରିଦେଲା, ସେଥିରେ ଦୋଷ କାହାର ? ଦୋଷ ତାର ବାପ ମା'ଙ୍କର, ଦୋଷ ସମାଜର, ଦୋଷ ସେହିମାନଙ୍କର ଯେଉଁମାନେ ନାରୀଜାତିକୁ ଗୃହର ଚତୁଷ୍କୋଣରେ ଆବଦ୍ଧ କରି ସେମାନଙ୍କୁ ଶିକ୍ଷାର ଆଲୋକରୁ ବଞ୍ଚିତ କରୁଛନ୍ତି ।

ପ୍ରତୀକଧର୍ମୀ ବା ରୂପକ ହେଲେ ମଧ୍ୟ 'ସୁନାବୋହୂ' ଗୋଟିଏ ଚରିତ୍ରାତ୍ମକ ଗଳ୍ପ । ସେତେବେଳେ ଆମ ସମାଜ ଏକ ସନ୍ଧିକ୍ଷଣରେ ଅବସ୍ଥିତ । ନୂଆ ପୁରୁଣାର ସଂଘର୍ଷର ସମୟ ସେ । ଇଂରେଜୀ ସଭ୍ୟତାର ଆଲୋକ ପୂର୍ଣ୍ଣମାତ୍ରାରେ ଆମ ସମାଜରେ ପ୍ରବେଶ କରି ନାହିଁ । ରକ୍ଷଣଶୀଳତା କିମ୍ବା ପୁରାତନ ରୀତିନୀତି ଲୋପ ପାଇ ନାହିଁ । ନୂଆ ହୋଇ ଆମ ସମାଜରେ ଦେଖା ଗଲେଣି ଗୋଟିଏ ଅଦ୍ଭୁତ ଶ୍ରେଣୀର ଲୋକ । ସେମାନେ ଇଂରାଜୀ ପଢ଼ୁଆ ଟୁଙ୍କିରିଆ । ଏମାନଙ୍କର ଆଭିଜାତ୍ୟ ଓ ଅହଙ୍କାର ବି କମ୍ ନୁହେଁ । ଏମାନେ ଟୁଙ୍କିର ଟୁଙ୍କିରାଣୀ ରଖି ନପାରିଲେ ଚଳି ପାରନ୍ତି ନାହିଁ । ଏମାନେ ଯେତେ ଅଳ୍ପ ଦରମା ପାଆନ୍ତୁ ନା କାହିଁକି,

ଏମାନଙ୍କର ସ୍ତ୍ରୀମାନେ ମନେ କରନ୍ତି ସେମାନେ ପାଅନ୍ତାଣୀ—ବଡ଼ଲୋକଆଣୀ । ଶାଶୁଘରେ କେବଳ ଦାନଗାଡ଼ି ବସିବେ, କୁଟା-ଖିଣ୍ଡିକ ଦାଖଣ୍ଡି କରିବେ ନାହିଁ । ଶିବୁବାବୁ କରଣୀଙ୍କ ସହିତ ନମିର ବାହା ହୋଇଗଲା । ନମି 'ବଡ଼ଲୋକଆଣୀ' । ସେ ଘରର କାମ ପାଇଟି କିଛି କରେ ନାହିଁ । ଶିବୁବାବୁ ପ୍ରଥମେ ପ୍ରଥମେ ସ୍ତ୍ରୀର ଏ ଆଳସ୍ୟ ଓ 'ବଡ଼ଲୋକ' ପ୍ରତି ଦୃଷ୍ଟି ଦେଉନଥିଲେ । କିନ୍ତୁ ଭଉଣୀ ଚମ୍ପା ଭାରି ଚତୁରୀ । ସେ ଭାଇଙ୍କି ବତେଇଦେଲା—ଏ ବୋହୂଟା ଘରେ କିଛି କାମ କରୁ ନାହିଁ । ତାକୁ କାମ କରାଇବାକୁ ହେବ । ନମିର ଚରିତ୍ର ଏଠାରେ ଫକୀରମୋହନ ଅତି ଚମତ୍କାର ଭାବରେ ଚିତ୍ରଣ କରିଅଛନ୍ତି । ଏପରି ଚରିତ୍ର କଥା-ସାହିତ୍ୟରେ ବଡ଼ ବିରଳ ଦେଖିବାକୁ ମିଳେ । ନମିର ମିଛା ଅଯଥା ଅହଙ୍କାର ଅଛି । କିନ୍ତୁ ତା'ଠାରେ ଦୁଷ୍ଟାମି କିମ୍ବା କୂଟକପଟତା ନାହିଁ । ତାକୁ କିଏ କେବଳ ଏତିକି କୁଶିକ୍ଷା ଦେଇଥିଲା—ତୋ ସ୍ୱାମୀ ବଡ଼ଲୋକ । ତୁ ଶାଶୁ ଘରେ କେବଳ ବସି ରହିବୁ । ଏହା ବାପ ମାଙ୍କର କୁଶିକ୍ଷା ହୋଇପାରେ, କିମ୍ବା ସେତେବେଳର ସମାଜର ଦୋଷ ହୋଇ-ପାରେ । କଥାରେ କହନ୍ତି, 'ଦେଖା ଶିଖା ଓଡ଼ିଶା' । କିନ୍ତୁ ଶିବୁ ଭାଇଙ୍କ ସହିତ ଚକ୍ରାନ୍ତ କରି ଚମ୍ପା ସ୍ଥିର କଲା ଏ ବୋହୂକୁ ଘରୁ ବାହାର କରିଦେବ, ଭାଇ ଆଉ ଗୋଟିଏ କନ୍ୟା ବାହା ହେବେ । ଏତିକିରେ ନମିର ଚେତା ପଶିଲା । ତାର ଅଯଥା ଅହମିକା ଅପସାରିତ ହେଲା । ସେ ବର୍ତ୍ତମାନ ବୁଝି ପାରିଲା—ଶାଶୁଘରେ ସମସ୍ତେ ତା ଉପରେ ଅସନ୍ତୁଷ୍ଟ । ନିଜେ ସ୍ୱାମୀ ମଧ୍ୟ ଉଦ୍ବେଗ । ଏ ସ୍ୱାମୀଙ୍କ ପାଦପଦ୍ମ ଛଡ଼ା ତାର ଗତ୍ୟନ୍ତର ନାହିଁ । ନମି ସମସ୍ତଙ୍କ ଗୋଡ଼ତଳେ ପଡ଼ି ପ୍ରତିଜ୍ଞା କଲା—ସେ ଘରର କାମ ପାଇଟି ସବୁ କରିବ । ଗୋଟିଏ ସରଳା ନାରୀର ଚରିତ୍ରର ଏ ପରିବର୍ତ୍ତନ

'ସୁନାବୋହୂ' ଗଳ୍ପଟିକୁ ଓଡ଼ିଆ କ୍ଷୁଦ୍ର ଗଳ୍ପରେ ଅମର କରି ରଖିଛି । ନମି ଚମ୍ପାର ଗୋଡ଼ ଧରିବାକୁ ଗଲାବେଳେ ଫକୀରମୋହନ ଯେଉଁ ଦୃଶ୍ୟ ପାଠକ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି ତାହା ଗୋଟିଏ ଅତି ତୁଚ୍ଛ ଜନସଙ୍କୁ ଗୌରବ ଗରିମାରେ ପ୍ରୋଜ୍ଜ୍ୱଳ କରିଛି । ସେତେବେଳେ ଚମ୍ପା ମୁହଁରେ ଯେଉଁ ଫଳାପ ପ୍ରୟୋଗ କରିଛନ୍ତି, ତାହା ନାଟକୀୟ ଛଟାରେ ବିମଣ୍ଡିତ ହୋଇ କରୁଣରସର ମୂର୍ଚ୍ଛନା ସୃଷ୍ଟି କରିଛି । ସେତେବେଳେ କେବଳ ଚମ୍ପା କାନ୍ଦ ନାହିଁ କି ନମି କାନ୍ଦ ନାହିଁ, ପାଠକର ଚକ୍ଷୁ ମଧ୍ୟ ଅଶ୍ରୁସଜଳ ହୋଇ ଉଠିଛି ।

ଶିବୁବାବୁ କହିଲେ, "ଅଚ୍ଛା ସେ ଏଥର ଚମ୍ପା ଗୋଡ଼ ଧରୁ ।" ଚମ୍ପା ଧାଇଁ ଆସି ବୋହୂକୁ କୁଣ୍ଢାଇ ପକାଇ କହିଲା, 'ନା, ନା, ଯେତେହେଲେ ମୋ ବଡ଼ ଭଉଜ, ମା'ପରି । ମୁଁ ସିନା ତା ଗୋଡ଼ତଳେ ପଡ଼ିବି ।' ସେ ନମିକୁ ଜୁହାରଟିଏ କରି କୁଣ୍ଢେଇ ପକାଇଲା । ନଣନ୍ଦ ଭଉଜ ଦୁହେଁ ଟିକିଏ କନ୍ଦାକନ୍ଦି ହେଲେ । ଚମ୍ପା କାହିଁକି କାନ୍ଦିଲା ? ମାଇପ ସେ କାନ୍ଦିଛି ।

ଗୋଟିଏ କ୍ଷୁଦ୍ର ପରିବାରର ଦୈନନ୍ଦିନ ଜୀବନର ସୁଖଦୁଃଖ, ହସଖେଳର ଏ ଯେଉଁ ଜୀବନ୍ତ ଆଲେଖ୍ୟ ଫକୀରମୋହନ ଏଠାରେ ସୁନିପୁଣ ଚିତ୍ରକର ପରି ଅଙ୍କନ କରିଅଛନ୍ତି, ସେଥିରେ ଆଧୁନିକ ଗଳ୍ପ-ସମାଲୋଚକ ଫକୀରମୋହନଙ୍କ ଉପରେ ଯେଉଁ ଅନାବଶ୍ୟକ ବର୍ଣ୍ଣନାପ୍ରବଣତା ଓ ବହିର୍ମୁଖୀତାର ଦୋଷ ଆରୋପ କରେ, ତାହା ନିତାନ୍ତ ଅକିଞ୍ଚିତ୍କର ନୁହେଁ କି ?

ଫକୀରମୋହନଙ୍କର ଜୀବନଦର୍ଶନ ଓ ଆଦର୍ଶବାଦିତାର ଜ୍ୱଳନ୍ତ ସ୍ୱାକ୍ଷର ବହନ କରିଛି ଦୁଇଟି ଦୀର୍ଘ ଗଳ୍ପ 'ଅଧର୍ମ ବିତ୍ତ' ଓ 'ସଭ୍ୟ ଜମିଦାର' । ରୁଷିଆର ଋଷି, ଔପନ୍ୟାସିକ ଓ ଗାଳ୍ପିକ ଟଲଷ୍ଟୟଙ୍କ ଗଳ୍ପମାଳା ପଢ଼ି ଜଣେ ସମାଲୋଚକ ଏହି

ଗଳ୍ପମାନଙ୍କର ଅନ୍ତରାଳରୁ ତାଙ୍କର ଜୀବନ-ଦର୍ଶନ ଅବଶ୍ୱାର କରିଅଛନ୍ତି । ସେ ଦର୍ଶନ ହେଉଛି, "ଈଶ୍ୱର ପ୍ରେମ ସ୍ୱରୂପ । ତାହାଙ୍କୁ ସନ୍ତୁଷ୍ଟ କରିବାକୁ ହେବ ପ୍ରେମଦ୍ୱାରା । ଏହି ପ୍ରେମକୁ ଜୀବନର ସତ୍ୟ କରି ଗଢ଼ିବାକୁ ହେବ ଦୈନନ୍ଦିନ ସମାଜ-ଜୀବନରେ ମନୁଷ୍ୟ ପ୍ରତି ପ୍ରେମଦ୍ୱାରା । ମନୁଷ୍ୟକୁ ଭଲ ପାଇବା ଏବଂ ମନୁଷ୍ୟର ସେବା କରିବାଦ୍ୱାରା ଈଶ୍ୱରପ୍ରେମ ଓ ଈଶ୍ୱରସେବା ସାଧିତ ହୁଏ ।" ଫକୀରମୋହନଙ୍କ ଜୀବନ-ଦର୍ଶନରେ ମଧ୍ୟ ଟଲଷ୍ଟୟଙ୍କର ଏହି ଆଦର୍ଶ ପ୍ରତିଫଳିତ । ଯେଉଁଠାରେ ସୀମାହୀନ ଅର୍ଥଲୋଲୁପତା, ସେହିଠାରେ ଅନ୍ୟାୟ, ଅପଚାର, ଦୁର୍ନୀତି, କୁଟକାପଟ୍ୟ, ହିଂସା, ଦ୍ୱେଷ ଓ ପରର ଅନିଷ୍ଟସାଧନ କରିବାର ଦୁର୍ବାର ପ୍ରବୃତ୍ତି । 'ଛ ମାଣ ଆଠ ଗୁଣ୍ଠ', 'ମାମୁଁ' ଏପରି କି 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ମଧ୍ୟ ଅର୍ଥଲୋଭର ବିଷମୟ ଫଳ ବର୍ଣ୍ଣିତ ହୋଇ-ଅଛି । 'ଅଧର୍ମ ବିତ୍ତ' ଗଳ୍ପରେ ଗୋଟିଏ ଅଭିନବ ମାର୍ଗରେ ସେହି ଅର୍ଥଲୋଲୁପତାର ପରିଣତି ପ୍ରକଟିତ । ଗଳ୍ପର ଦୀର୍ଘ ଅବତରଣିକାରେ ବ୍ରାହ୍ମଣମାନଙ୍କ କଥାବାର୍ତ୍ତା ମଧ୍ୟରେ ଅର୍ଥଲୋଭୀ ମହାଜନର 'ସାଇଲକପଣିଆ'ର ସୁନ୍ଦର ଚିତ୍ର ଦିଆଯାଇଛି । କୁବେର ସାହୁ ଆଶା କରିଥିଲେ, ସମ୍ବନ୍ଧୀ ଯୁଧିଷ୍ଠିର ସାହୁ ତାଙ୍କ ପୁଅବୋହୂଙ୍କୁ ବହୁ ଭାର ସମ୍ଭାର ଦେଇ ଘରକୁ ପଠାଇବେ । ତାଙ୍କ ମନ ତ ସବୁ ବେଳେ ଅଧର୍ମରେ ବିତ୍ତ ଅର୍ଜନ କରିବାକୁ । ତାଙ୍କ କପାଳରେ ଏତେ ଧନ ଉପଭୋଗ କରିବା କେଉଁଠି ଅଛି ? ଡଙ୍ଗାରେ ଜିନିଷ-ପତ୍ର ସବୁ ବୋଝାଇ ହୋଇ ଆସୁଥିଲା । ସବୁ ମହାନଦୀରେ ବୁଡ଼ିଗଲା । ଏପରି କି ପୁଅ ବୋହୂ ମଧ୍ୟ ବୁଡ଼ି ଯାଇଥିଲେ । ତାଙ୍କ ଭାଗ୍ୟବଳରୁ ସେ ରକ୍ଷା ପାଇଲେ । କୁବେର ସାହୁଙ୍କର ଏ ଅର୍ଥଲିପ୍ସା ଦେଖି ଜଣେ ବ୍ରାହ୍ମଣ ସେ ଦିନ ତିନି ମେଲିଥିଲା—

"ଅଧର୍ମ ବିତ୍ତ ବଢ଼େ ବହୁତ
ଗଲବେଳେ ଯାଏ ମୂଳ ସହିତ ।"

'ସଭ୍ୟ ଜମିଦାର' ଗଳ୍ପରେ ନଈଘୂଅ ପରି ମାଡ଼ି ଆସୁଥିବା ପାଶ୍ଚାତ୍ୟ ସଭ୍ୟତାର କୁପରିଣାମ ବର୍ଣ୍ଣିତ । ଏ ଗଳ୍ପ ଫକୀରମୋହନଙ୍କର ବହିର୍ମୁଖୀ ନୁହେଁ—ଆପାତତଃ ଏପରି ପ୍ରତୀୟମାନ ହେଉଥିଲେ ମଧ୍ୟ ଏହା ଅନ୍ତର୍ମୁଖୀ । ଫକୀରମୋହନଙ୍କ ବ୍ୟକ୍ତିତ୍ୱ, ଆଦର୍ଶନିଷ୍ଠା ଓ ମନନଶୀଳତା ଏଥିରେ ପ୍ରକଟିତ । ଇଂରାଜୀ ଶିକ୍ଷା ଓ ସଭ୍ୟତାରେ ଯେ କେବଳ ଦୋଷ ପୂରି ରହିଛି, ଫକୀରମୋହନ ଏ-ମତର ପୋଷକତା କରି ନାହାନ୍ତି । ଇଂରେଜ ପାଣିକୁଅଙ୍କ ପରି ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ଦୁଃସାହସିକତା ଅବଲମ୍ବନ କରିବାକୁ ସେ ଦେଶବାସୀଙ୍କି ଉଦ୍‌ବୋଧନ ଦେଇଅଛନ୍ତି । କିନ୍ତୁ ଯେଉଁ ଅଳ୍ପ ଶିକ୍ଷିତ ବ୍ୟକ୍ତିମାନେ ଇଂରେଜ ସଭ୍ୟତାର ମର୍ମସ୍ଥଳେ ପ୍ରବେଶ ନକରି କେବଳ ଏହାର ବାହ୍ୟ ଚାକଚକ୍ୟରେ ଅଗ୍ନିରେ ପତଙ୍ଗ ଆକୃଷ୍ଟ ହୋଇ ପଡ଼ିଲା ପରି ପଡ଼ନ୍ତି, ଇଂରେଜ ସଭ୍ୟତାର ଗୁଣ ଗ୍ରହଣ ନକରି, କେବଳ ଦୋଷଗୁଡ଼ିକ ଗ୍ରହଣ କରି 'ସାହେବ' ଓ 'ବାବୁ' ହେବାକୁ ଚାହାନ୍ତି, ସାହେବୀ ଢାଞ୍ଚାରେ ଜୀବନଯାପନ କରି ପିତା-ମାତାମାନଙ୍କୁ ଘୃଣା ଓ ଅବଜ୍ଞା ଚକ୍ଷୁରେ ଦେଖନ୍ତି, ସେମାନେ 'ଅତୋ ଭ୍ରଷ୍ଟଃ ତତୋ ଭ୍ରଷ୍ଟଃ' ହୋଇ କେବଳ ନିଜର ଧ୍ୱଂସକୁ ହିଁ ହାତେ ହାତେ ବରଣ କରି ଆଣନ୍ତି । ଏହି ଗମ୍ଭୀର ଚିନ୍ତାର ଇଙ୍ଗିତ 'ସଭ୍ୟ ଜମିଦାର' ଗଳ୍ପରେ ଅଛି । ସେହି 'ସଭ୍ୟ ଜମିଦାର'ଙ୍କର କି ନୈତିକ ଓ ଅର୍ଥନୈତିକ ଅଧଃପତନ ଘଟିଛି ! ମିଷ୍ଟର ମହାପାତ୍ରଙ୍କର ଅନ୍ତିମ ଦୁର୍ଦ୍ଦଶାର ଚିତ୍ର ଫକୀରମୋହନଙ୍କର ଏହି ଗୋଟିଏ ମାତ୍ର ବାକ୍ୟରେ ଜୀବନ୍ତ—"ପାଞ୍ଚ ଛ' ବର୍ଷ ବାଦେ ଜମିଦାର ବାବୁ ତାଙ୍କ ଶଶୁର ଗାଁରେ ଅସାମରେ ଖାନସମାଗିରି

କାମ କରୁଥିବାର ଦେଶରେ ଶୁଣାଗଲ" । ଯାହାର ଅସ୍ୱନିର୍ଭର-ଶୀଳତା ନାହିଁ, ନିଜର ବଳିଷ୍ଠ ବ୍ୟକ୍ତିତ୍ୱ କିମ୍ବା ଚରିତ୍ରବଳ ନାହିଁ, ଯେ ଅନ୍ୟଦ୍ୱାରା ଗୃହୀତ, ଯାହାର ଦୃଢ଼ ଭିତ୍ତିଭୂମି ନାହିଁ, ଯେ ନିଜର ସର୍ବସ୍ୱ ବଳିଦେଇ ପରପଦଲେହନ କରେ, ତାର ସ୍ୱରୂପ ଲେଖକ ଏହି ଗଳ୍ପରେ ଉଦ୍‌ଘାଟନ କରିଅଛନ୍ତି ।

ଅଧୁନିକ ଗଳ୍ପଲେଖକମାନଙ୍କ ପରି ଫକୀରମୋହନ ଗଳ୍ପ-ମାନଙ୍କର ନାମକରଣରେ ମଧ୍ୟ ଅଧୁନିକତାର ଅଭିମୁଖରେ ସ୍ୱଚ୍ଛନ୍ଦ ଯାତ୍ରା କରିଥିଲେ ପରି ମନେ ହୁଏ । ପାଶ୍ଚାତ୍ୟ ସାହିତ୍ୟରେ ଗଳ୍ପ-ମାନଙ୍କର ନାମକରଣ ଦେଖିଲେ ଅବାକ୍ ହେବାକୁ ପଡ଼େ, ଯଥା— **'The Lift that went down into Hell', 'Birth Mark', 'Twentysix Men and a Girl', 'The Kiss', 'My Father sits in the Dark', 'Nothing Special', 'Ward No. 6', 'Snake of One's own'** ଏବଂ **'The Suicide Club'**, ଏବଂ ବଙ୍ଗୀୟ କ୍ଷୁଦ୍ର ଗଳ୍ପର ନାମ-କରଣରେ ଯେପରି ନାନା ଚମକ ଓ ବୈଚିତ୍ର୍ୟ ଦେଖିବାକୁ ମିଳେ, ଯଥା—'କ୍ଷୁଧିତ ପାଷାଣ', 'ଏକରାତ୍ରି', 'ପ୍ରାଗୈତିହାସିକ', 'ସରୀସୃପ', 'ମୁଖେ ଭାତ', 'ଅଙ୍ଗାର', 'କରାସିଣୀ', 'ବ୍ଲାକ୍ ମାର୍କେଟ' ଓ 'ମୃତ୍ୟୁ-ବାଣ', ଫକୀରମୋହନ ଓଡ଼ିଆ କ୍ଷୁଦ୍ର ଗଳ୍ପର ପ୍ରବର୍ତ୍ତକ ହୋଇ ମଧ୍ୟ ଇଙ୍ଗିତଧର୍ମୀ ନାମକରଣରେ ସେହିପରି ଅପୂର୍ବ କଳ୍ପନାକୁଶଳତାର ପରିଚୟ ଦେଇଅଛନ୍ତି । ଅବଶ୍ୟ ବିଷୟବସ୍ତୁକୁ ଗ୍ରହି ନାମକରଣ । ବର୍ତ୍ତମାନ ଜୀବନରେ ନାନା ଜଟିଳ ସମସ୍ୟା । ସେ ସମସ୍ୟାକୁ ଜଟିଳତର କରି ପକାଉଛି ନାନା ବହିର୍ପ୍ରଭାବ, ଯଥା—ନବାଗତ ଗଣତାନ୍ତ୍ରିକ ଶାସନ, ଅର୍ଥନୈତିକ ଅବ୍ୟବସ୍ଥା, ବ୍ୟକ୍ତିସ୍ୱାତନ୍ତ୍ର୍ୟର ଜାଗରଣ, ରାଜନୈତିକ ଚେତନା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ।

ଫକୀରମୋହନଙ୍କ ଗଳ୍ପରେ ତେଣୁ ଏ ଯୁଗର ସମସ୍ୟାର ଜଟିଳତା ନାହିଁ । ସେ ସରଳ ଓ ନିରାଡ଼ମ୍ବର ଭାବରେ ତାଙ୍କର ଅନୁଭୂତ ଓ ପ୍ରତୀତକୁ କ୍ଷୁଦ୍ର ଗଳ୍ପରେ ରୂପାୟିତ କରିଅଛନ୍ତି । ତଥାପି ମଦ୍ୟପ ଓ ଚରିତ୍ରହୀନ ସ୍ୱାମୀର ଚରିତ୍ର ସଂଶୋଧନ କରିବାକୁ ଯାଇ ସୁଲୋଚନାଙ୍କ ଝାଡ଼ୁଣୀ ପ୍ରହାରକୁ କଳ୍ପନା କରିଛନ୍ତି ଅବ୍ୟର୍ଥ ଔଷଧ ରୂପେ । ତେଣୁ ଗଳ୍ପର ନାମ 'ପେଟେଣ୍ଟ ମେଡ଼ିସିନ୍' । ବିରୋଧରେ ବ୍ୟଙ୍ଗ ସୃଷ୍ଟିକରିବା ଉଦ୍ଦେଶ୍ୟରେ ନିତାନ୍ତ ମୂର୍ଖା ସରସ୍ୱତୀ ଦେଈଙ୍କର ବୋକାମିର ପରିଚୟ ଦେବାକୁ ଯାଇ ଗଳ୍ପର ନାମ ଦେଇଛନ୍ତି 'ପାଠୋଈ ବୋହୂ' । ଘାରେଇ ବିଶାଳର ପୌରୁଷ, କର୍ମଠତା ଓ ଆତ୍ମନିର୍ଭରଶୀଳତାର ଚିତ୍ର ଦେବା ଉଦ୍ଦେଶ୍ୟରେ ଗଳ୍ପର ନାମକରଣ 'ଘାରେଇ ବିଶାଳ' । ଗେରସ୍ତ ସପନା ଓ ଭାରିଯା ଟେମୀ ଏ ଦୁଇଟି ପ୍ରାଣୀ ଏକ ସାଙ୍ଗରେ ଥାନ୍ତି, ଛାଡ଼ବାଡ଼ ନଥାଏ, ଜଣକୁ ନ ପଚାରି ଆଉ ଜଣେ କିଛି ପାଇଟି କରେ ନାହିଁ । ଜଣକ ମନରେ ଦେହରେ ଦୁଃଖ ହେଲେ ଆର ଜଣକ କାନ୍ଦିପକାଏ । ଜଣକୁ ଜର ହେଲା ବୋଲି ଅନ୍ୟ ଜଣକର ଜର ହେଲା । ଦିଜଣଯାକ ଏକାଦିନକେ ମଲେ । ତେଣୁ ଗଳ୍ପର ନାମ 'ବଗୁଲିବଗୁଲୀ' ।

ନାଟକପରି ଆଧୁନିକ ଗଳ୍ପରେ ସଂଳାପ ପ୍ରୟୋଗ ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ । ଗୋଟିଏ ଗୋଟିଏ କ୍ଷୁଦ୍ର ଗଳ୍ପ କେବଳ ସଂଳାପରେ ଆରମ୍ଭ ଏବଂ ସଂଳାପରେ ଶେଷ । ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପ ଏ ସଂଳାପ-ସୌଷ୍ଠବରେ ହୀନ ନୁହେଁ । ଆଜିକାଲି ବାବୁମାନେ ଯେପରି ସାହେବୀ ଠାଣିରେ କଥା କହନ୍ତି, ଅଧା ଇଂରାଜୀ ଓ ଅଧା ଓଡ଼ିଆ ମିଶା କଥା, ସମୟେ ସମୟେ ସେ କଥାବାର୍ତ୍ତାରେ ଅହମିକା, ଅସୌଜନ୍ୟ ଓ ଅଭବ୍ୟତାର ଦୁର୍ଗନ୍ଧ

ପବନରେ ଭାସିଯାଇ ନିର୍ମଳ ବାୟୁମଣ୍ଡଳକୁ କଳୁଷିତ କରେ, ଫକୀରମୋହନଙ୍କ ପାତ୍ରପାତ୍ରୀମାନେ ଯେପରି ଭାବରେ ଯେଉଁଠାରେ କଥାବାର୍ତ୍ତା କରିନାହାନ୍ତି । ସେମାନଙ୍କ ଭିତରୁ ଅନେକ ହୁଏତ ଏ ବିଂଶ ଶତାବ୍ଦୀର ପ୍ରଥମ ଦଶକର ଲୋକ କିମ୍ବା ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧର ଲୋକ । ତଥାପି ସେମାନଙ୍କ ମୁହଁରେ ଫକୀରମୋହନ ଯେଉଁ ଭାଷା ଦେଇଛନ୍ତି, ତାହା କେଡ଼େ ସରସ, କେଡ଼େ ପ୍ରୀତିପ୍ରଦ, କେଡ଼େ ଆବେଦନଶୀଳ ଓ କେଡ଼େ ଗୂଢ଼ାର୍ଥ-ବ୍ୟଞ୍ଜକ ! ଗୋଟିଏ ଦୁଇଟି ଉଦାହରଣ ଦେଲେ ଯଥେଷ୍ଟ ହେବ । 'ରାଣ୍ଡୀପୁଅ ଅନନ୍ତା' ଗଳ୍ପରେ ଅନନ୍ତାର ବାପ ସୁବଳସିଂହ କିପରି ପୁଲିସ ସାହେବଙ୍କର ଅର୍ଦ୍ଦଳି ରୂପେ ନିଯୁକ୍ତ ହେଲା, ତାହା ଫକୀର-ମୋହନ କେବଳ ସଂଳାପ ମାଧ୍ୟମରେ ଦେଇଅଛନ୍ତି । ସାହେବ ପକ୍ଷୀଶିକାର କରୁଥିଲେ । ପକ୍ଷୀଯୋଡ଼ାକ ଯାଇ ପଡ଼ିଲେ ପୋଖରୀ ଭିତରେ । ଆଣୁଛି କିଏ ତାଙ୍କୁ ପାଣିରୁ ? ସୁବଳସିଂହ ମଶାଲ୍ଚୀ ଜଗୁଥିଲା । ହଠାତ୍ ପାଣି ଭିତରକୁ ପଶିଯାଇ ପକ୍ଷୀଦି'ଟା ଆଣି ସାହେବଙ୍କ ପାଖରେ ଥୋଇଦେଲା । ସାହେବ ତା ସାହସ ଓ ଚେହେରା ଦେଖି ଭାରି ଖୁସୀ । ପଚାରିଲେ, 'ତୁମ୍ କୋନ୍ ହେ ?' "ମଣିମା, ମୁଁ ଜମିଦାର ପଲର ସୁବଳ ସେଠ ।" ସାହେବ—'ତୁମ୍ କନଷ୍ଟେବଲ୍ ନୌକର କରେଗା ?' ସେଠିଏ ଟିକିଏ ଗୁମ୍ ମାରି କହିଲେ, "ମୁଁ ଘର ଅଡ଼େ ନବୁଝି କହି ପାରୁ ନାହିଁ ।" ସାହେବ ତା କଥା ବୁଝି ପାରିଲେ ନାହିଁ । ପାଖରେ ଥିବା ଜମାଦାର ସାହେବଙ୍କୁ ଇଂରାଜୀରେ ତର୍ଜମା କରି ବୁଝାଇଦେଲେ—**'Sir, this Guala Mahakurah says, he asks his wife. If she says, he will constable.'** ଏଥିରୁ ସାହେବ ବୁଝିଲେ, **"he knows how to show respect to the fair sex".** ସାଙ୍ଗେ ସାଙ୍ଗେ ହୁକୁମ

ଦେଲେ 'ତୁମ୍ କାଲ୍ ଫଜର ଡେର୍‌କା ପାଶ ହାଜର ହୋ ।'—ନିଯୁକ୍ତିପତ୍ର ମିଳିବାରେ ଆଉ ଡେର ହେଲା ନାହିଁ । ଯୋଗ୍ୟତା ପରିମାପ କରିବାରେ ସେତେବେଳେ ସାହେବମାନେ କି ବିଚକ୍ଷଣ ଥିଲେ !

'ଗାରେଇ ଶିଆଳ' ଗଳ୍ପରେ ଅଛି, କନ୍ୟାମୁନାଲେଞ୍ଜୀ ପାଣେ ଶୁଣି ପାରିଲେ, ତାଙ୍କ ଝିଅ କମଳୀ ଗାଁର ଲେଖାଯୋଖା ଅପି ଅଈଙ୍କ ମନକଥା ଫିଟାଇ କହୁଛି, "ଅଈ, ବାପା ଟଙ୍କାଲୋଭରେ ଗୋଟେ ବୁଢ଼ା ବରକୁ ମୋତେ ଦିଅ ଦେଲେ ମୁଁ ପୋଖରୀକି ଡେଇଁ ପଡ଼ିବି ।" ଅପି ଅଈ ଅସି ବୁଢ଼ାବର ପାଣେଙ୍କୁ ଏକଥା କହିଲା । ପାଣେ ଏକଥା ଶୁଣି ଝିଅକୁ ଗାଳିଦେଇ କହିଲେ, "ମୁଁ ତୋତେ ଚଉଦ ବରଷ କାଳ ଖୁଆଇ ପିଆଇ ବଢ଼ାଇଲି—ଅଜି କଣ ନା ପାଣିକି ଡେଇଁ ପଡ଼ିବୁ ? ମର, ଦେଖେଁ ଭଲା କିମିତି ମରିବୁ ? ଚଉଦ ବରଷ କାଳ ଖାଇଛୁ, ପିଇଛୁ, ଭାତଲୁଗା ଦାମ୍ ପାଞ୍ଚଶ ଟଙ୍କା ଗଣି ଥୋ—ତା ବାଦ୍ ମରିବୁ ତ ମର ଯା, ମୋର ମନା ନାହିଁ ।"

ପିତୃସ୍ନେହର କି ଅପୂର୍ବ ପରାକାଷ୍ଠା ? ଆଧୁନିକ ଯୁଦ୍ଧୋତ୍ତର ଯୁଗର ଯେ କୌଣସି ସାମାଜିକ ନାଟକ ଲେଖକ ଫକୀର-ମୋହନଙ୍କର ଏ ସଂଳାପ ପଢ଼ି ତାଙ୍କ ପ୍ରତି ଈର୍ଷାରେ ଜର୍ଜରିତ ହେବେ ନାହିଁ ତ ? ତେବେ ଫକୀରମୋହନଙ୍କୁ ଅତ୍ୟାଧୁନିକ କ୍ଷୁଦ୍ର ଗଳ୍ପ ଲେଖକ ଗୋଷ୍ଠୀରେ ଅନ୍ତର୍ଭୁକ୍ତ କରିବାକୁ ସମାଲୋଚକ-ମାନଙ୍କର ଆପତ୍ତି କେଉଁଠି ?

ପ୍ରଥମତଃ ଫକୀରମୋହନଙ୍କ ଗଳ୍ପଗୁଡ଼ିକ ବୃତ୍ତାନ୍ତମୂଳୀ, ବିବୃତିପୂର୍ଣ୍ଣ ଏବଂ ଉପନ୍ୟାସଧର୍ମୀ ।

ଦ୍ୱିତୀୟତଃ, ସେ ଇଚ୍ଛା କରିଥିଲେ 'ଗଳ୍ପସଳ୍ପ'ର ୧ମ ଭାଗ ଓ ୨ୟ ଭାଗରେ ଥିବା ଯେ କୌଣସି ଗଳ୍ପକୁ ଅବସର ସମୟରେ ଗୋଟିଏ ଗୋଟିଏ ଉପନ୍ୟାସରେ ପରିଣତ କରିପାରିଥାନ୍ତେ ।

ତୃତୀୟତଃ, ଘଟଣାର ଐକ୍ୟ ଏବଂ ସଂହତିର ଅଭାବ । ନାନା ଅବାନ୍ତର ଓ ଅନାବଶ୍ୟକ ଘଟଣାର ପଲ୍ଲବିତ ବିସ୍ତାରରେ ଗଳ୍ପର ଗତି-ଦ୍ରୁତତା ଖଣ୍ଡିତ ।

ଚତୁର୍ଥତଃ, ରେବତୀ ବ୍ୟତୀତ ଅନ୍ୟ କୌଣସି ଗଳ୍ପର ସମାପ୍ତି ଇଙ୍ଗିତବହ ନୁହେଁ ।

ପଞ୍ଚମତଃ, ଫକୀରମୋହନଙ୍କ ଗଳ୍ପଗୁଡ଼ିକ ତାଙ୍କର ଗୋଟିଏ ଗୋଟିଏ ପୂର୍ବପରିକଳ୍ପିତ ଆଦର୍ଶର ପ୍ରତୀକ ବା ପ୍ରତିନିଧି । ଶିଳ୍ପ-ସୁଲଭ ସ୍ୱଚ୍ଛନ୍ଦତା ଓ ସାବଲୀଳତା ତାଙ୍କ କ୍ଷୁଦ୍ର ଗଳ୍ପରେ ନାହିଁ । ସ୍ୱୀକାର ନକରି ଉପାୟ ନାହିଁ, ତାଙ୍କର ଗଳ୍ପରେ ଅନେକ ଅନାବଶ୍ୟକ ବର୍ଣ୍ଣନା ଅଛି । 'ଅଧର୍ମ ବିତ୍ତ' ଓ 'ସଭ୍ୟ ଜମିଦାର' ଗଳ୍ପ ବିଶେଷଭାବରେ ଏପରି ଅପ୍ରାସଙ୍ଗିକ ଓ ସ୍ଥଳବିଶେଷରେ ଅବାସ୍ତବ ବର୍ଣ୍ଣନାରେ ଭାରାକ୍ରାନ୍ତ । 'Poetic justice' କିମ୍ବା ଦୋଷୀକୁ ଶାସ୍ତିବିଧାନ କରିବା ଏହି କବିଗତ ଧର୍ମର ଅନୁପ୍ରେରଣାରେ ସେ ଅନେକ ଗଳ୍ପରେ ଦୋଷୀ ଓ ପାପୀକୁ ଦଣ୍ଡ ଦେଇଛନ୍ତି । ତାର କାରଣ ସୌନ୍ଦର୍ଯ୍ୟ ଓ ଆନନ୍ଦର ବାତାବରଣ ସୃଷ୍ଟି କରି ସେ ମଙ୍ଗଳର ଇଙ୍ଗିତ ଦେବାକୁ ଲାଳାୟିତ ଥିଲେ । ଯେଉଁମାନେ ତାଙ୍କର ଦୀର୍ଘ ବର୍ଣ୍ଣନା ଉପରେ ଦୋଷାରୋପ କରି କହନ୍ତି, ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପର ଦୁର୍ବଳ ବିନ୍ଦୁ ଏହିଠାରେ, ସେମାନେ ଲେଖକଙ୍କୁ ଦୋଷ ନଦେଇ ଏଥି ନିମନ୍ତେ ଯେଉଁ ସମାଜ, ପରିବେଶ, ଇତିହାସ ଓ ଯୁଗଧର୍ମ ସାହିତ୍ୟିକ ଉପରେ

ପ୍ରଭାବ ଓ ପ୍ରତିପତ୍ତି ବିସ୍ତାର କରେ, ତାହାକୁ ଦୋଷୀରୂପେ ସାବ୍ୟସ୍ତ କରିବା ଉଚିତ । ଫକୀରମୋହନ ନିଜର ପ୍ରକାଶ-ଲାଳସା ପରିତୃପ୍ତ କରିବା ପାଇଁ ଲେଖନୀ ଧାରଣ କରିନଥିଲେ । ସେ ଲେଖୁଥିଲେ ସାଧାରଣ ଲୋକଙ୍କ ପାଇଁ । ସେତେବେଳେ ଏପରି ଜଟିଳ ଓ ସୂକ୍ଷ୍ମ ମନସ୍ତତ୍ତ୍ୱସମ୍ବଳିତ ଅତି କ୍ଷୁଦ୍ରାୟତନ ଗଳ୍ପ-ଲେଖାର ଶୈଳୀ ପ୍ରଚଳିତ ନଥିଲା । ଲେଖିଥିଲେ ମଧ୍ୟ 'ଛ ମାଣ ଆଠ ଗୁଣ୍ଠ' ବର୍ଣ୍ଣିତ ଆସାମୀ ରାମଚନ୍ଦ୍ର ମଙ୍ଗରାଜଙ୍କ ସେସନ୍ କୋର୍ଟ ମକଦ୍ଦମାର ବିବରଣୀ ପଢ଼ି ଯେଉଁ ପାଠକମାନେ ସେ ମକଦ୍ଦମାର ବିଚାରଣା ଦେଖିବାକୁ ସୁଦୂର ମଫସଲରୁ କଟକ ସହରକୁ ଧାଇଁ ଆସିଥିଲେ, ସେମାନେ ତାହା ବୁଝି ପାରିନଥାନ୍ତେ । ତେଣୁ ଅତ୍ୟାଧୁନିକ ଯୁଗର ଅସ୍ପଚରିତମୂଳକ, ମନ୍ଥର, ଭାବନିଷ୍ଠ ଓ ଅତି କ୍ଷୁଦ୍ରଗଳ୍ପ ଲେଖି ସେ ସେତେବେଳର ପାଠକମାନଙ୍କ ଆଗ୍ରହକୁ ଶିଥିଳ କରିଥାନ୍ତେ କାହିଁକି ? ପାଠକ ଓ ଲେଖକଙ୍କ ମଧ୍ୟରେ ବ୍ୟବଧାନ ସୃଷ୍ଟି କରିବା ଫକୀରମୋହନଙ୍କର ଉଦ୍ଦେଶ୍ୟ ନଥିଲା । ତେଣୁ ସେ ପାଠକମାନଙ୍କ କୌତୂହଳକୁ ଉଦ୍ଦୀପିତ କରିବା ନିମନ୍ତେ ସୁଦୀର୍ଘ ଓ ବିସ୍ତାରିତ ପୃଷ୍ଠପଟ ଉପରେ ତାଙ୍କର ଗଳ୍ପଗୁଡ଼ିକ ନିର୍ମାଣ କରିଅଛନ୍ତି । ଏଥିରେ ସମାଜର ଚିତ୍ର ଏବଂ ଲୋକ-ଚରିତ୍ର ପାଠକର ମାନସ-ଚକ୍ଷୁରେ ଅତି ଜୀବନ୍ତ ଓ ବାସ୍ତବ ହୋଇଉଠୁ । 'ବାରେଇ ବିଶାଳ' ଗଳ୍ପରୁ ବାରେଇ ଜୀବନର ଅଦ୍ୟ ଇତିହାସକୁ ବାଦ୍ ଦେଇଦିଅ, ବାରେଇ ଚରିତ୍ରର କ୍ରମ-ବିକାଶର ଧାରା ଅସ୍ପଷ୍ଟ ରହିଯିବ । 'ରାଣ୍ଡୀପୁଅ ଅନନ୍ତା'ରୁ ସିଂହାଣୀର ଦୁରନ୍ତପଣିଆ ଓ କାର୍ଯ୍ୟକଳାପ କାଟଛାଣ୍ଟ କରିଦିଅ, ଅନନ୍ତା ଜୀବନର କୌତୁକପୂର୍ଣ୍ଣ ଇତିହାସ ଅପୂର୍ଣ୍ଣ ରହିବ । 'ରେବତୀ' ଗଳ୍ପରୁ ଶ୍ୟାମବନ୍ଧୁ ମହାନ୍ତିଙ୍କ ଘରର ଠିକଣାଟି ବର୍ଣ୍ଣନାକୁ ପାସୋରି

ଯାଅ, ଗଳ୍ପର କରୁଣ ରସଧାର ଶୁଷ୍କ ହୋଇଯିବ ଏବଂ 'ବଗୁଲା-ବଗୁଲୀ' ଗଳ୍ପରୁ ସପନାର ବାପ ଚୌକିଆ ଭଦଅ ପାତ୍ରର ଦୈନନ୍ଦିନ ଜୀବନର ବିଳମ୍ବିତ ବିବରଣୀକୁ ନିଷ୍କାସନ କରି, ସପନାର ଚରିତ୍ର ଅସ୍ପଷ୍ଟ ଓ ବିକଳାଙ୍ଗ ହୋଇ ରହିବ । ଏ ଦୀର୍ଘ ବର୍ଣ୍ଣନା ମଧ୍ୟରେ ଘଟଣାର ପାରମ୍ପର୍ଯ୍ୟ କିମ୍ବା ସଂହତି ଫକୀରମୋହନଙ୍କ କ୍ଷୁଦ୍ର-ଗଳ୍ପରେ କେଉଁଠି ଖଣ୍ଡିତ ହୋଇ ରହିଛି ? ଗଳ୍ପର ରସବିନ୍ଦୁ କେଉଁଠାରେ ବିକ୍ଷିପ୍ତ କିମ୍ବା ବିଚ୍ଛିନ୍ନ ହୋଇପଡ଼ିଛି ? ଜଣେ ପାଶ୍ଚାତ୍ୟ ଗଳ୍ପଲେଖିକା **(Joan Vatsek)** ତାଙ୍କର ବ୍ୟକ୍ତିଗତ ଅନୁଭୂତି ପ୍ରକାଶ କରି ଲେଖିଥିଲେ—**"Stories can grow slowly in the imagination, almost by themselves from some strong impression."** ଫକୀରମୋହନଙ୍କୁ ଦୋଷ ଦେଇ ଅତ୍ମପ୍ରସାଦ ଲାଭକରିବାର ଅଧିକାରରୁ ଅମ୍ଭମାନଙ୍କୁ ବିମୁକ୍ତ ମିଳୁ । ସେ ଯେଉଁ କ୍ଷୁଦ୍ର-ଗଳ୍ପଗୁଡ଼ିକ ରଚନା କରିଅଛନ୍ତି, ତାହା ତାଙ୍କର ଗଭୀର ପ୍ରତୀତି, ବାସ୍ତବାନୁଗ କଳ୍ପନାବୋଧ ଓ ଅନୁଭୂତିର ରସାଳ ଅଭିବ୍ୟକ୍ତି ମାତ୍ର ।

ଆଧୁନିକ କ୍ଷୁଦ୍ର ଗଳ୍ପର ଏହି ଯେଉଁ କ୍ରମବର୍ଦ୍ଧିଷ୍ଣୁ କ୍ଷୁଦ୍ରତା ଓ କ୍ଷୀଣତା, ତାହାର ହେତୁ ନିର୍ଦ୍ଦେଶ କରି କୁହାଯାଏ, ଆଜିକାଲି ଜୀବନ-ସଂଗ୍ରାମ ବଡ଼ କଠୋର, ପ୍ରତିଯୋଗିତା ବଡ଼ ତୀବ୍ର, ମନୁଷ୍ୟ-ଜୀବନ ବହୁସମସ୍ୟାବିକ୍ଷୁବ୍ଧ । ଏ ଯନ୍ତ୍ରଯୁଗରେ ସବୁ ଦ୍ରୁତଗତିରେ ସଂପନ୍ନ ହେବା ଉଚିତ ଏବଂ 'ବେଗହିଁ ଉନ୍ନତିର ଲକ୍ଷଣ' । ତେଣୁ ଉପନ୍ୟାସ ପଢ଼ୁଛି କିଏ ? କାବ୍ୟ, ମହାକାବ୍ୟ ପଢ଼ିବାକୁ ଧୈର୍ଯ୍ୟ କାହାର ? ଲେଖ କ୍ଷୁଦ୍ର କବିତା ଓ କ୍ଷୁଦ୍ର ଗଳ୍ପ । ଅଳ୍ପ ସମୟ ମଧ୍ୟରେ ପାଠକକୁ ଚିତ୍ତବିନୋଦନ କରିବାର ସୁବିଧା

ଦିଅ । କିନ୍ତୁ ଏ ଯାନ୍ତ୍ରିକ ଓ ବୈଦ୍ୟୁତିକ ବିଜ୍ଞାନଯୁଗ ତ ସବୁ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ସୁବିଧା ଆଣି ଆମ ହାତରେ ଗୁଞ୍ଜି ଦେଉଛି, ଜଡ଼ ପ୍ରକୃତି ତ ଆଜି ମନୁଷ୍ୟର ସେବାଦାସୀ । ଏହାର ଫଳରେ ଯେଉଁ ଦିନ ଧରା ସ୍ୱର୍ଗରେ ପରିଣତ ହେବ, ମନୁଷ୍ୟଜୀବନରୁ ସକଳ ଜଞ୍ଜାଳଜାଲ ଦୂର ହେବ, ନାନା ସମସ୍ୟାରୁ ମୁକ୍ତିଲାଭ କରି ଯେଉଁ ଦିନ ମନୁଷ୍ୟ ଶାନ୍ତି-ସମାହିତ ଚିତ୍ତରେ ମଧୁ ଓ କ୍ଷୀର-ସାଗରରେ ଅବଗାହନ କରିବ, ସେ ଦିନ ପୁଣି ମୁମୂର୍ଷୁ ଓ ଗତାୟୁ ମହାକାବ୍ୟ, ଉପନ୍ୟାସ ଓ ଦୀର୍ଘ ଗଳ୍ପ ନବଜୀବନ ଲାଭ କରି ପାଠକ-ସମାଜରେ ପୁନଃପ୍ରତିଷ୍ଠିତ ହେବ । ସେଦିନ ଫକୀରମୋହନଙ୍କ ପରି ଦୀର୍ଘାୟତନ ଗଳ୍ପ ଲେଖିବାକୁ କାହାର ଦ୍ୱିଧା କିମ୍ବା ସଙ୍କୋଚ ହେବ ନାହିଁ । ଆଧୁନିକ ଶ୍ରେଷ୍ଠ ଗଳ୍ପର କ୍ରମସଙ୍କୁଚିତ କ୍ଷୀଣାୟୁମାନ କଳେବର ଦେଖି ଏହାର ଭବିଷ୍ୟତ୍ ସମ୍ବନ୍ଧରେ ସମାଲୋଚକମାନେ ମଧ୍ୟ ଏବେ ସନ୍ଦିହାନ ହୋଇପଡ଼ିଲେଣି ।

---

# ହାସ୍ୟ ଓ ହାସ୍ୟରସିକତା

(୧୧)

ଫକୀରମୋହନଙ୍କ ହାସ୍ୟରସ ଓଡ଼ିଆସାହିତ୍ୟର ଏକ ପରମ ଉପଭୋଗ୍ୟ ସାମଗ୍ରୀ । ଓଡ଼ିଆ ଜାତିକୁ ସେ ଚିର ହାସ୍ୟମୁଖର କରି ଯାଇଅଛନ୍ତି । ଆନନ୍ଦର ଆଲୋକରେ ସେ ଆମ ସାହିତ୍ୟକୁ ଯେପରି ଉଦ୍ଭାସିତ କରି ଯାଇଅଛନ୍ତି, ସେହିପରି ତାଙ୍କର ସେହି ସରସ ଓ ପ୍ରାଣବନ୍ତ ହାସ୍ୟରସିକତାର ଅନ୍ତରାଳରେ ପାଠକ-ପାଠିକାମାନଙ୍କର ଦୃଷ୍ଟିଭଙ୍ଗୀ ଓ ଚିନ୍ତାଶକ୍ତିର ସଂପ୍ରସାରଣ ଓ ସୁବିକାଶ ନିମନ୍ତେ ନାନା ଉପାଦାନ ଓ ଉପକରଣ ମଧ୍ୟ ସଜ୍ଜିତ କରି ରଖିଯାଇଅଛନ୍ତି । ସେ ଓଡ଼ିଆ ଜାତି ଓ ଓଡ଼ିଶାର ସମାଜକୁ ଯେପରି ଭାବରେ ଦେଖିଥିଲେ, ପରମ୍ପରା ଓ ପ୍ରଗତି ମଧ୍ୟରେ ଯେଉଁ ବ୍ୟବଧାନର ରେଖା ତାଙ୍କ ପ୍ରାଣକୁ ଆନ୍ଦୋଳିତ କରୁଥିଲା, ଏବଂ ସମଗ୍ର ବିଶ୍ୱଜଗତ ନବଜୀବନର ସଞ୍ଜୀବନୀ ସୁଧା ପାନ କରି ତେଜୀୟାନ୍ ଓ ଶକ୍ତିମନ୍ତ ହୋଇ ଉଠୁଥିଲା ବେଳେ ଓଡ଼ିଶାର ସାମାଜିକ ଓ ଜାତୀୟ ଜୀବନରେ ସେ ଯେଉଁ କଳଙ୍କ କିମ୍ବା ଅବର୍ଜନା ଲକ୍ଷ୍ୟ କରିଥିଲେ, ସେଥିରେ ତାଙ୍କର ପ୍ରାଣ ବେଦନାରେ ବ୍ୟଥିତ ହୋଇ ଉଠିଥିଲା । ସେହି ସଂବେଦନା ଏବଂ ନିଜ ଜାତି ଓ ସମାଜର ସେହି ଗ୍ଲାନି ଓ ଦୁର୍ବଳତା ତାଙ୍କ ମନକୁ ଏପରି ବିକ୍ଷୋଭିତ ଓ ଅସ୍ଥିର କରିଥିଲା ଯେ, ସେ ଏହି ଜାତୀୟ ଦୋଷ ଦୁର୍ବଳତା ଉପନ୍ୟାସ, ଗଳ୍ପ,

ଏପରି କି ତାଙ୍କ କବିତା ଓ କାବ୍ୟମାନଙ୍କରେ ପ୍ରକାଶ ନକରି ରହିପାରିନଥିଲେ ।

ଇଚ୍ଛା କରିଥିଲେ, ଦେବଦେବୀମାନଙ୍କଠାରେ ସେତେବେଳେ ଅଶିକ୍ଷିତ ଲୋକମାନଙ୍କର ଯେଉଁ ଅନ୍ଧ ଧର୍ମବିଶ୍ୱାସ, ଧୂଳିଅଦାବାଙ୍କ ପରି ଭଣ୍ଡ ସାଧୁ ସନ୍ନ୍ୟାସୀମାନଙ୍କଠାରେ ସେମାନଙ୍କର ଯେଉଁ ଅଚଳା ଭକ୍ତି, ଧନୀଲୋକମାନଙ୍କର ଅର୍ଥଲୋଲୁପତା ଓ ଶୋଷଣ ନୀତି, ସ୍ତ୍ରୀଶିକ୍ଷା ବିରୁଦ୍ଧରେ ଲୋକଙ୍କର ରକ୍ଷଣଶୀଳ ମନୋଭାବ, ବ୍ରାହ୍ମଣ ଜାତିର ନୈତିକ ଅଧଃପତନ, ଇଂରେଜୀ ସଭ୍ୟତାର ଅନ୍ଧ ଅନୁକରଣ, ପିତାମାତାଙ୍କ ପ୍ରତି ଇଂରାଜୀଶିକ୍ଷିତ ଯୁବକମାନଙ୍କର ଅଭକ୍ତି ଓ ଅବଜ୍ଞା—ଏ ସକଳ ସାମାଜିକ ଅନ୍ୟାୟ ଓ ଅପଚାର ବିରୁଦ୍ଧରେ କଠୋର କ୍ରୂରପୂର୍ଣ୍ଣ ତୀବ୍ର ସମାଲୋଚନାମୂଳକ ସନ୍ଦର୍ଭ ଲେଖି-ପାରିଥାନ୍ତେ, ବ୍ୟଙ୍ଗ ଓ ବିଦ୍ରୂପୋକ୍ତିରେ ଏହି ଅନାଚାରଗ୍ରସ୍ତ ଲୋକମାନଙ୍କ ପ୍ରାଣକୁ କ୍ଷତବିକ୍ଷତ କରିପାରିଥାନ୍ତେ । କିନ୍ତୁ ଫକୀର-ମୋହନ ତା କରି ନାହାନ୍ତି । 'ଛ ମାଣ ଅଠ ଗୁଣ୍ଠ', 'ମାମୁଁ', ଏପରି କି ଗାମ୍ଭୀର୍ଯ୍ୟପୂର୍ଣ୍ଣ 'ପ୍ରାୟଶ୍ଚିତ୍ତ' ଉପନ୍ୟାସ ମଧ୍ୟରେ ବି ସମାଜର ନାନା କୁସଂସ୍କାରର ରୂପ ଲେଖକ ଜୀବନ୍ତଭାବରେ ଚିତ୍ରଣ କରି-ଅଛନ୍ତି । ନାନା ଲୋକଙ୍କ ଚରିତ୍ରର କଳଙ୍କ-କାଳିମାମୟ ଦାଗ ଉପରେ ଆଲୋକ ସମ୍ପାତ କରିଅଛନ୍ତି, ବୁଦ୍ଧିହୀନର ନିର୍ବୁଦ୍ଧିତାକୁ ଅତି ପରିଷ୍କାର ଭାବରେ ଉଦ୍‌ଘାଟିତ କରିଅଛନ୍ତି ଏବଂ ନୀତିହୀନର ଅନୈତିକତାକୁ ଜନ-ସମାଜରେ ନିନ୍ଦିତ କରିଅଛନ୍ତି । କିନ୍ତୁ କାହାରି ଉପରେ ରାଗ ନାହିଁ, ଈର୍ଷା ନାହିଁ, କ୍ରୋଧ ନାହିଁ, ନିଜର ଅସ୍ମିବଡ଼ିମା ଓ ଶ୍ରେଷ୍ଠତ୍ୱ-ବୁଦ୍ଧିରେ କାହାରି ନ୍ୟୁନତା ସେ ପ୍ରତିପାଦନ କରି ନାହାନ୍ତି । ସମାଜର ଏ ସବୁ ଅନାଚାର, ଅପଚାର ଓ ଦୁର୍ଗତି ଦେଖି ଫକୀରମୋହନ ଯେ ନିଜେ ହସିଛନ୍ତି, ତାହା ନୁହେଁ, ସମାଜର ଏହି

ନାନା ଦୋଷଦୁର୍ବଳତା ଦେଖି ସେ ଲଜ୍ଜିତ ହୋଇଅଛନ୍ତି, ଦାରୁଣ ମର୍ମପୀଡ଼ା ଅନୁଭବ କରିଅଛନ୍ତି । ସମୟେ ସମୟେ ଲୋକଙ୍କର ଏ ଦୁର୍ବୁଦ୍ଧିତା ଓ ନୀତିହୀନତା ଦେଖି ସେ ଗୋପନରେ ନୀରବ ଅଶ୍ରୁ ମୋଚନ କରିଅଛନ୍ତି । ତାଙ୍କର କୋମଳ କବିପ୍ରାଣ ସମାଜର ଏ ଅଧୋଗତି ଦେଖି ସମବେଦନାରେ ସ୍ପନ୍ଦିତ ହୋଇ ଉଠିଛି । ନିରୀହ ଓ ନିଃସହାୟ ଲୋକ ଉପରେ ନିର୍ମମ ନିଷ୍ଠୁରର କ୍ରୂରପୀଡ଼ନ ଦେଖି ତାଙ୍କର ଅନ୍ତରାତ୍ମା ହାହାକାର କରି ଉଠିଛି । କିନ୍ତୁ, ଅତି ଆଶ୍ଚର୍ଯ୍ୟର ବିଷୟ, ଫକୀରମୋହନ ଯେଉଁଠାରେ ବେଶୀ କାନ୍ଦିଛନ୍ତି, ଓ ପାଠକପାଠିକାମାନଙ୍କୁ କନ୍ଦାଇଛନ୍ତି, ସେହିଠାରେ ତାଙ୍କର ହାସ୍ୟରସର ମନ୍ଦାକିନୀ ଛୁଟିଛି ଅବାରିତ ଗତିରେ । ସେହିଠାରେ ସୃଷ୍ଟି ହୋଇଛି ଆନନ୍ଦର ଅଫୁରନ୍ତ ଉତ୍ସ । ଫକୀରମୋହନଙ୍କର ଏ ମାନସଭଙ୍ଗୀ **(Attitude of mind)** ସମାଲୋଚକର ବିଶ୍ଳେଷଣରେ ଧରିଛୁଅଁ . ଦେବାର ଉପାଦାନ ନୁହଁ । ଏହା ଫକୀରମୋହନଙ୍କ ବହୁମୁଖୀ ବ୍ୟକ୍ତିତ୍ୱର ସାବଲୀଳ ବହିଃପ୍ରକାଶ । ଏ ବହିଃପ୍ରକାଶର ସରସତା ଦେଖି ଆମେ ବିମୁଗ୍ଧ—ଲେଖକଙ୍କର ହାସ୍ୟରସର ଏ ସୁଚତୁର ବିନ୍ୟାସ ଓ ପରିପାଟୀ ଦେଖି ଆମେ ହୁଏତ କହିଦେଇପାରୁ 'ଫକୀରମୋହନ ରଙ୍ଗେଇ ରସେଇ କଥା କହିବାକୁ ଭଲ ପାନ୍ତି', ଏବଂ ଫକୀରମୋହନ ନାନା କୌଶଳ ଅବଲମ୍ବନ କରି ତାଙ୍କ କଥାସାହିତ୍ୟକୁ ହାସ୍ୟରସର କଳରବରେ ମୁଖରିତ କରିଅଛନ୍ତି, ଯଥା—(୧) ବହୁଦିନରୁ ଲୋକମୁଖରେ ପ୍ରଚଳିତ ନାନା ଚଗଡ଼ମାଳ ସ୍ଥଳବିଶେଷରେ ପ୍ରୟୋଗ କରି, (୨) ସଂସ୍କୃତ ଶ୍ଲୋକମାନଙ୍କର ଅର୍ଥକୁ ବିକୃତ କରି, (୩) ଯେଉଁ ଘଟନା ସବୁ ବର୍ଣ୍ଣନା କଲେ ଲୋକେ ହସିବେ, ତାର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଦେଇ, (୪) ବୋକା, ବୋକୀ, ନୁଣ୍ଡା, ନୁଣ୍ଡୀ ଓ ମୂର୍ଖଲୋକ-

ମାନଙ୍କର ମୂର୍ଖତା ଓ ବୋକାମିର ପ୍ରାଞ୍ଜଳ ଚିତ୍ର ଅଙ୍କନ କରି, (୫) ନାରୀର ରୂପ ବର୍ଣ୍ଣନାରେ ଭର୍ତ୍ତୃହରି କିମ୍ବା କାଳିଦାସଙ୍କ କାବ୍ୟର ଅନୁକରଣରେ ନିଜର ରଙ୍ଗରସିକତା ପ୍ରଦର୍ଶନ କରି, (୬) ଚିନ୍ତା ଓ କର୍ମ ମଧ୍ୟରେ ବିରୋଧର ଚିତ୍ର ଅଙ୍କନ କରି, (୭) ନିଜକୁ ଅତି ବୁଦ୍ଧିମାନ୍ ଲୋକ ବୋଲି ମନେ କରୁଥିବା ବ୍ୟକ୍ତି, ଯଥା—ରାମଚନ୍ଦ୍ର ମଙ୍ଗରାଜ, ନାଜର ନଟବର ଦାସ, ସଦାନନ୍ଦ, ରାଜୀବଲୋଚନ ପ୍ରଭୃତିଙ୍କ କାର୍ଯ୍ୟକଳାପର ଅଯୌକ୍ତିକତା ଓ ଅସମୀଚୀନତା ପରିସ୍ଫୁଟ କରି, (୮) ଗୌଣ ଚରିତ୍ର ତଥା ମୁଖ୍ୟ ଚରିତ୍ରମାନଙ୍କୁ ଅମୂଳଚୂଳ ଉପହାସର ଗୋଟିଏ ଗୋଟିଏ ମୂର୍ତ୍ତି ବିଗ୍ରହ ରୂପେ ଚିତ୍ର କରି ଏବଂ (୯) ସ୍ଥଳବିଶେଷରେ ଘଟଣାର ଉପଯୋଗୀ ହେବା ନିମନ୍ତେ ପ୍ରେମୋଦ୍ଦୀପକ ଓ ଭକ୍ତିମୂଳକ ସଙ୍ଗୀତ ରଚନା କରି ।

କିନ୍ତୁ ହାସ୍ୟରସର ଏତେ ବିପୁଳ ସ୍ରମ୍ଭାର ଯେ ଫକୀରମୋହନ ଅମପାଇଁ କାଳକାଳକୁ ଓଡ଼ିଆ ସାହିତ୍ୟର ଗନ୍ଥାଘରେ ସାଇତି ରଖି ଯାଇଅଛନ୍ତି, ନିକଟ ଭବିଷ୍ୟତରେ ଯାହାର ମ୍ଳାନି ନାହିଁ, ଯାହାକୁ ଅତ୍ୟାଧୁନିକ ଯୁଗର ହାସ୍ୟରସିକମାନେ ସହଜରେ ଅତିକ୍ରମ କରିପାରିବେ ନାହିଁ, କିମ୍ବା ଯେଉଁ ନିର୍ମଳ ହାସ୍ୟରସ ସୃଷ୍ଟି କରିବାର ମୌଳିକ ପ୍ରତିଭା ଆମ ଭିତରେ ବର୍ତ୍ତମାନ ସେପରି କାହାର ନାହିଁ କହିଲେ ଚଳେ (କାରଣ ଫକୀରମୋହନଙ୍କ ପରି ସମ୍ବେଦନଶୀଳତା ଓ ମାନବିକତା ଆମର ଅଛି କି ନାହିଁ ସନ୍ଦେହ), ବ୍ୟାସକବିଙ୍କ ହାସ୍ୟରସର ସେହି ଅଜସ୍ର, ଅବିଶ୍ରାନ୍ତ, ଅଫୁରନ୍ତ ପ୍ରବାହର ଉଦ୍ଦେଶ୍ୟ କଣ ପାଠକ ପାଠିକାମାନଙ୍କର କେବଳ ଦନ୍ତ-ରୁଚି-କୌମୁଦୀର ବିକାଶ ? ଫକୀରମୋହନଙ୍କର ହାସ୍ୟରସ ସ୍ୱଚ୍ଛନ୍ଦ ଓ ସାବଲୀଳ—କିନ୍ତୁ ତାହା ଉଦ୍ଦେଶ୍ୟ-ନିରପେକ୍ଷ ନୁହଁ ।

ସାହିତ୍ୟ କେବଳ ଆନନ୍ଦ ପରିବେଷଣ କରେ ନାହିଁ । ଆନନ୍ଦ ଦାନ ଓ ସୌନ୍ଦର୍ଯ୍ୟ ସୃଷ୍ଟି ସାହିତ୍ୟର ପ୍ରାଣ । କିନ୍ତୁ ସେ ପ୍ରାଣର ଅନ୍ତରାଳରେ ଥାଏ ସତ୍ୟ, ଶିବ ଓ ସୁନ୍ଦରର ମଧୁରମୋହନ ଇଙ୍ଗିତ । ଫକୀରମୋହନ ଲୋକଙ୍କର ଦୁର୍ଗତି ଓ ଦୁର୍ଦ୍ଦଶା ଦେଖି କାନ୍ଦିଛନ୍ତି । ଏ ବେଦନାବୋଧ କିମ୍ବା ଦୁଃଖାନୁଭୂତି ତାଙ୍କ ପ୍ରାଣର ସରସତା ନଷ୍ଟ କରି ନାହିଁ, ତାଙ୍କ ମନୋଭଙ୍ଗୀକୁ ତିକ୍ତ କରି ପାରି ନାହିଁ, କାହା ପ୍ରତି ତାଙ୍କର ଘୃଣାର ଉଦ୍ରେକ କରି ନାହିଁ । ତାଙ୍କର କ୍ଷମା-ସୁନ୍ଦର ଶିଳ୍ପୀମନ ଏ ସକଳ ଦୁର୍ବିନୀତ, ଦୁର୍ଗତିଗ୍ରସ୍ତ ଓ ଅପରାଧଲିପ୍ତ ଲୋକଙ୍କର ପାପର କଳଙ୍କକାଳିମାକୁ କ୍ଷମା-ସାଗରରେ ବୁଡ଼ାଇ ଦେଇ ତାଙ୍କୁ ନୂତନ ଜୀବନରେ ସଞ୍ଜୀବିତ କରିବାକୁ ପ୍ରୟାସୀ ହୋଇଅଛି । ଫକୀରମୋହନ ଆମ ସମାଜର ଏହି ସବୁ ସ୍ଖଳନ, ଅନାଚାର ଓ ଦୁର୍ଗତି ଦେଖି ବ୍ୟଥିତ ହେଉଥିଲେ ବୋଲି ଆମେ ତାଙ୍କୁ ଦୁଃଖବାଦୀ ବୋଲି କହି ପାରିବା ନାହିଁ । ଫକୀର-ମୋହନ ହୁଏତ ବୁଝିଥିଲେ, ଏ ଦୁଃଖ ଦେଖି ନିରାଶ ହେବାର କୌଣସି କାରଣ ନାହିଁ, ଆନନ୍ଦରେ ଏ ସଂସାର ପୂର୍ଣ୍ଣ—ଏହାର ଉତ୍ପତ୍ତି ଆନନ୍ଦରୁ, ଏହାର ପରିଣତି ଆନନ୍ଦରେ । ନିଜେ ଦୁଃଖ ଓ ପୀଡ଼ା ଅନୁଭବ କରୁଅଛନ୍ତି ବୋଲି ଅନ୍ୟ କାହାର ମନରେ ପୀଡ଼ା ଦେବା ଉଚିତ ନୁହେଁ, ଏହାହିଁ ଥିଲା ତାଙ୍କର ନୀତି । ସେ ପାପକୁ ଘୃଣା କରିଛନ୍ତି, ପାପୀକୁ କେଉଁଠାରେ ଘୃଣା କରି ନାହାନ୍ତି । ତେଣୁ ତାଙ୍କର ହାସ୍ୟରସ ପାଠକ ମନରେ ଯୁଗପତ୍ ଦୁଇଟି ପ୍ରତିକ୍ରିୟା ସୃଷ୍ଟିକରେ—ସେ ଆନନ୍ଦରେ ଗଦ୍‌ଗଦ୍ ହୁଏ, ହସି ହସି ତା ପେଟ ଫାଟିଯାଏ । ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସ ପଢ଼ିଲାବେଳେ ସେ ଦୁଃଖ ଶୋକ ଭୁଲିଯାଏ । ବନ୍ଧୁବାନ୍ଧବ, ପୁତ୍ର-କନ୍ୟା ଓ ଆତ୍ମୀୟ ସ୍ୱଜନମାନଙ୍କ ସହିତ ଅକୁଣ୍ଠ ହାସ୍ୟରସ ଆସ୍ୱାଦନ

କରେ, କିନ୍ତୁ ପରମୁହୂର୍ତ୍ତରେ, ଅର୍ଥାତ୍ ଆନନ୍ଦର ଏ ଉଦ୍ଦାମ ଗତି ଟିକିଏ ଶିଥିଳ ହୋଇ ପଡ଼ିଲେ, ସେ ଦୀର୍ଘନିଃଶ୍ୱାସ ଛାଡ଼ି ଭାବେ—ଆମେ କିଣ ଏସ୍ପା ! ଆମ ସମାଜ କିଣ ଏତେ ନୀଚରେ ! ଆମ ବଡ଼ଲୋକମାନେ ଏହିପରି ଅର୍ଥ-ପିଶାଚ ! ଆମ ଇଂରାଜୀ ପଢ଼ୁଆ ବାବୁମାନେ ଏତେ ନୈତିକତାହୀନ ! ଆମ ସମାଜର ଲୋକମାନେ ଏତେ ମୂର୍ଖ ! ଫକୀରମୋହନଙ୍କ ସମାଜସଂସ୍କାର-ପ୍ରୟାସ ଏହି ହାସ୍ୟରସର ଆବରଣ ତଳେ ସୁସ୍ପଷ୍ଟ । ଲୋକଙ୍କୁ ହସାଇବାରେ ଫକୀରମୋହନଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଏହିଠାରେ ନିହିତ ।

ଅତ୍ୟାଧୁନିକ ଯୁଗର ଗୋଟିଏ ବ୍ୟଙ୍ଗ କବିତାରୁ କେତୋଟି ପଂକ୍ତି ଉଦ୍ଧାର କରି ଫକୀରମୋହନଙ୍କ ହାସ୍ୟରସର ତାତ୍ପର୍ଯ୍ୟ ଆଲୋଚନା କରାଯାଇପାରେ । ଆମ ସାହିତ୍ୟରେ ହାସ୍ୟରସର ଗୋଟିଏ ପରମ୍ପରା ବି ଅଛି । ବଳରାମଦାସଙ୍କ 'କଳଶା' ଚଉତିଶାଠାରୁ ଆରମ୍ଭ କରି ଶକ୍ତିମାନ୍ ଲେଖକ ଓ କବି ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ବ୍ୟଙ୍ଗରଚନା ପର୍ଯ୍ୟନ୍ତ ଏ ପରମ୍ପରାର ବାହକ । ରାଧାନାଥଙ୍କ ପୂର୍ବରୁ ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' କିମ୍ବା ଯଦୁମଣିଙ୍କ ରହସ୍ୟପୂର୍ଣ୍ଣ ଉକ୍ତିମାନଙ୍କରେ ଯେଉଁ ହାସ୍ୟରସର ନିଦର୍ଶନ ମିଳେ, ତାହା ମାର୍ଜିତ ରୁଚିସମ୍ପନ୍ନ ନୁହେଁ—ହୁଏତ ଶୃଙ୍ଗାର-ରସାତ୍ମକ କିମ୍ବା ଅତି ଲଘୁ ଧରଣର କୌତୁକ ଓ ପରିହାସ । ରାଧାନାଥଙ୍କ 'ଦରବାର'ରେ ଯେଉଁ ହାସ୍ୟରସ ଦେଖାଯାଏ, ତାହା ବ୍ୟଙ୍ଗ ଓ ବିଦ୍ରୂପାତ୍ମକ । ଉପାଧିଲାଳସାଗ୍ରସ୍ତ ଲୋକମାନଙ୍କ ଉପରେ ସତେ ଯେପରି ରାଧାନାଥ କଠୋର ନହେଲେ ମଧ୍ୟ ମୃଦୁ 'ଗୁରୁକାଘାତ' କରିଅଛନ୍ତି । ଏ ଯୁଗରେ ମଧ୍ୟ ସେ ହାସ୍ୟରସର କୌଣସି ମୂଲ୍ୟ ନାହିଁ, କାରଣ ସେ ପରିସ୍ଥିତି

ନାହିଁ । କିନ୍ତୁ ଫକୀରମୋହନଙ୍କ ହାସ୍ୟରସ ଚିରନ୍ତନ ସମ୍ପଦରେ ସମୃଦ୍ଧ । ସେତେବେଳେ ସମାଜର ଯେଉଁ ଅବସ୍ଥା ଥିଲା ତାହା ହୁଏତ ବର୍ତ୍ତମାନ ନାହିଁ । ଏ ପ୍ରଗତିଶୀଳ ସମାଜରେ କେତେ ଅଦ୍ଭୁତ ପରିବର୍ତ୍ତନ ଦେଖାଗଲାଣି । ଆଜି ବର୍ତ୍ତମାନ ସରସ୍ୱତୀ ଦେଈ ନାହାନ୍ତି କି 'ଭକ୍ତିଦାୟିନୀ' ସଭା ନାହିଁ । 'ଭକ୍ତିଦାୟିନୀ' ସଭାକୁ ନାରୀ ଯେତେ ଅଶିକ୍ଷିତା ହେଲେ ମଧ୍ୟ ଆଜି କଦାପି କହିବ ନାହିଁ 'ଭଗବତୀ ଡାଆଣୀ' । ମଦନବାବୁଙ୍କ ପରି ଶିକ୍ଷିତ ଯୁବକର ନିଜ ସ୍ତ୍ରୀର ଲଜ୍ଜାଶୀଳତା ଦୂର କରିବା ନିମନ୍ତେ ଆଜି 'ଗାରୁଡ଼ମନ୍ତ୍ର'ର ଆବଶ୍ୟକତା ନାହିଁ । କାରଣ ଏବେ ବୋହୂ ଶାଶୁଘରକୁ ଯେଉଁ ଗାରୁଡ଼ମନ୍ତ୍ର ସାଙ୍ଗରେ ନେଇ ଆସୁଛି ସେଥିରେ ସ୍ୱାମୀ ବଶୀଭୂତ, ଶାଶୁ ଶ୍ୱଶୁର ଯୋଡ଼ହସ୍ତ ଏବଂ ଗୃହ-ସଂସାର କଣ୍ଟିଳ ଜାଲରେ ସମାକୀର୍ଣ୍ଣ । ତଥାପି ଫକୀରମୋହନଙ୍କର ସେ ସବୁ ଗଳ୍ପ ଉପନ୍ୟାସ ପଢ଼ିଲେ ମାର୍ଜିତରୁଚିସମ୍ପନ୍ନ, ଉଚ୍ଚଶିକ୍ଷାଭିମାନୀ ଏବଂ ଜ୍ଞାନଗରିମା-ଦୃପ୍ତ ଏ ଯୁଗର ବିତର୍କପ୍ରିୟ ପାଠକ ହସେ କାହିଁକି ? ହସେ ଏଇଥିପାଇଁ,—"ସାହିତ୍ୟିକର ପ୍ରକୃତି ଅନୁସାରେ ହାସ୍ୟରସର ରଙ୍ଗ ବଦଳେ । ଯେଉଁମାନେ ମାନବ ସାଧାରଣକୁ ଉପେକ୍ଷା କରିଅଛନ୍ତି, ଘୃଣା କରିଅଛନ୍ତି, ସେମାନଙ୍କର ହସ ବିଦ୍ରୂପର ହସ । ଯେଉଁମାନେ ମନୁଷ୍ୟକୁ ସ୍ନେହ-ଦୃଷ୍ଟିରେ ଦେଖିଅଛନ୍ତି, ସେମାନେ ବୁଝିଛନ୍ତି ମନୁଷ୍ୟ ତ ଭୁଲ ଓ ଅନ୍ୟାୟ କରିବ ହିଁ କରିବ । କାରଣ ସେ ରକ୍ତମାଂସରେ ଗଢ଼ା ମନୁଷ୍ୟ, ସେ ମର୍ମର ପଥରରେ ଗଢ଼ା ଦେବତା ନୁହଁ । ତାହାର ଭ୍ରାନ୍ତି ଓ ଅନ୍ୟାୟର ସହିତ ଜଡ଼ିତ ହୋଇ ରହିଛି ତାହାର ଆକାଂକ୍ଷା, ତାହାର ଅନୁଭୂତି, ତାହା ଜୀବନର ସମସ୍ତ ମାଧୁର୍ଯ୍ୟ । ତାହା ଜୀବନର ଯେ କାବ୍ୟ ତାହାର ଛନ୍ଦ ଗ୍ରଥିତ ହୋଇଛି ତାହାର ଭୁଲ ଓ ଅସଙ୍ଗତିରେ । ସେ ଯଦି

କେବଳ ସାଧୁ କାର୍ଯ୍ୟ କରୁଥାନ୍ତା ଏବଂ ସାଧୁ ଭାଷାରେ କଥା କହୁଥାନ୍ତା, ତେବେ ତାର ଜୀବନ ହୋଇପଡ଼ନ୍ତା ନୀରସ କଠିନ ଗଦ୍ୟ । ଏପରି ସାହିତ୍ୟିକମାନଙ୍କର ହାସ୍ୟରସ ମାଧୁର୍ଯ୍ୟରେ ଭରପୂର—ସେଥିରେ ଶ୍ଳେଷ ନାହିଁ, ବିଦ୍ରୂପ ନାହିଁ ।" ଫକୀର-ମୋହନଙ୍କ ନିର୍ମଳ ହାସ୍ୟରସର ମାଧୁର୍ଯ୍ୟର ଆସ୍ୱାଦନ ଦେଶ, କାଳ, ପାତ୍ରର ଅପେକ୍ଷା ରଖେ ନାହିଁ । ଏହି ହାସ୍ୟରସର ଅନ୍ତରାଳରେ ଫକୀରମୋହନଙ୍କର ମନୁଷ୍ୟସାଧାରଣ ପ୍ରତି ଯେଉଁ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଓ କରୁଣା ଅଛି, ତାହା ବିଷୟବସ୍ତୁକୁ ସୁନ୍ଦର ଓ ସୁମନୋଜ୍ଞ ରସବସ୍ତୁରେ ପରିଣତ କରିଅଛି । କରୁଣରସଦ୍ୱାରା ହାସ୍ୟରସ ଅଧିକ ଉଜ୍ଜ୍ୱଳ ହୋଇ ଉଠିଛି । ଏ ରସ କାଳ-ନିରପେକ୍ଷ । ଫକୀରମୋହନଙ୍କ କଥା-ସାହିତ୍ୟରେ କରୁଣରସ ସହିତ ହାସ୍ୟରସର ମଧୁର ସମନ୍ୱୟ କପରି ଅପରୂପ ମାଧୁର୍ଯ୍ୟ ସୃଷ୍ଟି କରିଛି ତାହାର ଜ୍ୱଳନ୍ତ ନିଦର୍ଶନ 'ଛ ମାଣ ଆଠ ଗୁଣ୍ଠ'ର 'ହିତୋପଦେଶ' ପରିଚ୍ଛେଦରେ । ଭଗିଆ ସାରିଆଙ୍କର ଛ ମାଣ ଆଠ ଗୁଣ୍ଠ ଜମିତକ ମାରିନେବା ପାଇଁ ଚମ୍ପା ଜାଲ ପାତି ବସିଛି । ସାରିଆ ଆଗରେ ଫନ୍ଦିଫିକର କାଢ଼ି କେତେ କଥା କହୁଛି—ମଙ୍ଗଳାଙ୍କ ପାଇଁ ଦେଉଳ ତୋଳାଇ ଦେଲେ ତାର ପୁଅ ହେବ । ଟଙ୍କା ପାଇଁ ଚିନ୍ତା ନାହିଁ । ଜମି କଟ ଲେଖି ଦେଲେ ସାଆନ୍ତେ ଟଙ୍କା ଋଣ ଦେବେ । ସାରିଆ ଅତି ନିରୀହ । ଏତେ ଛନ୍ଦ କପଟ ଜାଣେ ନାହିଁ । ଆଶା ଓ ନିରାଶା ଏକାବେଳେକେ ତା ଦୁର୍ବଳ ମନକୁ ଅସ୍ଥିର କରି ପକାଇଲଣି । ଆଶା, ଦେଉଳ ତୋଳାଇ ଦେଲେ କେଜାଣି ବାଞ୍ଝଦୋଷରୁ ପାରି ପାଇବ । ନିରାଶା, ସାନ୍ତଙ୍କୁ ଜମି କଟପତ୍ର ଲେଖିଦେଲେ ଆଉ ଫେରି ପାଇବାର ଆଶା ନାହିଁ । ଫକୀରମୋହନଙ୍କ ଭାଷାରେ 'ସାରିଆ ଗୃହିଁ ସ୍ୱପ୍ନ

ଦେଖୁଅଛୁ, ଚମ୍ପା କଥା ସବୁ ଶୁଣି ତା କାନ ଭାଁ ଭାଁ ହୋଇ-ଗଲଣି । ପଳାଇବାକୁ ଇଚ୍ଛା, ବାଟ କାହିଁ ? ବଗାଡ଼ ମୂଷାବେକ ମାଡ଼ିବସିଛୁ । ଦୁଇ ଆଖିରେ ପାଣି ଛଳ ଛଳ କରୁଛୁ । କଥା କହିବାକୁ ଇଚ୍ଛା, ପାଟି ଫିଟୁ ନାହିଁ । ବହୁତ କଷ୍ଟରେ ପାଟି ଫିଟିଲା ।

ସାବିଅ—ମୁଁ କଣ କରିବି ? ଲୋକେ କହୁଛନ୍ତି, 'ସାଅନ୍ତେ ଜମି କାଟ ନେଇଁ ନେଲେ ଫେରାଇ ଦଅନ୍ତି ନାହିଁ' ।

ସାବିଅର ସରଳ ବିଶ୍ୱାସ ଓ ନିର୍ବୁଦ୍ଧିତାର ହାସ୍ୟମୟ ଚିତ୍ର ଦେବା ସଙ୍ଗେ ସଙ୍ଗେ ସେ ବିମୂର୍ତ୍ତ ପୂର୍ବବର୍ତ୍ତୀ ହେବା ଦୁର୍ଦ୍ଦଶାରେ କପଟ ବାଘୁଣୀ ଚମ୍ପାର ଶିକାର ହେବାକୁ ଯାଇ ନିଜର ସର୍ବନାଶର ପଥ ପରିଷ୍କାର କରିବାକୁ ବସିଛୁ, ଲେଖକ କ ଦରଦ ଓ ସହାନୁଭୂତିର ସହିତ ସେ ଦୁର୍ଭାଗ୍ୟର ଚିତ୍ର ଅଙ୍କନ କରିଅଛନ୍ତି, ତାହା ପାଠକକୁ ଯେପରି ହସାଏ, ତାକୁ ସେହିପରି କନ୍ଦାଏ ମଧ୍ୟ । ସେଇଥିପାଇଁ ତ ପାଶ୍ଚାତ୍ୟ ସାହିତ୍ୟରେ ହାସ୍ୟରସର ଏତେ ତାତ୍ତ୍ୱିକ ବିଗ୍ରହ ଓ ବିଶ୍ଳେଷଣ !

(୧) ହାସ୍ୟରସିକର ଜୀବନଦୃଷ୍ଟି ଗୋଟିଏ ଉଦାର ଓ କ୍ଷମା-ସୁନ୍ଦର ଜୀବନ-ଦୃଷ୍ଟି । ସେ ବିଦ୍ରୋହୀ ନୁହଁ, ଭବିଷ୍ୟତ୍‌ବକ୍ତା ନୁହଁ, ତତ୍ତ୍ୱଦର୍ଶୀ ନୁହଁ—ସେ କେବଳ ଗମ୍ଭୀର ସମ୍ବେଦନଶୀଳ ଜଣେ ଦ୍ରଷ୍ଟା ।

(୨) ପ୍ରକୃତ ହାସ୍ୟରସ ଜୀବନରସର ରୂପାନ୍ତର ମାତ୍ର । ହାସ୍ୟରସ ତେଣୁ **"Is thinking in jest while feeling in earnest".**

(୩) ହାସ୍ୟରସିକର ଜୀବନ-ଦୃଷ୍ଟି ବ୍ୟାପକ ଏବଂ ତାହାର ସହାନୁଭୂତି ଅତି ସଚେତନ । ସକଳପ୍ରକାର ସଂସ୍କାରର ଊର୍ଦ୍ଧ୍ୱରେ ପ୍ରଜ୍ଞାପୂର୍ଣ୍ଣ ଦୃଷ୍ଟିରେ ସେ ଜୀବନ ଓ ଜଗତକୁ ଦେଖିଥାଏ । ଏଥିପାଇଁ ତାହାର ଦୃଷ୍ଟି ସାଧାରଣ ଦୃଷ୍ଟିଠାରୁ ସ୍ୱତନ୍ତ୍ର । ଜଣେ ଇଂରେଜ ସମାଲୋଚକ ଏ ସମ୍ପର୍କରେ ଯଥାର୍ଥ କହିଅଛନ୍ତି— **"The humourist sees life more widely and wisely than any of the seers. It is not an intense and narrow nature, the humourist gazes at the totality of world's life".**

(୪) ଅମ୍ଭେମାନେ ବ୍ୟଙ୍ଗ କରୁ ତାହାକୁ ନେଇ ଯେ ନୀତି-ଦିଗରୁ ଅମ୍ଭମାନଙ୍କଠାରୁ ହୀନ । ଅମ୍ଭେମାନେ କୌତୁକ କରୁ ତାହାକୁ ନେଇ ଯେ ବୁଦ୍ଧିରେ ଅମଠାରୁ ନିକୃଷ୍ଟ । ଫକୀରମୋହନ ନୀତିଦିଗରୁ ବ୍ୟଙ୍ଗ କରିଛନ୍ତି ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, ନାଜର ନଟବର ଦାସ, ଚନ୍ଦକଳା ପ୍ରଭୃତିଙ୍କୁ । ଏଠାରେ ଫକୀରମୋହନଙ୍କର ବିଦ୍ରୂପୋକ୍ତିର ବିରାମ ନାହିଁ । କିନ୍ତୁ ବୁଦ୍ଧିରେ ଯେ ଅମଠାରୁ ନିକୃଷ୍ଟ, ଯଥା— ସାରିଆ, କୁଅଁର ଗୋବିନ୍ଦଚନ୍ଦ୍ର, ନାଜର ନଟବର ଦାସଙ୍କ ସ୍ତ୍ରୀ ବିଶାଖା ଏବଂ ଶଳା ରାଘବ ମହାନ୍ତି ପ୍ରଭୃତି, ସେମାନଙ୍କୁ ଫକୀରମୋହନ ବ୍ୟଙ୍ଗ କରି ନାହାନ୍ତି, ସେଠାରେ ସୃଷ୍ଟି କରିଛନ୍ତି କୌତୁକରସ, ଅର୍ଥାତ୍ ନିର୍ମଳ ହାସ୍ୟରସ । ଲଘୁ କିମ୍ବା ଶସ୍ତା ହାସ୍ୟରସର ଅଭାବ ମଧ୍ୟ ଫକୀରମୋହନଙ୍କ କଥାସାହିତ୍ୟରେ ନାହିଁ । ଅଛୁ 'ମାମୁଁ' ଉପନ୍ୟାସର ଗାଧୁଆ ତୋଠର ବର୍ଣ୍ଣନାରେ, ଯେଉଁଠାରେ ଗାଁ ମାଇପିମାନେ ଏକଠେଇଁ ହୋଇ ନାଜରାଣୀଙ୍କର ରୂପ ଗୁଣ ବର୍ଣ୍ଣନା କରିଛନ୍ତି, ଯଥା—

ପେଟ୍‌ଟି କଣିଛୁ ଧାନଉଁଷା ହାଣ୍ଡି
ପାଟ୍‌ଶାଢ଼ୀ ଫରଫର,
ଦେହରୁ କଜଳ କାଳ ପୋଛୁପଡ଼େ
ବାସ ତେଲ୍ କରଜର ।

କିମ୍ବା 'ଗଲ୍ପସଲ୍ପ'ର 'ପେଟେଣ୍ଟ ମେଡ଼ସନ୍' ଗଳ୍ପରେ—ମଦଖାଇ ବେଶ୍ୟାଘରୁ ଫେରି ଆସି ଗମ୍ଭୀରଘରେ ତାଙ୍କ ସ୍ଥାନରେ ଗୃହକର-ଟୋକା ମକ୍ରା ଘୋଡ଼ଘାଡ଼ି ହୋଇ ଶୋଇଛୁ ଭାବି ଚନ୍ଦ୍ରମଣିବାବୁ ମଦନିଶାରେ ଭୋଳ ହୋଇ ନିଜ ସ୍ତ୍ରୀଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି, "ତା ନାମ କଣ ଜାଣୁ, ତୋ ସାନ୍ତ୍ରାଣୀ ନାମଟି ହେଲ—ଘୂଲ-ଚୂନା । ଘୂଲ୍ କଣ ନା ପୋଖରିରେ ହୁଏ—ଚୂନା ତକୁଳି ପିଠା ହୁଏ । ଛି, ଛି, ଛି, କି ଅପରିଚ୍ଛନ୍ନିଆ ନାମ । ତା ନାମ ଉସ୍-ମାନ୍-ତା-ର । ବାହାବା ମଜେଦାର । ଜିତେ ରହ ମେରି ଉସ୍‌ମାନ୍‌ତାର ।"

ଅତ୍ୟାଧୁନିକ ଯୁଗରେ ଯେଉଁମାନେ ବ୍ୟଙ୍ଗାତ୍ମକ ସାହିତ୍ୟ ସୃଷ୍ଟି କରୁଅଛନ୍ତି, ସେମାନଙ୍କ ମଧ୍ୟରେ କବି ଶ୍ରୀ ଗୋଦାବରୀଶ ମହାପାତ୍ର ଯେ ସର୍ବଶ୍ରେଷ୍ଠ, ଏଥିରେ ଅନ୍ତତଃ ଏ ଲେଖକ ସମ୍ପୂର୍ଣ୍ଣ-ରୂପେ ନିଃସନ୍ଦେହ । ବ୍ୟକ୍ତିଗତ ଆକ୍ଷେପ, ତୀକ୍ଷ୍ଣ କିମ୍ବାବରଣ ସମାଲୋଚନା ଏବଂ ଲେଖକଙ୍କର ରାଜନୀତିକ ଦୃଷ୍ଟିଭଙ୍ଗୀ, ଏ ସକଳ ବାଦ ଦେଲେ, ମନେହୁଏ ଓଡ଼ିଆ ସାହିତ୍ୟରେ କବି ଗୋଦାବରୀଶଙ୍କର ହାସ୍ୟରସପୂର୍ଣ୍ଣ ଗଦ୍ୟ ଓ ପଦ୍ୟ ଏ ଜାତୀୟ ସୃଷ୍ଟି କରିବାରେ ଅପରାଜେୟ ଶକ୍ତି ଅଛି । ବର୍ତ୍ତମାନ ଫକୀରମୋହନଙ୍କୁ ଅତ୍ୟାଧୁନିକ ଓ ପ୍ରଗତିଶୀଳ ଲେଖକ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ସହିତ ତୁଳନା କଲେ, ଫକୀରମୋହନଙ୍କ ଦୃଷ୍ଟିଭଙ୍ଗୀ କିପରି

ପ୍ରଗତିବାଦୀ ଓ ଆଧୁନିକତା-ଅଭିମୁଖୀ ଥିଲା ତାହା ଅନୁମାନ କରାଯାଇପାରେ । ୧୯୬୨ ମସିହା ଜୁଲାଇ ମାସର 'ନୂଆଁ ଖୁଣ୍ଟା'ରେ "ଡାମରାକାଉ ରେ ଡାମରାକାଉ" ଶୀର୍ଷକ ଦୀର୍ଘ ଲଳିକାରେ ପଲ୍ଲୀରେ ପଞ୍ଚବାର୍ଷିକ ଯୋଜନା କପଟ ଲୋକପ୍ରିୟ ହୋଇ ପାରୁ ନାହିଁ, ଏହା ଦରିଦ୍ର ଓ ନିରନ୍ନ ପଲ୍ଲୀବାସୀଙ୍କ ପକ୍ଷରେ କପଟର ଏକ ଦୁର୍ବହ ଭାର ସ୍ୱରୂପ ହୋଇଛି, ଏ ବିଷୟରେ ନିଜର ବ୍ୟକ୍ତିଗତ ମତ ପ୍ରକାଶ କରି କବି ଲେଖିଅଛନ୍ତି—

"ବାୟସ ସେ ସବୁ ରାଜନୀତିକ
ପୂରାଇବୁ ନାହିଁ ତୋର ମତିକ
ବୁଲିଯିବୁ ଥରେ ଗାଆଁ ଗହଳେ
ଦେଖ ପରିଚୟ ଯେଉଁଠି ମିଳେ ।
ରୋଗ ମହାମାରୀ ବନ୍ୟା କଷଣ
ଦୁର୍ବହ ଯେଉଁଠି ମାନବପ୍ରାଣ—
କର୍ଣ୍ଣପଥେ ପିଇ ଯୋଜନାମୃତ
ଥରେ ମରି ଥରେ ହୁଏ ଜୀବିତ ।
ମନେ କରେ ବସ୍ତୁ ନୁହେ ତା ଧୂମ
ଅନ୍ୟ ନାମ ତାର ନଭଃକୁସୁମ ।"

ଏହାର ଶେଷ ପଦରେ ରାଧାନାଥଙ୍କ 'ଚିଲିକା'ର 'ବସ୍ତୁ ନୁହଇ ସେ ଅଟଇଟି ଧୂମ, ଅନ୍ୟ ନାମ ତାର ଅକାଶକୁସୁମ'ର ଇଚ୍ଛାକୃତ ବିକୃତ ରୂପାନ୍ତର ଦେଖିବାକୁ ମିଳେ । ଏବଂ ରାଜନୀତିର ସଂସ୍ପର୍ଶରୁ ପଲ୍ଲୀବାସୀଙ୍କୁ ଦୂରରେ ରଖିବାକୁ କବି ଇଚ୍ଛାପ୍ରକାଶ କରି ନିଜର ସଂସ୍କାର ଏବଂ ସଂଗଠନପ୍ରବଣତାର ପରିଚୟ ଏଠାରେ ଦେଇଅଛନ୍ତି ।

ପଞ୍ଚବାର୍ଷିକ ଯୋଜନା ବର୍ତ୍ତମାନ ଭାରତର ଗୋଟିଏ ବଡ଼ଗୁଡ଼ ଅର୍ଥନୀତିକ ସମସ୍ୟା—ଭାରତର ସର୍ବାଙ୍ଗୀନ କଲ୍ୟାଣ ଏହାର ଉପରେ ନିର୍ଭର କରେ । ତେଣୁ ଏହା ସହିତ 'ରାଜନୀତି' ଜଡ଼ିତ ହେବାର ଦେଖି କବି ଗୋଦାବରୀଶଙ୍କ ମନରେ ଯେଉଁ ବିକ୍ଷୋଭ ଜାତ ହୋଇଛି, ତାହା ସମୟୋପଯୋଗୀ । ସେହିପରି ୧୮୯୨ ମସିହାରେ ରଚିତ 'ଉତ୍କଳ-ଭ୍ରମଣଂ' ବ୍ୟଙ୍ଗାତ୍ମକ ପଦ୍ୟ ପୁସ୍ତିକାରେ ଫକୀରମୋହନ ସେ ସମୟର ଗୋଟିଏ ପ୍ରଧାନ ସମସ୍ୟାକୁ ଲକ୍ଷ୍ୟ କରି ଇଂରାଜୀ ଶିକ୍ଷିତ ବ୍ୟକ୍ତିମାନଙ୍କୁ ବଡ଼ ନିର୍ମମ ଭାବରେ ବ୍ୟଙ୍ଗ ଓ ବିଦ୍ରୂପ କରିଥିଲେ । ସେ ସମସ୍ୟାଟି ହେଉଛି, ଇଂରାଜୀ ପଢ଼ୁଆ ବାବୁମାନଙ୍କର ସାହେବୀ ଗୁଲ୍‌ଚଲନ ଓ ପୋଷାକ ପରିଚ୍ଛଦରେ 'ମର୍କଟୀୟ' ଅନ୍ଧ-ଅନୁକରଣ । ଏ ସମସ୍ୟା ଦିନକୁଦିନ ସ୍ୱାଧୀନ ଭାରତରେ ମଧ୍ୟ ଅତି ଉତ୍କଟଭାବରେ ଦେଖାଯାଉଛି । ଦୂରଦ୍ରଷ୍ଟା ଫକୀରମୋହନ, ଭବିଷ୍ୟତରେ ଏ ବ୍ୟାଧି ଗୋଟିଏ ସଂକ୍ରାମକ ରୋଗରୂପେ ଆମ ଦେଶରେ ବ୍ୟାପିଯିବ, ଆମ ଦେଶର ଆଚାର ବ୍ୟବହାର ଓ ପରମ୍ପରା ସମ୍ପୂର୍ଣ୍ଣରୂପେ ଲୋପ ପାଇବ, ଏବଂ ଭାରତବର୍ଷ ଗୋଟିଏ ନକଲ ଶିଳ୍ପରେ ପରିଣତ ହେବ, ଏହି ଉଦ୍ଦେଶ୍ୟରେ ଚେତାବନୀ ଶୁଣାଇ ଲେଖିଥିଲେ—

"ପିନ୍ଧ **Waist-Coat** କଥା କୁହ ଇଂରେଜୀର,
ଖାଅ ଦରସିଜା ମାଂସ ଦୁର୍ଗନ୍ଧ ପନିର ।
ଠିଆ ହୋଇ ମୂତ, ଅବା ଘଷ ନାହିଁ ଦାନ୍ତ,
ଇଂରେଜ ନ ହେବ, ଥିବ ଓଡ଼ିଆ ନିତାନ୍ତ ।
ମୟୂର ଲାଞ୍ଜକୁ ଗୁଞ୍ଜି ବୁଲ ନାହିଁ ଅତ,
ନ ହେବ ମୟୂର, ଥିବ ଯେ କାଉ ସେ କାଉ ।

× × ×

କର ନିଜ ଦେଶ ପୁଣି ଭାଷାର ଉନ୍ନତି,
ଲଗିପଡ଼, ଧୂଆଁଯାଉ ଜାତିର ଦୁର୍ଗତି ।
ଅବଶ୍ୟ ବାବୁମାନେ କରେ **request excess**
ମୋ ନାମରେ ନ ଅଣିବ **defamation case**
ନିଡାନ୍ତ ରାଗରେ ଯେବେ ହେବ ଗରଗର,
**Withdraw** କରିନେବ ଲେଖାଟା ମୋହର ।"

ଫକୀରମୋହନଙ୍କ ଅତ୍ମା ଯଦି ଅବିନାଶୀ ହୋଇ ସ୍ୱର୍ଗ-ରାଜ୍ୟରେ ଅଧିଷ୍ଠାନ କରୁଥିବ, ଏବଂ ଭାରତବର୍ଷ ସ୍ୱାଧୀନତା ଲଭ କରିବାର ୧୬ ବର୍ଷ ପରେ ଆମ ଓଡ଼ିଶା ରାଜ୍ୟରେ ଇଂରେଜମନ୍ୟ ଓଡ଼ିଆବିଦ୍ୱେଷୀ ସୁପୁରୁଷମାନଙ୍କର ସୀମାତିରିକ୍ତ ଇଂରେଜୀ-ପ୍ରୀତି ରୂପକ ସୁରୁରୁ କାର୍ଯ୍ୟକଳାପ ଓ ମତିଗତି ଯଦି ସେ ଊର୍ଦ୍ଧ୍ୱରୁ ଲକ୍ଷ୍ୟ କରୁଥିବ, ତେବେ ହୃଦୟର ମର୍ମନ୍ତୁଦ ବେଦନାରେ ସେ ଆଜି **Humour, satire, wit, irony** ଏବଂ **sarcasm** ସୃଷ୍ଟି କରିବ ନାହିଁ, ସୃଷ୍ଟି କରିବ ବଜ୍ରର ଅମୋଘ ପ୍ରହାର । ସେ ପ୍ରହାରରେ ଭାରତରେ ଇଂରାଜୀ ଭାଷା କିମ୍ବା ସାହିତ୍ୟର କୌଣସି କ୍ଷତି ହେବ ନାହିଁ, କାରଣ ସେ ଅତ୍ମା ଜାଣିଥିଲା ଜ୍ଞାନର ଦ୍ୱାର ସର୍ବଜନ ସମସ୍ତଙ୍କ ନିମନ୍ତେ ଉନ୍ମୁକ୍ତ । କିନ୍ତୁ ସେ ନିର୍ମମ ପ୍ରହାର କ୍ଷତବିକ୍ଷତ ଓ ବିକଳାଙ୍ଗ କରିବ ସେହିମାନଙ୍କୁ ଯେଉଁମାନେ ପ୍ରାଦେଶିକ କିମ୍ବା ଅଞ୍ଚଳିକ ଭାଷାକୁ ଯଥୋଚିତ ସମ୍ମାନ, ଶ୍ରଦ୍ଧା ଓ ମର୍ଯ୍ୟାଦା ଦେବାକୁ କୁଣ୍ଠିତ, ଏବଂ ମାତୃଭାଷାକୁ ବ୍ୟଙ୍ଗ, ବିଦ୍ରୂପ ଓ ଉପହାସ କରିବାକୁ ଶତଜିହ୍ୱ ।

---

# କବିତା ଓ କବିତ୍ୱ

( ୮୨ )

ଫକୀରମୋହନ ଅସଂଖ୍ୟ ଗୀତିକବିତା ରଚନା କରି ଯାଇଅଛନ୍ତି । କିନ୍ତୁ "ବୌଦ୍ଧାବତାର" ତାଙ୍କର ଏକମାତ୍ର ସ୍ୱୟଂ-ସମ୍ପୂର୍ଣ୍ଣ କାବ୍ୟ-କୃତି । କାବ୍ୟ-କଳାର ନାନା ସୁନ୍ଦର ଓ ସୂକ୍ଷ୍ମ ବିଭବ ଏଥିରେ ପ୍ରକଟିତ । ବୁଦ୍ଧଦେବଙ୍କ ଜୀବନଚରିତ ଓ ବୌଦ୍ଧଧର୍ମର ନାନା ତତ୍ତ୍ୱ ଏଥିରେ ଶିଳ୍ପସମ୍ମତ ସୁଷମା ଲାଭ କରିଅଛି । ଏହି କାବ୍ୟରଚନାର ଅନୁପ୍ରେରଣା ସେ ପାଇଅଛନ୍ତି ତାଙ୍କର ବିମଳ 'ଆଧ୍ୟାତ୍ମିକ ଆନନ୍ଦ'ର ପରିପୂର୍ଣ୍ଣ ଉପଭୋଗରୁ । ବାର୍ଦ୍ଧକ୍ୟରେ ସେ ବୌଦ୍ଧଧର୍ମ ପ୍ରତି ପ୍ରବଳଭାବରେ ଆକୃଷ୍ଟ ହୋଇ ପଡ଼ିଥିଲେ । ନିଃସଙ୍ଗ ଓ ନିରାଶ୍ରୟ ବାର୍ଦ୍ଧକ୍ୟର ସେତେବେଳେ ଏକମାତ୍ର ଅନ୍ତରଙ୍ଗ ସଖା ଓ ଆଶ୍ୱାସନାର ଅଫୁରନ୍ତ ଉତ୍ସ ଥିଲା ବୌଦ୍ଧଧର୍ମର ପବିତ୍ର ଆଖ୍ୟାନ । ଏହା ବାଲେଶ୍ୱରରେ ରଚିତ । ଏହାର ମୁଖବନ୍ଧ ଫକୀରମୋହନ ଲେଖିଅଛନ୍ତି ୧୮୨୮ ଶକାବ୍ଦ ଭାଦ୍ର ଶୁକ୍ଳ ଦଶମୀରେ । ଏହାର ପ୍ରଥମ ପ୍ରକାଶ ୧୯୦୯ ମସିହାରେ । କବି ଅବିଶ୍ରାନ୍ତ ଭାବରେ ତନ୍ମୟ ହୋଇ ଏ କାବ୍ୟଟି ଲେଖୁଥିଲେ । ୪୨ ଦିନ ମଧ୍ୟରେ ଏ କାବ୍ୟପ୍ରଣୟନର ସମାପ୍ତି । ଏହା ଊନବିଂଶ ସର୍ଗରେ ବିଭକ୍ତ । ଏ କାବ୍ୟରେ ଗୋଟିଏ 'ପରିଶିଷ୍ଟ' ଅଛି । ଏଥିରେ କବି ପାଠକପାଠିକାମାନଙ୍କୁ ଉଦ୍‌ବୋଧନ ଦେଇ ଲେଖିଅଛନ୍ତି—

"ଏ ମହାପୁରାଣ ପ୍ରଶଦନ ଶ୍ରସ୍ତମରେ
ଅଧ୍ୟୟନ କରୁଥିବ ପବ୍ୟବ ମନରେ ।

ଅଧ୍ୟୟନ କର ଗ୍ରନ୍ଥ ଭାବ ହୃଦଗମ,
ନହୁଅ ଶର୍କରାବାହୀ ବଳୀବର୍ଦ୍ଧ ସମ ।

ନକର ସମୟ ନାଶ ଅଳୀକ କାର୍ଯ୍ୟରେ
ଭାବୀ ଦଶା ଭାବ ଚଳ ସୁନୀତ-ମାର୍ଗରେ ।"

ଏହି 'ସୁନୀତମାର୍ଗ'ଟି ଥିଲା ଫକୀରମୋହନଙ୍କ ଜୀବନ-ଜିଜ୍ଞାସାର ପରମ ପାଥେୟ । ମନୁଷ୍ୟ-ଜୀବନର ପଥ-ପ୍ରାନ୍ତରରେ ଏହି 'ସୁନୀତ-ମାର୍ଗ'କୁ ପୁଷ୍ପଶଯ୍ୟାରେ ସୁରଭିତ କରିଦେବା ପାଇଁ ତାଙ୍କର ପ୍ରାଣ ନିରନ୍ତର ବ୍ୟାକୁଳ ହେଉଥିଲା । ଏହି ବ୍ୟାକୁଳ ପିପାସାର କାବ୍ୟମୟ ଅଭିବ୍ୟକ୍ତି ହେଉଛନ୍ତି 'ବୌଦ୍ଧାବତାର' କାବ୍ୟ । ରସସୃଷ୍ଟି ଯଦି କାବ୍ୟର ପରମ ସମ୍ପଦ ଓ ଆତ୍ମିକ ବିଭୂତି ବୋଲି ଗ୍ରହଣ କରାଯାଏ, ତେବେ କରୁଣ ଓ ଶାନ୍ତରସ ସୃଷ୍ଟି କରିବାରେ 'ବୌଦ୍ଧାବତାର' ପରି ଐତିହାସିକ ଓ ଧର୍ମତତ୍ତ୍ୱସମ୍ବଳିତ କାବ୍ୟ ଓଡ଼ିଆ ସାହିତ୍ୟରେ ବିରଳ ବୋଲି କହିଲେ ଧୃଷ୍ଟତା ହେବ ନାହିଁ । ବାତ୍ସଲ୍ୟରସବିନ୍ୟାସର ପ୍ରାଚୀନ ପରମ୍ପରା ରକ୍ଷା କରି ଗୌତମଙ୍କ ଜନନୀଙ୍କର ମର୍ମସ୍ପର୍ଶୀ ବେଦନ ମଧ୍ୟରେ ଫକୀର-ମୋହନ ଯେଉଁ କାରୁଣ୍ୟ ରସପ୍ରବାହ ସୃଷ୍ଟି କରିଅଛନ୍ତି, ତାହା ଯେ କୌଣସି କଠିନପ୍ରାଣ ପାଠକର ଚକ୍ଷୁକୁ ସଜଳ କରିଦେବ ।

"ଗଲାବେଳେ କଥା ପଦେ ନ ବୋଇଲୁ ବାପ
ପୂର୍ବଜନ୍ମେ ମୁଁ ପାପିଷ୍ଠା କେତେ କଲି ପାପ
ଶାକ୍ୟ ଭରସାରେ ।

କାହୁଁ କାଳ ନିଦ ମୋତେ ଅସିଥିଲା ମାଡ଼ି
ବେଳ ଉଣ୍ଡି ବାପ ସିନା ପଳାଇଲୁ ଛାଡ଼ି
ଜୀବଜୀବନରେ ।"

ମାର୍କଣ୍ଡଦାସଙ୍କ 'କେଶବକୋଇଲି' ପରି ମଥିତ ଜନନୀ-ପ୍ରାଣର ଏ ଗୁରୁ ବେଦନା କେଉଁ ପାଠକର ଅନ୍ତରର ଗଭୀର ପ୍ରଦେଶକୁ କରୁଣରସରେ ପ୍ଲାବିତ ନ କରିବ ! ଫକୀରମୋହନଙ୍କ ପରେ ବୁଦ୍ଧଦେବଙ୍କର ଜୀବନଚରିତକୁ କେନ୍ଦ୍ର କରି କେତେ କେତେ ନାଟକ ରଚନା କରିଅଛନ୍ତି, କିନ୍ତୁ ଆଧୁନିକ ସାହିତ୍ୟର ସ୍ରଷ୍ଟା ରାଧାନାଥଙ୍କ କାଳ୍ପନିକ, ଅର୍ଦ୍ଧ-ଐତିହାସିକ, ବୈଦେଶିକ କଥାବସ୍ତୁ-ପ୍ରଭାବିତ ଓ କିମ୍ବଦନ୍ତୀମୂଳକ ପ୍ରେମାତ୍ମକ କାବ୍ୟସର୍ଜନାର ଅବ୍ୟବହିତ ପରେ ଏପରି ଗୁରୁଗମ୍ଭୀର ଐତିହାସିକ ତଥ୍ୟ-ସମ୍ବଳିତ ଆଧ୍ୟାତ୍ମିକ କାବ୍ୟର ରଚନା ଓଡ଼ିଆ କାବ୍ୟରାଜ୍ୟର ଗୋଟିଏ ଅନନ୍ୟସାଧାରଣ ଘଟଣା । ଧର୍ମର ଅତୀନ୍ଦ୍ରିୟ ଚେତନାରେ ଯେଉଁ ଭକ୍ତକବି ମଧୁସୂଦନଙ୍କ ଆତ୍ମା ଚିର-ଜାଗ୍ରତ ଓ ଉଦ୍ଭାସିତ ଥିଲା, ଫକୀରମୋହନ ସେହି ଦିବ୍ୟ ଉନ୍ମାଦନା ଓ ପରମ ଶାନ୍ତିମୟ ଏବଂ ଆନନ୍ଦପ୍ରଦ ଆଧ୍ୟାତ୍ମିକ ଉପଲବ୍ଧିରେ ବିଭୋର ହୋଇ ଏ କାବ୍ୟ-ରଚନାରେ ଲେଖନୀ ପ୍ରୟୋଗ କରିଥିଲେ ବୋଲି ମନେହୁଏ । କିନ୍ତୁ ଏହା ପୂର୍ବରୁ କବି ବହୁ ଛୋଟ ଛୋଟ କବିତା ରଚନା କରିଥିଲେ ।

ଫକୀରମୋହନ ତାଙ୍କ 'ଆତ୍ମଚରିତ'ରେ ଲେଖିଅଛନ୍ତି, "ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ହେଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦ-

ଜନକ କବିତା ଲେଖିଥିଲି । × × × ଢେଙ୍କାନାଳରେ ଥିବା ସମୟରେ ମୋର ଜ୍ୟେଷ୍ଠପୁତ୍ରଟି ମରିଯିବାରୁ ମୋର ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେବା ପାଇଁ ରାମାୟଣ, ମହାଭାରତ ଅନୁବାଦ ଆରମ୍ଭ କଲି । ମୋର ଦ୍ୱିତୀୟ ପୁତ୍ରଜନ୍ମ ବର୍ଷରେ ଅର୍ଥାତ୍ ୧୮୮୧ ମସିହାରେ ମୁଁ ମହାଭାରତ ଅନୁବାଦ ଆରମ୍ଭ କରେ । ୧୯୦୨ ମସିହାରେ ସେ ଯେବେ ବି.ଏ. ପାଶ୍ କଲା, ମୋର ସେହି ବର୍ଷ ଅଷ୍ଟାଦଶପର୍ବ ମହାଭାରତ ଅନୁବାଦ ଶେଷ ହେଲା । ମୁଁ ଡୋମପଡ଼ାରେ ଦ୍ୱିତୀୟଥର କର୍ମ କରୁଥିବା ସମୟରେ (୧୮୯୪-୯୬) ମୋର ସ୍ତ୍ରୀ କୃଷ୍ଣକୁମାରୀ ପରଲୋକ ଗମନ କଲେ । ମୋର ସେ ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା, ତାହାହିଁ ମୁଁ 'ପୁଷ୍ପମାଳା' ଏବଂ 'ଉପହାର' ଏଇ ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।

କୃଷ୍ଣକୁମାରୀଙ୍କ ପରଲୋକ କବିଙ୍କ ପ୍ରାଣକୁ ଏପରି ବ୍ୟଥିତ ଓ ମଥିତ କରିଥିଲା ଯେ, ସେହି ଦୁର୍ବିଷହ ବେଦନାର ବ୍ୟାକୁଳ ଅନୁଭୂତିକୁ ସେ ବାରମ୍ବାର ବହୁ କବିତାରେ ରୂପ ଦେଇ ମଧ୍ୟ ଆଶ୍ୱସ୍ତ ହୋଇପାରି ନଥିଲେ । ଓଡ଼ିଆ ଦୁଃଖାନୁଭୂତିମୂଳକ ପଦ୍ୟ-ସାହିତ୍ୟ କିମ୍ବା ଶୋକ-ଗୀତିକାକୁ ଏହି କରୁଣରସାତ୍ମକ ଓ ଆବେଗଗର୍ଭିତ କବିତାଗୁଡ଼ିକ କପରିଭାବରେ ପରିପୁଷ୍ଟ ଏବଂ ଅକ୍ଷୟସମ୍ପଦରେ ଋଦ୍ଧିମନ୍ତ କରିଅଛନ୍ତି, ତାହା ବିଚାରିଲେ ସ୍ତମ୍ଭିତ ହେବାକୁ ପଡ଼େ । ସତ୍ୟବାଦୀ ଯୁଗର କବି ସତ୍ୟବାଦୀ ସ୍କୁଲର ଜଣେ ନବାଗତ ଛାତ୍ରଙ୍କର ଅକାଳ ମୃତ୍ୟୁରେ ମର୍ମାହତ ହୋଇ ଉପର୍ଯ୍ୟୁପରି ତିନୋଟି ଶୋକଗୀତିକା ରଚନା କରିଥିଲେ । ପ୍ରଥମ କବିତାର ପ୍ରଥମ ଦୁଇଟି ଧାଡ଼ି ହେଲା—

'ନିମିଷକ ଦେଖା ଯେବେ ହେ ବାବୁ ଦିଅନ୍ତ ଆସି
ବୁକୁରେ ମୁଁ ତୋଳି ଧରନ୍ତ ଦୂର ବିଦେଶୀବାସୀ ।'

ତୃତୀୟ କବିତା 'ଥାଅ ବାବୁ'ରେ କବି ସେହି ପୂର୍ବପ୍ରଥମ ସ୍ତ୍ରୀଙ୍କର ସ୍ମୃତି ମନରୁ ପାସୋରି ନପାରି ତାଙ୍କଠାରୁ ଚିରବିଦାୟ ନେବା ଉଦ୍ଦେଶ୍ୟରେ ଲେଖିଅଛନ୍ତି—

'ମଣିଥିଲି ପରାଣୁ ମୋ ଦେଇ ମୁଁ ମେଲାଣି
ବିଦ୍ରବି ଜୀବନେ ନିଜ ବିଜନତା ଘେନି ।
ଏବେ ତ ଦେଖୁଛି ବାବୁ, ଯାଏ ଯେତେ ଦିନ
ବଳି ବଳି ସେହି କଥା ହେଉଛି ସ୍ମରଣ ।'

କବି ଏ ଶୋକ-ସ୍ମୃତିକୁ ଚିରବିଦାୟ ଦେଇ ନିର୍ଜନତାର ଶାନ୍ତି ଉପଭୋଗ କରିବାକୁ ଚାହିଁଥିଲେ । କିନ୍ତୁ ସେ ଶାନ୍ତି କାହିଁ ? ହୃଦୟର ମର୍ମସ୍ଥଳରେ ସେ ଶୋକ ଯେଉଁ ଅଲିଭା ପଥର-ଗାର ଟାଣି ଦେଇଛି ସେ ଗାର ଲିଭୁଛି କେତେମନ୍ତେ ? କବିର ପ୍ରାଣ ଏହିପରି ସୁକୁମାର, ଅନୁଭୂତିପ୍ରବଣ, ସଂବେଦନପୂର୍ଣ୍ଣ ଏବଂ ସ୍ନେହପ୍ରେମରେ ତରଙ୍ଗାୟିତ ! ସେହିପରି ଫକୀରମୋହନ ପ୍ରାଣର ପ୍ରିୟତମା କୃଷ୍ଣକୁମାରୀଙ୍କ ବିୟୋଗଜନିତ ଦୁଃଖକୁ କେତେ ବିଚିତ୍ରରୂପରେ ପ୍ରକାଶ କରିଅଛନ୍ତି । ସମୁଦ୍ରର ତଟପ୍ରଦେଶକୁ ଫେନଚୂଡ଼ ଲହରୀ ବାରମ୍ବାର ଆଘାତ କରି ତାର ସିକତାମୟ ଭୂମିକୁ ସିକ୍ତ କରି ଦେଉଥିଲା ପରି ଶୟନେ, ସ୍ୱପନେ, ଜାଗରଣେ, ପ୍ରତି ମୁହୂର୍ତ୍ତରେ ସେ ବିଚ୍ଛେଦ ସ୍ମୃତି ତାଙ୍କର ଶୂନ୍ୟ ଓ ହାହାକାରମୟ ପ୍ରାଣକୁ ଉଦ୍‌ବେଳିତ କରି ଚକ୍ଷୁକୁ ଅଶ୍ରୁସ୍ନାତ କରିଛି । ସେହି ବେଦନାଭିଁ ହୃଦୟର ମର୍ମଭେଦୀ ଦୁଃଖ ଏହିସବୁ ଶୋକ-ଗୀତରେ ପ୍ରକଟିତ ହୋଇଅଛି । "ହସି ହସି ଗଲି ମୋତେ

କନ୍ଦାଇ କନ୍ଦାଇ' କବିତାଟି ସତେ ଯେପରି ଗୋଟିଏ ଛିନ୍ନ ବୀଣାର ନିଃସଙ୍ଗ ତାର । କରୁଣ ରାଗିଣୀର ଆଳାପରେ ସୁଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ ସେ ଯେପରି ବିଳାପର ପ୍ରତିଧ୍ୱନି ସୃଷ୍ଟିକରି ଚାଲିଛି । କୃଷ୍ଣକୁମାରୀଙ୍କ ମୃତ୍ୟୁରେ ଫକୀରମୋହନଙ୍କ ହୃଦୟ-ତନ୍ତ୍ରୀ ଛିନ୍ନବିଚ୍ଛିନ୍ନ ହୋଇ ଯାଇଅଛି । ତେଣୁ 'ହସି ହସି ଗଲୁ ମୋତେ କନ୍ଦାଇ କନ୍ଦାଇ'ରେ ସେ ଏ ଗଭୀର ଦୁଃଖକୁ ବ୍ୟକ୍ତକରି ନିଜକୁ ଆଶ୍ୱସ୍ତ କରିବାକୁ କେତେ ପ୍ରୟାସ କରି ଅଛନ୍ତି ! ଏଥିପାଇଁ କେତେ ଶବ୍ଦ-ଚିତ୍ର, କେତେ ରୂପ-କଳ୍ପନା, କେତେ ଉପମା ଅଳଙ୍କାରର ବିନ୍ୟାସ ! ତଥାପି ସେ ଦୁଃଖକୁ ସେ ପରିତୃପ୍ତିର ସହିତ ପ୍ରକାଶ କରିନପାରି ବ୍ୟାକୁଳ ।

'ଅନ୍ଧାର ଆଲୁଅ ମୋର ଶରଦ-ଚନ୍ଦ୍ରିକା
ନନ୍ଦନର ପାରିଜାତ ବାସନ୍ତୀ ମଲ୍ଲିକା ।
ମୋ ବାଳେଣୀ ବୀଣାତାନ ପବନେ ମିଶାଇ
ହସି ହସି ଗଲୁ ମୋତେ କନ୍ଦାଇ କନ୍ଦାଇ ।'

କୃଷ୍ଣକୁମାରୀ ତାଙ୍କ ପ୍ରତି କ'ଣ ଥିଲେ, ସେ ସମ୍ପର୍କ କିପରି ଅଚ୍ଛେଦ୍ୟ, ପବିତ୍ର, ଆନନ୍ଦମୟ ଓ ମାଧୁର୍ଯ୍ୟମଣ୍ଡିତ ଥିଲା, କବି ତାହାକୁ ଅଭିବ୍ୟକ୍ତ ଦେବା ନିମନ୍ତେ କେତେ ରୂପକ, କେତେ ଶବ୍ଦ-ଚିତ୍ର ପ୍ରୟୋଗ କରିଅଛନ୍ତି !

ତାଙ୍କର 'ଉପହାର' କବିତା ପୁସ୍ତକ ୧୮୯୫ ମସିହା ଡିସେମ୍ବର ମାସରେ ପ୍ରକାଶ ପାଇଥିଲା । କିନ୍ତୁ 'ଫକୀରମୋହନ ଗ୍ରନ୍ଥାବଳୀ'ର ପ୍ରଥମ ସଂସ୍କରଣରେ ଏ ପୁସ୍ତକର ନାମ ଗନ୍ଧ ନାହିଁ । 'ପୁଷ୍ପମାଳା' ସହିତ ତାହା ମିଶିଯାଇ ତାର ଅସ୍ତିତ୍ୱ ଏକାବେଳକେ

ହରାଇ ବସିଛନ୍ତି । ସେହି 'ଉପହାର' କବିତାପୁସ୍ତକର ଶେଷରେ ଯେଉଁ 'ଉପହାର' କବିତାଟି ଥିଲା ତାକୁ ଗ୍ରନ୍ଥାବଳୀରେ ପୁଷ୍ପମାଳାର 'ଉତ୍ସର୍ଗପତ୍ର' ରୂପେ ସନ୍ନିବେଶିତ କରାଯାଇଛି । ପ୍ରକାଶକଙ୍କ ପକ୍ଷରେ ଏ ଏକ ଅମାର୍ଜନୀୟ ଅପରାଧ । ସେ ଯାହାହେଉ, ସେହି 'ଉପହାର' କବିତାରେ ପ୍ରେମମୟୀ କୃଷ୍ଣକୁମାରୀଙ୍କ କମନୀୟ ମୂର୍ତ୍ତି ତାଙ୍କ ଶୋକାକ୍ରାନ୍ତ ମାନସ-ପଟରେ କିପରି ଜୀବନ୍ତ ରୂପ ଧରି ଏବଂ ଜଳ ସ୍ଥଳ ଗଗନ ସର୍ବତ୍ର ପରିବ୍ୟାପ୍ତ ହୋଇ ବିରାଜମାନ, ତାହା ରୂପାୟିତ କରିବାକୁ ଯାଇ କବି ଲେଖିଅଛନ୍ତି—

"ଦେଖୁଛି ସର୍ବଦା ନୀଳ ଆକାଶରେ ଇନ୍ଦୁ
ଫୁଟିଲା ଗୋଲାପ ପଦ୍ମେ ଶିଶିରର ବିନ୍ଦୁ ।
କମନୀୟ ଏ ସମସ୍ତ ହୁଅନ୍ତେ ସେ ପ୍ରକାର
ଯେମନ୍ତ ସୁନ୍ଦର ତୁମ ନେତ୍ର ଅଶ୍ରୁଧାର ।
ସେ ପ୍ରଶାନ୍ତ ମୂର୍ତ୍ତି ସେହି ମୁଦ୍ରିତ ନୟନ
ଜଣାଯାଏ ମୋତେ ବ୍ୟାପି ରହିଛନ୍ତି ଗଗନ ।"

'ମାତୃହୀନ ଦୁଇଗୋଟି କ୍ଷୁଦ୍ର ଶିଶୁ' କବିତାରେ ବଡ଼ ଭାଇ ତା ସାନଭଉଣୀକୁ ସାନ୍ତ୍ୱନା ଦେଇ କହୁଛି—

'ଆଗେ କାନ୍ଦୁଥିଲେ ମାଆ ଆସୁଥିଲେ ଧାଇଁ
ଏବେ ତ କାନ୍ଦିଲେ କେହି ପଚାରିବେ ନାହିଁ ।
କିଏ ଦେବ ଆସି ଆମ୍ଭମାନଙ୍କୁ ସାନ୍ତ୍ୱନା
କାନ୍ଦନା ସରଅ, ଅଉ କାନ୍ଦନା, କାନ୍ଦନା ।
କାନ୍ଦିବାକୁ ବାବା ପରା କରିଛନ୍ତି ମନା
କାନ୍ଦନା ସରଅ, ଅଉ କାନ୍ଦନା, କାନ୍ଦନା ।'

ବାବା ଫକୀରମୋହନ ପିଲାଙ୍କୁ କାନ୍ଦିବା ପାଇଁ ମନା କରିଥାଇ-ପାରନ୍ତି ସତ, କିନ୍ତୁ ଏ ମନା ଯେ ତାଙ୍କ ନିଜର ମନ ମାନିନାହିଁ, ଏହି ସରଳ ସୁନ୍ଦର କବିତାଟି ତାର ଜ୍ୱଳନ୍ତ ନିଦର୍ଶନ ।

ଫକୀରମୋହନ କେବଳ ନିଜର ବ୍ୟକ୍ତିଗତ ଦୁଃଖଶୋକ ପାଇଁ କାନ୍ଦି ନାହାନ୍ତି, ଅନ୍ୟମାନଙ୍କ ପାଇଁ ବି କାନ୍ଦି ଅଛନ୍ତି— ପଶୁପକ୍ଷୀ ତରୁଲତା ସମସ୍ତଙ୍କ ଦୁଃଖ ଦୁର୍ଗତିରେ ତାଙ୍କର ସ୍ପର୍ଶ-କାତର ମନ ବ୍ୟଥାରେ ହାହାକାର କରି ଉଠିଛି । ସେ ତ ନିଜେ ତାଙ୍କର ମନର କଥା ବ୍ୟକ୍ତ କରି ଆମକୁ କହିଯାଇ ଅଛନ୍ତି, "ମୁଁ ଯେ କବିତା ଲେଖିବାକୁ ଶିଖିଛି, ସେଥିର ଅନ୍ୟତମ କାରଣ ମୋ ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେ । ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟରେ ଲେଖା ।" ତାଙ୍କର ବୃହତ୍ତମ କବିତା-ଗ୍ରନ୍ଥ 'ଅବସର-ବାସରେ'ର ପ୍ରଥମ ସଂସ୍କରଣର ଭୂମିକାରେ ( ୧-୨-୧୯୦୮—ବାଲେଶ୍ୱର ) ସେ ଲେଖିଅଛନ୍ତି, "ଗତ ପାଞ୍ଚବର୍ଷ ପୂର୍ବେ ଥରେ ପ୍ରାୟ ଅଠ ଦଶମାସ ପର୍ଯ୍ୟନ୍ତ ମୁଁ ନିତାନ୍ତ ପୀଡ଼ିତ ଓ ଶଯ୍ୟାଗତ ହୋଇ ପଡ଼ିଥିଲି, ଉତ୍ଥାନ ଶକ୍ତି ପ୍ରାୟ ନଥିଲା । ସେ ଦାରୁଣ ଦୁର୍ଯୋଗ ସମୟରେ ଦୟାମୟ ପ୍ରଭୁ ମୋ କ୍ଷୀଣ ଜୀବନରକ୍ଷା ନିମନ୍ତେ କବିତା ଲେଖିବାର ପ୍ରବୃତ୍ତି ଦେଇଥିଲେ ।"

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ସେ ତାଙ୍କର ଆନନ୍ଦ ଓ ବେଦନାର ଅନୁଭୂତିକୁ ରୂପ ଦେବାକୁ ଯାଇ କବିତା ରଚନା

କରିଅଛନ୍ତି । ପୁଣି ନାନା ବ୍ୟକ୍ତିଗତ କାରଣରୁ ଓ ଅପ୍ରତ୍ୟାଶିତ ଦୈବ ଦୁର୍ବିପାକରୁ ସେ ନାନା ସମୟରେ ଦାରୁଣ ଦୁଃଖର ସମ୍ମୁଖୀନ ହେଉଥିଲେ । କିନ୍ତୁ ମନର ଅଶାନ୍ତି ଓ ଅସ୍ଥିରତା ସମୟରେ କବିତା ଲେଖିବାର ପ୍ରବୃତ୍ତି ତାଙ୍କର ଉଦ୍ଦୀପିତ ହେଉଥିଲା, ଏବଂ ଏଥିରେ ସେ ଶାନ୍ତି ଓ ଆଶ୍ୱାସନା ଲାଭ କରୁଥିଲେ । ପୁଣି ତାଙ୍କର ଭଗବତ୍-ବିଶ୍ୱାସ ଅନ୍ତିମ ମୁହୂର୍ତ୍ତି ପର୍ଯ୍ୟନ୍ତ ଅଟଳ ଓ ଅଚଳ ଥିଲା । ଘୋର ଦୁର୍ଯୋଗ ସମୟରେ ସେହି ପରମ କାରୁଣିକ ଭଗବାନଙ୍କ ନାମ ସ୍ମରଣ କରି ଦୁଃଖରୁ ମୁକ୍ତି ପାଇବା ନିମନ୍ତେ ସେ କବିତା ରଚନା କରୁଥିଲେ । ସ୍ମୃତି, ଆବେଗ, ସ୍ୱପ୍ନ ଓ ଦୁଃଖସୁଖର ଅନୁଭୂତିର ଉଚ୍ଛ୍ୱାସ ତ ଗୀତି-କବିତାର ପ୍ରାଣ । କବିର ବ୍ୟକ୍ତିଗତ ଅନୁଭୂତି ଯେଉଁ କବିତାକୁ ସ୍ନିଗ୍ଧ କାନ୍ତି ଦାନ କରେ ତାହାହିଁ ଶ୍ରେଷ୍ଠ ଗୀତି-କବିତା । କିନ୍ତୁ ଫକୀରମୋହନଙ୍କ କବିତାରେ ଆନନ୍ଦାନୁଭୂତି ଅପେକ୍ଷା ବେଦନାବୋଧର ପ୍ରକାଶ ଅଧିକ । କୃଷ୍ଣକୁମାରୀଙ୍କ ମୃତ୍ୟୁପରେ ଗଭୀର ବେଦନାବୋଧରେ ତାଙ୍କର ଚିତ୍ତ ଆଲୋଡ଼ିତ ହୋଇଅଛି । ତା ଉପରେ ଅଛି ନାନା ପାରିବାରିକ ଦୁଃଖ ଦୁର୍ଦ୍ଦଶା ଓ ମୁହୁର୍ମୁହୁ ଶାରୀରିକ ପୀଡ଼ା । ସେଥିରେ ସେ କ୍ଷତବିକ୍ଷତ ହୋଇଅଛନ୍ତି । କିନ୍ତୁ ସେ ବେଦନାବୋଧ ହୋଇଛି ଓଡ଼ିଆସାହିତ୍ୟ ପ୍ରତି ଏକ ଆଶୀର୍ବାଦ । ଆଜି ତେଣୁ ସେହି ବେଦନା-ବିଜଡ଼ିତ କବିତା ପାଠ କଲେ ଯେଉଁ ଅଲୌକିକ ଆନନ୍ଦ ଆମେ ଉପଭୋଗ କରୁ ସେହି ସାରସ୍ୱତ ଶୁଦ୍ଧ ଅବିମିଶ୍ର ଆନନ୍ଦ ଓ ଅନିର୍ବଚନୀୟ ରସ-ସମ୍ଭାର ଫକୀରମୋହନଙ୍କ ପରେ ଦୁର୍ଲଭ ସାମଗ୍ରୀ ହୋଇ ପଡ଼ିଛି । ଆଧୁନିକ କବିତାରେ ନୈରାଶ୍ୟ, ବ୍ୟର୍ଥତା, ସର୍ବହରା ଓ ରିକ୍ତମାନଙ୍କ ନିମନ୍ତେ ବେଦନାବୋଧ ଅବଶ୍ୟ ପରିଲକ୍ଷିତ ହୁଏ । କିନ୍ତୁ ସେ ବେଦନାରେ ଆନ୍ତରିକତା

କେତେ ? ଅଧୁନିକ କବିର ସେ ଅନୁଭୂତିରେ ମୌଳିକତା କାହିଁ ? ସେ କବିତା ପଢ଼ନ୍ତି କେତେ ଜଣ ? ଫକୀରମୋହନଙ୍କ 'ଉପହାର' କବିତା ପ୍ରକାଶ ପାଇବାର କେତେକାଳ ବିତିଗଲାଣି, କିନ୍ତୁ ଏବେ ସୁଦ୍ଧା କୌଣସି କୌଣସି ବର୍ଷୀୟାନ୍ ପାଠକ ଓ ବର୍ଷୀୟସୀ ପାଠିକା 'ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ' ଫକୀରମୋହନଙ୍କର ଏ କବିତା ଆବୃତ୍ତି କରି ନୀରବରେ ଲୋତକ ଢାଳନ୍ତି । କବି ଯେତେବେଳେ କହନ୍ତି—

'ବସିଛୁ ନିର୍ଜନେ ବ୍ୟାକୁଳ ମନେ
ଲୋତକ ଧାର ବହୁଛି ନୟନେ
କାହିଁ ଗଲେ ମୋର ସୁହୃଦ ଜନେ
ପାଶରେ କାହାକୁ
ନ ଦେଖେ ଟିକିଏ ସାନ୍ତ୍ୱନା ଦେବାକୁ ।'

('ଦୁଃଖ-ସମୟ'—ଅବସରବାସରେ)

ସେତେବେଳେ ପାଠକ କ'ଣ ଭାବେ, ଏ କେବଳ ନିଃସଙ୍ଗ ଓ ନିର୍ବିଣ ଫକୀରମୋହନଙ୍କର ବ୍ୟକ୍ତିଗତ ଦୁଃଖ ? ଏ ଦୁଃଖ ବ୍ୟକ୍ତିଗତ, କିନ୍ତୁ ସାର୍ବଜନୀନ । ଯେ କୌଣସି ଆପାତ ସୁଖୀ ଲୋକ ପ୍ରାଣରେ ଏ କବିତା ମଧ୍ୟ ଅଶ୍ରୁର ମୂର୍ଚ୍ଛନା ସୃଷ୍ଟିକରେ । ନିଜ ଜୀବନକୁ ସେ ଯେତେ ଶାନ୍ତିମୟ, ନିଷ୍କଣ୍ଟକ ଓ ନିଶ୍ଚିନ୍ତ ବୋଲି ମନେ କରେ, ଏ କବିତା ସେ ନିସ୍ତରଙ୍ଗ ନୈଶ୍ଚିନ୍ତ୍ୟରେ ତାର ଆଘାତ ଦିଏ, ତାର ଚକ୍ଷୁ ଖୋଲି ଏ କବିତା ଦେଖାଇ-ଦିଏ, କାହାର ଜୀବନ ସମାନ ଯାଏ ନାହିଁ—ମନୁଷ୍ୟର ସକଳ ଦାମ୍ଭିକତାକୁ ଉପହାସ କରି ଦୁର୍ବାର ନିୟତି ହସ୍ତରେ ହୁଏ ସେ ଅସହାୟ କ୍ରୀଡ଼ନକ । ଏହିଠାରେ କବି ସହିତ ଘଟେ

ପାଠକର ଏକାତ୍ମ ମିଳନ । ପାଠକର ଚିତ୍ତଦର୍ପଣରେ ପ୍ରତିଫଳିତ ହୁଏ କବିର ମନ ଓ ହୃଦୟ । କବିପ୍ରାଣର ଏ ଦୁଃଖାନୁଭୂତି ରୂପାନ୍ତରିତ ହୁଏ ପାଠକ-ଚିତ୍ତରେ ଅଲୌକିକ ଆନନ୍ଦରେ । ଏ ଆନନ୍ଦ ଅନିର୍ବଚନୀୟ । ଏ ରସ-ସଂକ୍ରାମଣ ବ୍ୟାଖ୍ୟା ଓ ବିଶ୍ଳେଷଣର ବହିର୍ଭୂତ । କବିଙ୍କର ପତ୍ନୀ ହସି ହସି ଗ୍ଲୁଲିଗଲେ, କିନ୍ତୁ ଆଜୀବନ ତାଙ୍କୁ କନ୍ଦାଇଲେ । ଫକୀରମୋହନ ସେହିପରି ଏହି ଦୁଃଖାନୁଭୂତିମୂଳକ କବିତା ରଚନା କରି ଆମକୁ ହସାଇଛନ୍ତି, ଅର୍ଥାତ୍ ଅଲୌକିକ ଆନନ୍ଦର ସାମଗ୍ରୀ ଆମପାଇଁ ପରିବେଷଣ କରି ଯାଇଅଛନ୍ତି । ତାଙ୍କର ଶୋକଗୀତିଗୁଡ଼ିକ ପାଠ କଲେ ଆମ ଚକ୍ଷୁରୁ ଯେଉଁ ଅଶ୍ରୁବିନ୍ଦୁ ନିଃସାରିତ ହୁଏ, ତାହା ଦୁଃଖାଶ୍ରୁ ନୁହେ, ଆନନ୍ଦାଶ୍ରୁ ।

'ଅବସର-ବାସରେ'ର କବିତାଗୁଡ଼ିକ ତାଙ୍କର ପରିପକ୍ୱ ବୟସ ଓ ଚରମ ବାର୍ଦ୍ଧକ୍ୟରେ ରଚିତ । ମୃତ୍ୟୁର ଛାୟା କବି ସେତେବେଳେ ତାଙ୍କର ଚତୁର୍ଦ୍ଦିଗରେ ସ୍ପଷ୍ଟ କରି ଦେଖିବାକୁ ପାଇଲେଣି । କିନ୍ତୁ ସେହି ସର୍ବଗ୍ରାସୀ ମହାକାଳର ଧୀର ମନ୍ଥର ପଦକ୍ଷେପରେ ସେ ଭୀତତ୍ରସ୍ତ ନୁହନ୍ତି । ବରଂ ମୃତ୍ୟୁର ଆଲୋକରେ ତାଙ୍କର ଚିତ୍ତାଲୋକ ଉଦ୍ଭାସିତ । ସେତେବେଳେ ସେ କେବଳ ମରଣକୁ ବଡ଼ କରି ମନେ କରି ନାହାନ୍ତି । ସେତେବେଳେ କବି ଆତ୍ମଚିନ୍ତା ଓ ଆତ୍ମପରୀକ୍ଷାରେ ବ୍ୟାକୁଳ । ଏତେ ଦୀର୍ଘ-ଜୀବନ କାଳ ମଧ୍ୟରେ ସେ ଦେଶପାଇଁ ଓ ଜାତିପାଇଁ କ'ଣ କରିଅଛନ୍ତି, କି ଉଦ୍ଦେଶ୍ୟରେ ଏ ଧରାଧାମରେ ସେ ଅବତୀର୍ଣ୍ଣ ହୋଇଥିଲେ, ସେ ଉଦ୍ଦେଶ୍ୟ ସେ କେତେଦୂର ସାଧନ କରି ଯାଇଅଛନ୍ତି, ଅନ୍ତିମ ମୁହୂର୍ତ୍ତ ଯେତିକି ନିକଟତର ହୋଇ ଆସିଛି, ଏ ଚିନ୍ତାରେ ସେ ସେତିକି ଆକୁଳ ହୋଇ ପଡ଼ିଛନ୍ତି ।

ସେତେବେଳେ ତାଙ୍କ କବିତା କବିପ୍ରାଣର ତରଳ ତରଙ୍ଗିତ ଆବେଗକୁ ଅତିକ୍ରାନ୍ତ କରି ଦାର୍ଶନିକର ଭାବ-ସମ୍ପଦରେ ବିମଣ୍ଡିତ ହୋଇଅଛି । 'ମୃତ୍ୟୁଶଯ୍ୟାରେ', 'ମୃତ୍ୟୁର ନିମନ୍ତ୍ରଣ', 'ବଞ୍ଚି ମୁଁ ରହିବି ଆଉ କେଉଁ ସୁଖ ଅଶେ' ଏବଂ 'ଆତ୍ମସମର୍ପଣ' ପ୍ରଭୃତି କବିତାଗୁଡ଼ିକ ଜୀବନର ଏହି ଗୁରୁଗମ୍ଭୀର ବିଷାଦମୟ ସନ୍ଧିକ୍ଷଣରେ ରଚିତ । କିନ୍ତୁ କବି ସେହି ମୃତ୍ୟୁର ଆଗମନୀରେ ସବୁ ବିଷାଦ-କାଳିମାକୁ ଧୋଇ ଦେଇ ଆନନ୍ଦାମୃତ ପାନ କରିଅଛନ୍ତି । ମୃତ୍ୟୁଶଯ୍ୟାର ଚିତ୍ର ମନେ ମନେ କଳ୍ପନା କରି କବି ସଂସାର-ବିରାଗୀ ସାଧକ ସନ୍ନ୍ୟାସୀ ପରି କହିଅଛନ୍ତି—

'ଏ କି ବନ୍ଧୁଙ୍କ ବେଭାର    ଦେଇ ପୁଷ୍ପ ଉପହାର
ସଜାଇ ପ୍ରତିମା କରି ଅଣିଛନ୍ତି ମୋତେ,
ମୋହପକ୍ଷେ ବର୍ତ୍ତିମାନ    ପଙ୍କ ଚନ୍ଦନ ସମାନ
ସମ ମାନ ଅପମାନ ନକଲେ ପରତେ ।'

କବିଙ୍କର ଆଉ ଏତେବେଳେ ମୃତ୍ୟୁକୁ ଭୟ ନାହିଁ । ମରଣକୁ ସର୍ବାନ୍ତଃକରଣରେ ସ୍ୱାଗତ ସମ୍ଭାଷଣ ଜ୍ଞାପନ କରିବାକୁ ସେ ପ୍ରସାରିତକର । ତେଣୁ ମୃତ୍ୟୁ-ବନ୍ଧୁକୁ ସାନନ୍ଦଚିତ୍ତରେ ଅଭିନନ୍ଦନ ଜଣାଇ ସେ ଲେଖିଅଛନ୍ତି—

"ଆସ ଆସ ବନ୍ଧୋ ! ଆସ ମିଳି ବେନି ଜଣ
ଅନନ୍ତ ଆକାଶ ମାର୍ଗେ କରିବୁଁ ଭ୍ରମଣ ।
ଅନନ୍ତ ଅଗମ୍ୟ ମାର୍ଗ ମଣିବି କିପରି,
ଅହେ ମିତ୍ର ! ଘେନିଯାଅ ମୋହ ହାତ ଧରି ।"

(ମୃତ୍ୟୁର ନିମନ୍ତ୍ରଣ)

'ଶେଷ ପ୍ରାର୍ଥନା' କବିତାରେ ବନ୍ଧୁମାନଙ୍କଠାରୁ ଚିରବିଦାୟ ନେବାକୁ ଇଚ୍ଛା ପ୍ରକାଶ କରି ଲେଖିଅଛନ୍ତି—

'ଅହେ ବନ୍ଧୁଗଣ ! କରେ ନିବେଦନ
ଦୟା ରଖି ମୋହଠାରେ,
ହରି ବୋଲ ଭରି ମୋତେ ଯେ ଶୁଆଇ
ଦେବେ ସମାଧି ଶଯ୍ୟାରେ ।

ଜନ୍ମଭୂମି କୋଳେ ଏକାନ୍ତେ ବିରଳେ
ରହିବି ମହାଧ୍ୟାନରେ,
ରବି, ଶଶୀ, ତାରି ଜ୍ୟୋତି ପରମ୍ପରି
ପଡ଼ୁଥିବ ମୋ ଉପରେ ।'

ମୃତ୍ୟୁର ଅସନ୍ନ ଆକ୍ରମଣରେ କବିପ୍ରାଣର ଏ ଯେଉଁ ଦିବ୍ୟାନନ୍ଦ, ଏବଂ ଶେଷ ମୁହୂର୍ତ୍ତରେ ବି ଜନ୍ମଭୂମି ପ୍ରତି ଏ ଯେଉଁ ଅତଳସ୍ପର୍ଶୀ ମମତା, ଓଡ଼ିଆସାହିତ୍ୟର କେଉଁ କବିଙ୍କ କବିତା-ସୃଷ୍ଟିରେ ଏପରି ରସଘନ ଜୀବନ୍ତରୂପରେ ଦେଖିବାକୁ ମିଳେ ?

ପ୍ରକୃତିପ୍ରେମିକତା, ଦେଶାତ୍ମବୋଧ, ଭଗବତ୍‌ପ୍ରୀତି ଓ ନିର୍ବିକରଣ ଏବଂ ସ୍ପଷ୍ଟ ନୀତିଶିକ୍ଷା ତାଙ୍କର ଅନେକ କବିତାର ପ୍ରାଣପିଣ୍ଡ । ବାର୍ଦ୍ଧକ୍ୟରେ ସେ ଯେ ଏକାନ୍ତ ଈଶ୍ୱରନିର୍ଭର ହୋଇ ପଡ଼ିଥିଲେ, ତାଙ୍କର ଭକ୍ତିମୂଳକ ଅନେକ କବିତାରୁ ତାହା ସ୍ପଷ୍ଟ ଅନୁମିତ ହୁଏ । 'ଜୀବନ-ତରୀ' କବିତାଟି କବିପ୍ରାଣର ଅତୀନ୍ଦ୍ରିୟ ଆବେଗ ଓ ବ୍ୟାକୁଳତାରେ ଉଚ୍ଛ୍ୱସିତ । ଅତନ୍ଦ୍ର ସାହିତ୍ୟ-ସାଧନାରେ କବି ଯେପରି ତାଙ୍କର ସମଗ୍ର ଜୀବନକୁ ନିୟୋଜିତ କରିଥିଲେ, ସେହିପରି ଜୀବନର ଏ ସନ୍ଧ୍ୟକ୍ଷଣରେ ମଧ୍ୟ ସେ ଦୁର୍ଗମ ଭଗବତ୍ ପଥର ଅକ୍ଳାନ୍ତ ପଥିକ ହେବାକୁ

ଉଚ୍ଛନ୍ନ । ଏହି ସୁଦୂର ପଥର ଯାତ୍ରୀ ହେବାରେ କବିଙ୍କର କି ଅତୃପ୍ତ ଆକାଂକ୍ଷା ! ତାଙ୍କର 'ପ୍ରାଣମଣି'ଙ୍କ ସହିତ ମିଳିତ ହେବା ନିମନ୍ତେ କି ଆକୁଳ ଆବେଗ ।

'ଯିବ ଦିଗମ୍ବର ବେଶେ ଯିବ ମଧ୍ୟ ନିରୁଦ୍ଦେଶେ
ଲଂଘି ଯିବ ଅବଶେଷେ ସୀମାନ୍ତ ବନ୍ଧନୀ,
ଅନନ୍ତ ସାଗର ପ୍ରାନ୍ତେ ମିଳିବ ଯାଇ ଏକାନ୍ତେ
ବିରାଜିତ ଛନ୍ତି ଯହିଁ ମୋର ପ୍ରାଣମଣି ।'

ଦେଶାତ୍ମବୋଧରେ ଦେଶର ଲୋକମାନଙ୍କୁ ଉଦ୍‌ବୁଦ୍ଧ କରିବାକୁ ଯାଇ ସେ 'ଜନ୍ମଭୂମି' କବିତାରେ ଲେଖିଅଛନ୍ତି—

'ପଶୁ ପକ୍ଷୀ ଯେତେ ଅଛନ୍ତି ଜଗତେ
ପୋଷନ୍ତି ସର୍ବେ ଉଦର,
ତୁମ୍ଭେ ସେ ପ୍ରକାର ହେଲେ ସ୍ୱାର୍ଥପର
କି ଭେଦ ହେଲା ତୁମ୍ଭର ?
ତୁହିଁ ଦେଶପ୍ରତି ଭାଷାର ଉନ୍ନତି
ଲୋଡ଼ ଜାତୀୟ ଗୌରବ,
ଦେଶବାସିଗଣ ଜାଣନ୍ତୁ ଆପଣ
ଯଥାର୍ଥ ଜଣେ ମାନବ ।'

'ଗୋଲାପସୁନ୍ଦରୀ' କବିତାରେ କବିଙ୍କ ପ୍ରକୃତିପ୍ରେମିକତା ପରିସ୍ଫୁଟ । କବି ନିଜ ମନର ମାଧୁରୀ ଆରୋପ କରି ଏହି ପ୍ରକୃତି-ସୌନ୍ଦର୍ଯ୍ୟ ବିଷୟକ କବିତାଗୁଡ଼ିକ ରଚନା କରିଅଛନ୍ତି । କବିଙ୍କର କଳ୍ପନା ଓ ଆବେଗରେ ସେଗୁଡ଼ିକ ଅନୁରଞ୍ଜିତ । ବେଳେ ବେଳେ ସେଗୁଡ଼ିକ କବିଙ୍କ ଜୀବନାଦର୍ଶର ପ୍ରତୀକ । ଗୋଲାପ ଫୁଲଟି ଅତି ସୁନ୍ଦର ଓ ପବିତ୍ର । କିନ୍ତୁ ନିର୍ଦ୍ଦୟ ମାନବ ସେ

ଫୁଲଟି ତୋଳି ନେଇ ଉଦ୍ୟାନର ସୌନ୍ଦର୍ଯ୍ୟ ନଷ୍ଟକରେ । କବି ଗୋଲାପର ସୌନ୍ଦର୍ଯ୍ୟରେ ଯେପରି ମୁଗ୍ଧ, ମୂର୍ଖ ମନୁଷ୍ୟର ଏ ନିଷ୍ଠୁରତାରେ ସେହିପରି କ୍ଷୁବ୍ଧ । ତେଣୁ ଏହି ଗୋଟିଏ ମାତ୍ର କବିତାର କ୍ଷୁଦ୍ର ପରିସର ମଧ୍ୟରେ କବିଙ୍କର ପ୍ରକୃତପ୍ରେମିକତା ଯେପରି ଅଭିବ୍ୟକ୍ତ ସେହିପରି ତାଙ୍କ ପ୍ରାଣର ପବିତ୍ରତା ଓ ନିର୍ମଳତା ପ୍ରକଟିତ । ଗୋଟିଏ କ୍ଷୁଦ୍ର କବିତା ମଧ୍ୟରେ ଏତେଗୁଡ଼ିଏ ବିଚ୍ଛିନ୍ନ ଭାବର ପାରମ୍ପରିକ ସଙ୍ଗତିବିଧାନ ଉଚ୍ଚଶ୍ରେଣୀର ଗୀତିକବି-ମାନଙ୍କର କଳାକୁଶଳତାର ପରିଚାୟକ । ଫକୀରମୋହନ ସେ ପରୀକ୍ଷାର ସମ୍ମୁଖୀନ ହୋଇଅଛନ୍ତି ଓ ଉତ୍ତୀର୍ଣ୍ଣତାର ପ୍ରମାଣ ମଧ୍ୟ ଦେଇଅଛନ୍ତି । 'ଗୋଲାପ-ସୁନ୍ଦରୀ' କବିତାଟିର ଆରମ୍ଭ ଏହିପରି—

'ଫୁଟିଛି ଗୋଲାପ-ସୁନ୍ଦରୀ
ଶୋଭା ମେଲି ଉଦ୍ୟାନେ,
ପ୍ରଫୁଲ୍ଲ କୁସୁମ ମଣ୍ଡଳେ
ପାଟରାଣୀ ସମାନେ ।
ହରିତ ପଲ୍ଲବ ବସ୍ତ୍ରରେ
ଶୋଭୁଛି ତ ସୁନ୍ଦରୀ,
ସୁତୀକ୍ଷ୍ଣ କଣ୍ଟକମଣ୍ଡଳୀ
ରହିଛନ୍ତି ପ୍ରହରୀ ।
ସେ ତ ବଡ଼ ଅଭିମାନିନୀ
ଥାଏ ଲାଜ ସରମେ,
ପରଶ କଲେକି ତାହାକୁ
ମରିଯାଏ ମରମେ ।'

ଏହା ସହିତ ଶେଷାଂଶ ସଂଯୋଗର ଶିଳ୍ପ-ସୁଷମା ଦେଖିଲେ ଆନନ୍ଦରେ ଅଭିଭୂତ ହେବାକୁ ପଡ଼େ ।

'ଯାହାଙ୍କ ଅଙ୍କାରେ ବିସ୍ତାରେ
ସର୍ବ ପୁଷ୍ପ ସୌରଭ,
ତାହାଙ୍କୁ ପୂଜିବୁ କୁସୁମେ
ଅଟେରେ ଅନ୍ଧ ମାନବ ।
ପବିତ୍ରତା-ଜଳେ ଧଉତ
କରି ଭକ୍ତି-ସୁମନ,
ନିର୍ମଳ ହୃଦୟେ ପୂଜ ରେ
ମହାପ୍ରଭୁ ଚରଣ ।'

ମୂଳତଃ ଫକୀରମୋହନଙ୍କ ଗୀତ-କବିତାର ବିଶେଷତ୍ୱ, ଏହାର ସଂଯମ ଏବଂ ନିରାଭରଣ ସ୍ୱଚ୍ଛ ପ୍ରାଞ୍ଜଳତା । ସାହିତ୍ୟର ପ୍ରାଞ୍ଜଳତା ସମ୍ପର୍କରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କର ମତ ହେଉଛି—"ସଂଯମ ଭଦ୍ରତାର ଗୋଟିଏ ପ୍ରଧାନ ଲକ୍ଷଣ । ଭଦ୍ରଲୋକମାନେ ଉପରେ ପଡ଼ି ଅତିଶଯ୍ୟଦ୍ୱାରା ନିଜର ଅସ୍ତିତ୍ୱ ଉତ୍କଟଭାବରେ ପ୍ରଚାର କରନ୍ତି ନାହିଁ । ବିନୟ ଏବଂ ସଂଯମଦ୍ୱାରା ସେମାନେ ନିଜର ମର୍ଯ୍ୟାଦା ରକ୍ଷା କରିଥାନ୍ତି । ସାହିତ୍ୟରେ ସଂଯମ ଏବଂ ଅଳ୍ପର ବ୍ୟବହାରରେ ସଂଯମ ଉନ୍ନତିର ଲକ୍ଷଣ । ଅତିଶଯ୍ୟଦ୍ୱାରା ଦୃଷ୍ଟି ଆକର୍ଷଣର ଚେଷ୍ଟା ହିଁ ବର୍ବରତା ।" ଅତ୍ୟାଧୁନିକ କବିତାରେ ଏ ଅସଂଯମ, ଅହଙ୍କାର, ଅବୋଧତା ଓ ଆତିଶଯ୍ୟର ଅତ୍ୟାଚାର ଅନେକ ସମୟରେ ଅତି ଅସହ୍ୟ । ଏଥିରେ ପ୍ରକାଶଭଙ୍ଗୀମାର ବିଚିତ୍ର ପ୍ରସାଧନ ଥାଏ, କିନ୍ତୁ ଗଜଭୁକ୍ତକପିତ୍ଥବତ୍ ଏହା ଅନ୍ତଃସାରଶୂନ୍ୟ । ସବୁ ଅତ୍ୟାଧୁନିକ କବିତାରେ ଯେ ଆତିଶଯ୍ୟର ଏ ସଦର୍ପ ପଦଧ୍ୱନି ଶୁଣିବାକୁ ମିଳେ, ତାହା ନୁହେଁ । କିନ୍ତୁ ଫକୀରମୋହନଙ୍କ ଉତ୍ତରାଧିକାରୀମାନେ ତାଙ୍କ ପ୍ରକାଶଭଙ୍ଗୀର ଏ ପ୍ରାଞ୍ଜଳତା ଓ ସ୍ୱଚ୍ଛତା କ୍ଷେତ୍ରରେ କେତେଦୂର ପଛରେ ପକାଇ

ଫୁଲଟି ତୋଳ ନେଇ ଉଦ୍ୟାନର ସୌନ୍ଦର୍ଯ୍ୟ ନଷ୍ଟକରେ । କବି ଗୋଲାପର ସୌନ୍ଦର୍ଯ୍ୟରେ ଯେପରି ମୁଗ୍ଧ, ମୂର୍ଖ ମନୁଷ୍ୟର ଏ ନିଷ୍ଠୁରତାରେ ସେହିପରି କ୍ଷୁବ୍ଧ । ତେଣୁ ଏହି ଗୋଟିଏ ମାତ୍ର କବିତାର କ୍ଷୁଦ୍ର ପରିସର ମଧ୍ୟରେ କବିଙ୍କର ପ୍ରକୃତପ୍ରେମିକତା ଯେପରି ଅଭିବ୍ୟକ୍ତ ସେହିପରି ତାଙ୍କ ପ୍ରାଣର ପବିତ୍ରତା ଓ ନିର୍ମଳତା ପ୍ରକଟିତ । ଗୋଟିଏ କ୍ଷୁଦ୍ର କବିତା ମଧ୍ୟରେ ଏତେଗୁଡ଼ିଏ ବିଚ୍ଛିନ୍ନ ଭାବର ପାରମ୍ପରିକ ସମନ୍ୱୟବିଧାନ ଉଚ୍ଚଶ୍ରେଣୀର ଗୀତକବି-ମାନଙ୍କର କଳାକୁଶଳତାର ପରିଚୟସୂଚକ । ଫକୀରମୋହନ ସେ ପରୀକ୍ଷାର ସମ୍ମୁଖୀନ ହୋଇଅଛନ୍ତି ଓ ଉତ୍ତୀର୍ଣ୍ଣତାର ପ୍ରମାଣ ମଧ୍ୟ ଦେଇଅଛନ୍ତି । 'ଗୋଲାପ-ସୁନ୍ଦରୀ' କବିତାଟିର ଆରମ୍ଭ ଏହିପରି—

'ଫୁଟିଛୁ ଗୋଲାପ-ସୁନ୍ଦରୀ
ଶୋଭା ମେଲି ଉଦ୍ୟାନେ,
ପ୍ରଫୁଲ୍ଲ କୁସୁମ ମଣ୍ଡଳେ
ପାଟରାଣୀ ସମାନେ ।
ହରିତ ପଲ୍ଲବ ବିସ୍ତରି
ଶୋଇଛୁ ତ ସୁନ୍ଦରୀ,
ସୁତୀକ୍ଷ୍ଣ କଣ୍ଟକମଣ୍ଡଳୀ
ରହିଛନ୍ତି ପ୍ରହରୀ ।
ସେ ତ ବଡ଼ ଅଭିମାନିନୀ
ଥାଏ ନିଜ ସରମେ,
ପରଶ କଲେକ ତାହାକୁ
ମରିଯାଏ ମରମେ ।'

ଏହା ସହିତ ଶେଷାଂଶ ସଂଯୋଗର ଶିଳ୍ପ-ସୁଷମା ଦେଖିଲେ ଆନନ୍ଦରେ ଆତ୍ମହରା ହେବାକୁ ପଡ଼େ ।

'ଯାହାଙ୍କ ଅଙ୍ଗରେ ବିସ୍ତାରେ
ସର୍ବ ପୁଷ୍ପ ସୌରଭ,
ତାହାଙ୍କୁ ପୂଜିବୁ କୁସୁମେ
ଆରେ ଅନ୍ଧ ମାନବ ।
ପବିତ୍ରତା-ଜଳେ ଧଉତ
କର ଭକ୍ତି-ସୁମନ,
ନିର୍ମଳ ହୃଦୟେ ପୂଜ ରେ
ମହାପ୍ରଭୁ ଚରଣ ।'

ସ୍ଥୂଳତଃ ଫକୀରମୋହନଙ୍କ ଗୀତି-କବିତାର ବିଶେଷତ୍ୱ, ଏହାର ସଂଯମ ଏବଂ ନିରାଭରଣ ସ୍ୱଚ୍ଛ ପ୍ରାଞ୍ଜଳତା । ସାହିତ୍ୟର ପ୍ରାଞ୍ଜଳତା ସମ୍ପର୍କରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କର ମତ ହେଉଛି—"ସଂଯମ ଭଦ୍ରତାର ଗୋଟିଏ ପ୍ରଧାନ ଲକ୍ଷଣ । ଭଦ୍ରଲୋକମାନେ ଉପରେ ପଡ଼ି ଆତିଶଯ୍ୟଦ୍ୱାରା ନିଜର ଅସ୍ତିତ୍ୱ ଉତ୍କଟଭାବରେ ପ୍ରଚାର କରନ୍ତି ନାହିଁ । ବିନୟ ଏବଂ ସଂଯମଦ୍ୱାରା ସେମାନେ ନିଜର ମର୍ଯ୍ୟାଦା ରକ୍ଷା କରିଥାନ୍ତି । ସାହିତ୍ୟରେ ସଂଯମ ଏବଂ ଆଚାର ବ୍ୟବହାରରେ ସଂଯମ ଉନ୍ନତିର ଲକ୍ଷଣ । ଆତିଶଯ୍ୟଦ୍ୱାରା ଦୃଷ୍ଟି ଆକର୍ଷଣର ଚେଷ୍ଟା ହିଁ ବର୍ବରତା ।" ଅତ୍ୟାଧୁନିକ କବିତାରେ ଏ ଅସଂଯମ, ଅହଙ୍କାର, ଅବୋଧତା ଓ ଆତିଶଯ୍ୟର ଅତ୍ୟାଚାର ଅନେକ ସମୟରେ ଅତି ଅସହ୍ୟ । ଏଥିରେ ପ୍ରକାଶଭଙ୍ଗୀମାର ବିଚିତ୍ର ପ୍ରସାଧନ ଥାଏ, କିନ୍ତୁ ଗଜଭୁକ୍ତକପିତ୍ଥବତ୍ ଏହା ଅନ୍ତଃସାରଶୂନ୍ୟ । ସବୁ ଅତ୍ୟାଧୁନିକ କବିତାରେ ଯେ ଆତିଶଯ୍ୟର ଏ ସଦର୍ପ ପଦଧ୍ୱନି ଶୁଣିବାକୁ ମିଳେ, ତାହା ନୁହେଁ । କିନ୍ତୁ ଫକୀରମୋହନଙ୍କ ଉତ୍ତରାଧିକାରୀମାନେ ତାଙ୍କ ପ୍ରକାଶଭଙ୍ଗୀର ଏ ପ୍ରାଞ୍ଜଳତା ଓ ସ୍ୱଚ୍ଛତା କ୍ଷେତ୍ରରେ କେତେଦୂର ପଛରେ ପକାଇ

ଅଣିନାଃଶ୍ୱାସୀ ହୋଇ ପ୍ରଗତିପଥରେ ଧାବନଶୀଳ, ତାହା ଆଧୁନିକ ଓଡ଼ିଆ ସାହିତ୍ୟର ଐତିହାସିକମାନେ ବିଚାର କରିବେ । କବିତାର ଆତ୍ମା କଥା ଛାଡ଼ । ଅଙ୍ଗିକ ଦିଗରୁ ବିଚାର କଲେ ଦେଖାଯିବ ଏହି ମାସକ ଭିତରେ ରଚିତ ହୋଇଥିବା ଏବଂ ଗୋଟିଏ ମାସିକ ପତ୍ରିକାରେ ସଦ୍ୟ ପ୍ରକାଶ ଲାଭ କରିଥିବା ଗୋଟିଏ କ୍ଷୁଦ୍ର କବିତା ଫକୀରମୋହନଙ୍କର ଯେ କୌଣସି କ୍ଷୁଦ୍ରତମ କବିତାଠାରୁ କ୍ଷୁଦ୍ରତର ନ ହେଲେ ସୁଦ୍ଧା ଛନ୍ଦବିନ୍ୟାସ, ଯତିପାତ ଏବଂ ଅର୍ଥଗୌରବ ଦିଗରୁ କେଡ଼େ ପ୍ରଗତିଶାଳୀ ! ଗୀତିକବିମାନେ ଗୋଟିଏ ମୁହୂର୍ତ୍ତିର ଅନୁଭୂତିକୁ ତାଙ୍କ କବିତାରେ ରୂପ ଦିଅନ୍ତି । ଇଂରାଜୀ ସାହିତ୍ୟର ଜଣେ ପ୍ରସିଦ୍ଧ କବି ନିଜର ଅନୁଭୂତି ବ୍ୟକ୍ତକରି ଲେଖିଥିଲେ, **"Poetry is the record of the best and happiest moments of the happiest and best minds ।"** ପଞ୍ଚଶବର୍ଷ ତଳେ ଯତ୍‌କିଞ୍ଚିତ୍ ଇଂରାଜୀ ଜାଣିଥିବା ଫକୀରମୋହନ ତାଙ୍କର ମୁହୂର୍ତ୍ତିର ଭାବକୁ ଗୋଟିଏ ଅତି କ୍ଷୁଦ୍ର କବିତାରେ ଏହିପରି ପ୍ରକାଶ କରିଥିଲେ, ଯଥା—

'ଧନ ଅଭାବେ ଦୁଃଖୀ କେହି  
କେହି ବା ଦୁଃଖୀ ପୀଡ଼ା ଦେହୀ ।  
କେ ଦୁଃଖୀ ଜ୍ଞାତି ପରଜନେ  
ସମ୍ପୂର୍ଣ୍ଣ ସୁଖୀ ନାହିଁ ଜଣେ ।'

ବେଶ୍, କବିତାଟି ଏହି ଚାରୋଟି ପଦରେ ଶେଷ । ଅତ୍ୟାଧୁନିକ କବି ଏହା ପ୍ରତି ପ୍ରବଳ ପ୍ରତିବାଦ ଓ ନାସିକାକୁଞ୍ଚନ କରି କହିବ—ଏକଥା ନ ଜାଣେ କିଏ ? ଏ କବିତାରେ ନୂତନତ୍ୱ ବା କ'ଣ ? ଲେଖିବ ଯଦି ଏହିପରି ଶ୍ଳୋକ କବିତା ଲେଖି,

କିନ୍ତୁ ରସଘନ କରି ଲେଖ । ଲୋକଙ୍କ ପ୍ରାଣକୁ ସ୍ପର୍ଶ ନକରୁ, ଏପରି କବିତା କେହି ନ ପଢ଼ନ୍ତୁ, କିନ୍ତୁ ଦେହକୁ ତ କାହାରି ଚହଲେ ସ୍ପର୍ଶ କରିବ ? ଯଥା—

ଅପରାହ୍ନରେ
ତମ ସହିତ
ମୋର ଦେଖା ହୋଇଥିଲା
ଏବେ ସନ୍ଧ୍ୟା ହେବ
ତଥାପି ମନେ ହୁଏ
ମୋ ଗାଲରେ
ତମ ଓଠର ଆର୍ଦ୍ରତା
ଏବେ ବି ଶୁଖିଯାଇନି
ଠିକ୍ ଯେମିତି ଥିଲା
ସେମିତି ଅଛି । ×    ×

କବିତାଟି ଏଠାରେ ଶେଷ ହୋଇ ନାହିଁ, ଆଉ ସାତ ଧାଡ଼ି ଅଛି । ଏଠାରେ ପ୍ରଗତିବାଦୀ ଓ ନବ୍ୟରୁଚିସମ୍ପନ୍ନ କବି କ୍ଷୁଦ୍ର କବିତା ରଚନା କରିବାରେ ଯେ ଫକୀରମୋହନଙ୍କୁ ଧାଡ଼ି-ସଂଖ୍ୟାରେ ପଛକୁ ପକାଇ ଆଗେଇ ଯାଇଛନ୍ତି ସେତିକି ନୁହେଁ, ଅର୍ଥଗୌରବରେ ମଧ୍ୟ । ଏ କବିତାଟି କବିଙ୍କର 'ପ୍ରଥମା'କୁ ଲକ୍ଷ୍ୟ କରି ରଚିତ । ଫକୀରମୋହନଙ୍କର କରୁଣ ରସାତ୍ମକ କବିତାଗୁଡ଼ିକ ତ ତାଙ୍କ 'ଦ୍ୱିତୀୟା'କୁ ଲକ୍ଷ୍ୟ କରି ରଚିତ । ତେଣୁ ଆଧୁନିକ କବିତା ମଧ୍ୟରେ କବି ଫକୀରମୋହନଙ୍କୁ ଖୋଜି ପାଇବା ଅସମ୍ଭବ ।

# ଫକୀରମୋହନ ଯୁଗ ?

( ୧୩ )

'ଓଡ଼ିଆ ସାହିତ୍ୟରେ ଫକୀରମୋହନ ଯୁଗ'—ଉତ୍କଳ-ସାହିତ୍ୟର ଇତିହାସ ଲେଖକମାନେ ଏପରି ଯଦି ଗୋଟିଏ ସାହିତ୍ୟିକ ମତବାଦ ସୃଷ୍ଟି କରି ରାଧାନାଥ ଯୁଗ ମଧ୍ୟରେ ଏହି 'ନବ' ଯୁଗର ବୈଶିଷ୍ଟ୍ୟ ପ୍ରତିପାଦନ କରନ୍ତି, ତେବେ ସେମାନେ ଯେ ନିତାନ୍ତ ପଥ-ବିଭ୍ରାନ୍ତ ହୁଅନ୍ତି ଏବଂ ସେମାନଙ୍କ ଚିନ୍ତାଧାରାରେ ଯେ ବିଶେଷ କିଛି ତ୍ରୁଟି କିମ୍ବା ଦୁର୍ବଳତା ଅଛି ତାହା କହିହେବ ନାହିଁ । ଅବଶ୍ୟ ସାହିତ୍ୟକୁ ଏହିପରି ଭିନ୍ନ ଭିନ୍ନ ଯୁଗରେ ବିଭକ୍ତ କରି ତାର ଅଖଣ୍ଡତା ଏବଂ ପରମ୍ପରାର ପ୍ରବାହକୁ ଗୋଟିଏ ଗୋଟିଏ ପୃଥକ୍ ସୀମିତ ପରିବେଶ ମଧ୍ୟରେ ଅବଦ୍ଧ କରିଦେବା କେତେଦୂର ଯୁକ୍ତିସଙ୍ଗତ, ତାହା ବିଚାର କରିବାର ଅବକାଶ ଏଠାରେ ନାହିଁ । ତଥାପି ଆଲୋଚନାର ସୌକର୍ଯ୍ୟ ନିମନ୍ତେ ସାହିତ୍ୟର ଇତିହାସ ଲେଖକମାନେ ଏପରି କରିଥାନ୍ତି । ଯୁଗଧର୍ମ, ଯୁଗଚିନ୍ତା ଓ ଇତିହାସ ସାହିତ୍ୟକୁ କେତେକ ପରିମାଣରେ ପ୍ରଭାବିତ କରିଥାଏ । ତେଣୁ ଗୋଟିଏ ନିର୍ଦ୍ଦିଷ୍ଟ ଯୁଗର ଲେଖକ-ମାନଙ୍କ ଆବେଗପ୍ରବଣତା, ଚିନ୍ତାଧାରା, ଶିଳ୍ପନୈପୁଣ୍ୟ ଓ ପ୍ରକାଶଭଙ୍ଗୀ ମଧ୍ୟରେ କେତେକ ସାମଞ୍ଜସ୍ୟ ଦେଖାଯାଇଥାଏ । ସେହି ସାମଞ୍ଜସ୍ୟକୁ ଭିତ୍ତି କରି ସାହିତ୍ୟର ସମାଲୋଚକ ଏବଂ

ଇତିହାସଲେଖକ କହେ—ଏହା ସ୍ୱୀତ ଯୁଗ, ଏହା ରାଧାନାଥ ଯୁଗ, ଏହା ସତ୍ୟବାଦୀ ଯୁଗ, ଏହା ସବୁଜ ଯୁଗ, ଏହା ଯୁଦ୍ଧୋତ୍ତର ଯୁଗ, ଏବଂ ଇଂରାଜୀ ସାହିତ୍ୟରେ ଆଂଲୋ-ସାକ୍ସନ ଯୁଗ, ଆଂଲୋ-ନରମାନ୍ ଯୁଗ, ଏଲିଜାବେଥ୍ ଯୁଗ, ରୋମାଣ୍ଟିକ୍ ଯୁଗ ଓ ଭିକ୍ଟୋରିଆ ଯୁଗ ଇତ୍ୟାଦି । ଇଂଲଣ୍ଡର ରୋମାଣ୍ଟିକ୍ ଯୁଗର ବୈଶିଷ୍ଟ୍ୟ ଓ କବିମାନଙ୍କୁ ନିମ୍ନଲିଖିତ ପର୍ଯ୍ୟାୟମାନଙ୍କର ଅନ୍ତର୍ଭୁକ୍ତ କଲେ ସୁବିଧା, ଯଥା—(୧) ବିସ୍ମୟବୋଧ, (୨) ସୁନ୍ଦରର ଉପାସନା, (୩) ପଳାୟନୀବୃତ୍ତି, (୪) ବିଦ୍ରୋହାତ୍ମକ ମନୋବୃତ୍ତି, (୫) ମାନବପ୍ରେମ ଏବଂ (୬) ଆଧ୍ୟାତ୍ମିକ ଆଦର୍ଶବାଦ, ଗୋଟିଏ ଯୁଗର କବିମାନଙ୍କ ମଧ୍ୟରେ ନାନା ବୈସାଦୃଶ୍ୟ ବି ପରିଲକ୍ଷିତ ହୁଏ । ଏହାର କାରଣ ଆଉ କିଛି ନୁହେଁ, କବିର ଅଲୌକିକ ପ୍ରତିଭା, ତାର ଅନନ୍ୟସାଧାରଣ ମାନସ-ଭଙ୍ଗୀ ଏବଂ ତାର ସୃଜନୀ ପ୍ରକ୍ରିୟାର ବିଶେଷତ୍ୱ—ଭାରତୀୟ ଅଳଂକାରିକମାନଙ୍କ ଭାଷାରେ—'ତସ୍ୟ ଚ କାରଣଂ କବିଗତ ପ୍ରତିଭା' । ଇଂରାଜୀ ସାହିତ୍ୟର ଇତିହାସଲେଖକ କହେ, "ରୋମାଣ୍ଟିକ୍ ଯୁଗର କବି ଶେଲି ଏବଂ କୀଟ୍ସ ସମସାମୟିକ ହେଲେହେଁ ସେମାନଙ୍କ କାବ୍ୟରେ ଦୁସ୍ତର ବ୍ୟବଧାନ । ଶେଲିଙ୍କର କାବ୍ୟ ବୁଦ୍ଧି-ପ୍ରକର୍ଷରେ ଉଜ୍ଜ୍ୱଳ, କୀଟ୍ସଙ୍କ କାବ୍ୟ ଇନ୍ଦ୍ରିୟ-ମନୋରମତାରେ । ବିମୂର୍ତ୍ତି ଭାବରାଜ୍ୟରେ ଶେଲିଙ୍କର ବିହାର, କୀଟ୍ସଙ୍କର ମୂର୍ତ୍ତି ସ୍ପର୍ଶଗ୍ରାହ୍ୟ ରୂପର ଜଗତରେ । ଶେଲିଙ୍କର କବି-ମାନସ ମେଘ ଓ ତାରାରେ ଅଲୋକ ସନ୍ଧାନରେ ବ୍ୟାପୃତ, କୀଟ୍ସ ଏହି ମର୍ତ୍ତ୍ୟ ପୃଥିବୀ ସଙ୍ଗେ ଏକାତ୍ମ ନ ହେଲେ ବି ଏହିଠାରେ ତାଙ୍କର ନିଶ୍ଚିତ ପଦଚିହ୍ନ । ଶେଲି ଥିଲେ ବିଦ୍ରୋହୀ କବି, ପୃଥିବୀକୁ କଳୁଷମୁକ୍ତ କରି ମନୁଷ୍ୟଙ୍କୁ ସ୍ୱାଧିକାରରେ ପ୍ରତିଷ୍ଠିତ କରିବା ନିମନ୍ତେ ତାହାଙ୍କର ସଂଗ୍ରାମ । କିନ୍ତୁ କୀଟ୍ସ

ରୂପର ଧ୍ୟାନରେ ନିମଗ୍ନ, ଏସବୁ ସମସ୍ୟା କ୍ଷଣକାଳ ନିମନ୍ତେ ସୁଦ୍ଧା ତାଙ୍କର ଚିତ୍ତକୁ ସ୍ପର୍ଶ କରିନାହିଁ । *

ରାଧାନାଥଯୁଗର ବିଭିନ୍ନ କବି ଓ ଲେଖକମାନଙ୍କ ମଧ୍ୟରେ ଏହିପରି ନାନା ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ରାଧାନାଥଙ୍କ କବି-ମାନସର ସହଜ ଆନନ୍ଦ 'ଗ୍ରହଣରେ ନୁହେଁ, ବର୍ଜନରେ' । ସେ ମନୁଷ୍ୟକୁ କେଉଁଠାରେ ଆନନ୍ଦରେ ଗ୍ରହଣ କରିନାହାନ୍ତି । ତାଙ୍କର ନାରୀ ଓ ପୁରୁଷ ସମସ୍ତଙ୍କ ଜୀବନ ଏକରକମ ହାହା-କାରରେ ପର୍ଯ୍ୟବସିତ । ରାଧାନାଥଙ୍କ ପ୍ରେମାନୁରକ୍ତା ନାରୀର ଆକାଂକ୍ଷା ଅତୃପ୍ତ ରହିଛି । ତାଙ୍କ ନାରୀ ପ୍ରେମିକକୁ ହୃଦୟର ସର୍ବସ୍ୱ ଅର୍ପଣ କରିଦେଇ ନିଜକୁ ରିକ୍ତ କରିଦେଲେ ମଧ୍ୟ ସାଂସାରିକ ସୁଖ ଉପଭୋଗ କରିପାରିନାହିଁ । ନନ୍ଦିକା ଆତ୍ମହତ୍ୟା କରିଛି । ଉଷା ଜୟନ୍ତ ପାଇଁ ଏତେ ବ୍ୟାକୁଳ ବ୍ୟଥିତ ହେଲା, କିନ୍ତୁ ଶେଷରେ ମୃତ୍ୟୁରେ ହିଁ ତା ଜୀବନର ଯବନିକା-ପାତ ହୋଇଅଛି । ଏମାନେ ଏ ଇନ୍ଦ୍ରିୟଭୋଗ୍ୟ ସଂସାରରୁ କିଛି ଗ୍ରହଣ କରିପାରି ନାହାନ୍ତି, କେବଳ ବିଫଳ ରୋଦନ ହିଁ ତାଙ୍କ ଜୀବନରେ ସାର ହୋଇଛି । ରାଧାନାଥଙ୍କ କାବ୍ୟରେ ଏ ଜୀବନବିମୁଖତା ଓ ନୈରାଶ୍ୟର ଚିତ୍ର ଦେଖିଲେ ପାଠକ ପ୍ରାଣରେ ଅତୃପ୍ତି ଓ ଅସମାପିକାର ବେଦନା ରହିଯାଏ । ରାଧାନାଥଙ୍କ କାବ୍ୟର ଆଉ ଗୋଟିଏ ଉପାଦାନ ତାଙ୍କର ଜୀବନପ୍ରତି ବିତୃଷ୍ଣା । ଏ ଜୀବନ-ବିତୃଷ୍ଣା ନେଇ ସେ ଯେଉଁ କାବ୍ୟ ରଚନା କରିଅଛନ୍ତି ତାହା କବି ଓ ପାଠକ ମଧ୍ୟରେ ଗଭୀର ବ୍ୟବଧାନ ସୃଷ୍ଟି କରିଅଛି । ଚନ୍ଦ୍ରଭାଗା ସୁନ୍ଦରୀ ଓ ଯୁବତୀ । ସୂର୍ଯ୍ୟ ତାଙ୍କର

---

* ଇଂରେଜୀ ସାହିତ୍ୟର ଇତିହାସ—ଅରବିନ୍ଦ ପୋଦ୍ଦାର, ପୃ ୯୮ ।

ପଶ୍ଚାଦ୍ଧାବନ କରି ତାଙ୍କୁ ପ୍ରିୟାରୂପେ ପାଇବା ପାଇଁ କେତେ ଦୈନ୍ୟ, କେତେ ଲଘୁତା ପ୍ରକାଶ କରି ନାହାନ୍ତି ! କିନ୍ତୁ ଚନ୍ଦ୍ରଭାଗାର କଣ ଜୀବନ ନଥିଲା ? ସେ ପ୍ରାଣରେ କଣ ପ୍ରେମ-ଦେବତାର ସ୍ପର୍ଶ ପର୍ଯ୍ୟନ୍ତ ନଥିଲା ? ରକ୍ତମାଂସଧାରିଣୀ ଚନ୍ଦ୍ରଭାଗାର ଶିରାପ୍ରଶିରାରେ କଣ ଜୈବ କାମନାର ବିନ୍ଦୁବିସର୍ଗ ପର୍ଯ୍ୟନ୍ତ ନଥିଲା ? କେବଳ ଦେହର ଶୁଚି କିମ୍ବା ପ୍ରାଣରକ୍ଷା ହିଁ କଣ ଉଦ୍‌ଭିନ୍ନଯୌବନା ରୂପସୀ ନାରୀର ଏ ଜୀବନରେ ଏକମାତ୍ର କାମ୍ୟ ? ପକ୍ଷାନ୍ତରେ ନାରୀ କଣ ଏତେ ଅସହାୟା ? କୌଶଲ୍ୟା ନୀରବରେ ଜନ୍ମଦାତା ପିତାଙ୍କଠାରୁ ଏତେ ଲଜ୍ଜାକର ଅପମାନ ମୁଣ୍ଡ ପୋତି ସହ୍ୟ କଲେ କିପରି ? କାମାତୁର ପିତା ଯେତେବେଳେ କହିଲେ, "ଲବଣ୍ୟ ପ୍ରତିମା ଗ୍ରହଣ କରିବା ଅନ୍ୟପକ୍ଷେ ତା କି ମଣି ?", ଏହାର ନିର୍ଲଜ୍ଜ, ନିଗୂଢ଼ ଓ ଅଶ୍ଳୀଳ ଇଙ୍ଗିତ ବୁଝି ଗୋଟେ ପ୍ରବଳ ପ୍ରତିବାଦର ଝଡ଼ ସୃଷ୍ଟି କରିବାର ଦୁର୍ଦ୍ଦମ କାମନା ସେତେବେଳେ ତାଙ୍କ ଅନ୍ତରର ଅନ୍ତଃସ୍ଥଳରୁ ଉଦ୍ଗାରିତ ହୋଇ ନୀତିହୀନ କାମୁକ ପିତାକୁ କାହିଁକି କଶାଘାତରେ ଜର୍ଜରିତ ନକଲା ? ଏହି ନାରୀମାନଙ୍କର ଜୀବନ-ସ୍ପନ୍ଦନ କାହିଁ ? ଜୀବନର ମୂଲ୍ୟବୋଧ ପ୍ରତି ଏମାନଙ୍କର ସଚେତନତା କାହିଁ ? ଏହି ଜୀବନ-ବିତୃଷ୍ଣା ଯୋଗୁ ରାଧାନାଥଙ୍କର ନାରୀ ଜୀବନ-ରସ ଉପଭୋଗ କରିପାରି ନାହାନ୍ତି ।

ଭକ୍ତକବି ମଧୁସୂଦନ ତ ଅଧ୍ୟାତ୍ମବାଦୀ ବ୍ରହ୍ମୋପାସକ । ପଦ୍ମଟିଏ ଦେଖିଲେ ସେ ଭକ୍ତିରେ ଗଦ୍‌ଗଦ୍ ହୋଇଯାଉଥିଲେ । ଅନନ୍ତ ଆକାଶର ସୀମାହୀନ ନୀଳିମାର ପ୍ରଶାନ୍ତ ବିସ୍ତୃତି ଦେଖିଲେ ସେହି ଅବାଙ୍ମାନସଗୋଚର ଭଗବାନଙ୍କ କଥା ତାଙ୍କର

ମନେ ପଡ଼ୁଥିଲା । ତାଙ୍କ କାବ୍ୟ କବିତାରେ ଏ ବାସ୍ତବ ଜଗତର ଆଶା, ନୈରାଶ୍ୟ, ସୁଖ, ଦୁଃଖ, ଘାତ ପ୍ରତିଘାତର ଚିତ୍ର କାହିଁ ? ସେ ଅବଶ୍ୟ ଆମକୁ ବାରମ୍ବାର ଉଦ୍‌ବୋଧନ ଦେଇ ଅଛନ୍ତି 'ଜଗତର ହିତ ଅର୍ଥେ ଦିଅରେ ଜୀବନ', କିନ୍ତୁ ଏ ଜୀବନକୁ 'ଜଗତର ହିତ ଅର୍ଥେ ବିସର୍ଜନ' କରି କିପରି ସାର୍ଥକ କରିବାକୁ ହୁଏ ତାର ବାସ୍ତବନିଷ୍ଠ ଚିତ୍ର ତାଙ୍କର କେଉଁ କବିତାରେ ଅଛି ? 'ବୁଦ୍ଧଦେବ' ଓ 'ଅଶୋକ' ପ୍ରଭୃତି କେତେକ ଐତିହାସିକ ପ୍ରବନ୍ଧମାନଙ୍କରେ ସେ ଜୀବନର ମହତ୍ତ୍ୱ ସମ୍ବନ୍ଧରେ ପାଠକମାନଙ୍କୁ ସଚେତନ କରି ଯାଇଅଛନ୍ତି ସତ୍ୟ, କିନ୍ତୁ ଏହି ପ୍ରବନ୍ଧଗୁଡ଼ିକର ରଚନାର ଅନ୍ତରାଳରେ ଅଛି ମଧୁସୂଦନଙ୍କ ଧର୍ମବୁଦ୍ଧିର ଅନୁ-ପ୍ରେରଣା । ସମସାମୟିକ ସମାଜର ସମସ୍ୟା ଏଥିରେ କାହିଁ ?

କିନ୍ତୁ ଏଦିଗରେ ଫକୀରମୋହନଙ୍କ କଥାସାହିତ୍ୟ ପରମ-ବୈଶିଷ୍ଟ୍ୟରେ ବିମଣ୍ଡିତ ଓ ଭାସ୍ୱର । ଏହିଠାରେ ବିଗ୍ଭର କରିବାକୁ ହେବ, ରାଧାନାଥଯୁଗରେ ଫକୀରମୋହନଙ୍କ ବୈଶିଷ୍ଟ୍ୟ କ'ଣ, ଏବଂ 'ଫକୀରମୋହନ ଯୁଗ' ବୋଲି ଅଉ ଗୋଟିଏ ଯୁଗର ଅବତାରଣା କଲେ, କିପରି ଅଯୌକ୍ତିକ ହେବ ନାହିଁ । ରାଧାନାଥ ଓ ମଧୁସୂଦନଙ୍କ ଜୀବନ-ବିମୁଖତା ସ୍ଥାନରେ ଫକୀରମୋହନ ଉପସ୍ଥାପନ କଲେ ଜୀବନ-ନିଷ୍ଠା, ଜୀବନ-ଜିଜ୍ଞାସା ଓ ଜୀବନ-ମୁଖିତା । ସେ କଳ୍ପନା-ରାଜ୍ୟରୁ ସାହିତ୍ୟକୁ ମୁକ୍ତି ଦେଇ ତାକୁ କଲେ ବାସ୍ତବଧର୍ମୀ । ଏହି ଧୂଳିଧୂସରିତ ମର୍ତ୍ତ୍ୟମଣ୍ଡଳ ସହିତ ସେ ସ୍ଥାପନ କଲେ ଘନିଷ୍ଠ ସମ୍ପର୍କ । ଆମରି ଦୈନନ୍ଦିନ ଜୀବନର ଚିତ୍ର ଆମରି ଭାଷାରେ କହିଲେ । ଆମରି ଗାଧୁଆ ତୋଠର ଚିତ୍ର ଆମରି ଗାଁ ମାଇପିଙ୍କ ଭାଷାରେ ଅଙ୍କନ କଲେ । ଚନ୍ଦ୍ରଭାଗା, ନନ୍ଦିକା, ଉଷା, କୌଶଲ୍ୟା, ଲଳିତା ଓ ବିମଳାଙ୍କ ସ୍ଥାନରେ

ଆମ ଆଗରେ ମୂର୍ତ୍ତିମନ୍ତ କରି ଥୋଇଲେ ସାରିଆ, ଚମ୍ପା, ଚନ୍ଦ୍ରକଳା, ଗେଣ୍ଡେଲି ଓ ନାକଫୋଡ଼ିଆ ମା'କୁ । ଫକୀରମୋହନଙ୍କ କଥା-ସାହିତ୍ୟରେ ପଲ୍ଲୀମୟ ଉତ୍କଳର ଜୀବନର ସ୍ପର୍ଶ ଓ ଆନନ୍ଦ ଆମେ ପ୍ରଥମ କରି ଉପଭୋଗ କଲୁ ।

ଫକୀରମୋହନ ଓଡ଼ିଆ ସାହିତ୍ୟରେ ପ୍ରଥମ ସାର୍ଥକ ଔପନ୍ୟାସିକ ଓ ଗାଳ୍ପିକ । ଜୀବନର ବାସ୍ତବ ରୂପ ଅଙ୍କନ କରି ତାଙ୍କ ପୂର୍ବରୁ 'ଛ ମାଣ ଆଠ ଗୁଣ୍ଠ' ପରି ଉପନ୍ୟାସ କେହି ରଚନା କରିନଥିଲେ । ବାସ୍ତବବାଦିତା ଓ ପୁଙ୍ଖାନୁପୁଙ୍ଖ ପ୍ରାଞ୍ଜଳ ବର୍ଣ୍ଣନା କେବଳ ଫକୀରମୋହନଙ୍କ କଥା-ଶିଳ୍ପର ଏକମାତ୍ର ବିଶେଷତ୍ୱ ନୁହେଁ । ଏ ବାସ୍ତବ ଚିତ୍ରର ଅନ୍ତରାଳରେ ଅନ୍ତଃସଲିଳା ଫଲ୍‌ଗୁପରି ତାଙ୍କର ବଳିଷ୍ଠ ଆଦର୍ଶବାଦିତାର ସ୍ରୋତ ପ୍ରବାହିତ । ଫକୀର-ମୋହନ ଅବଶ୍ୟ ପାଠକଙ୍କୁ ନୀତିଶିକ୍ଷା ଦେଇଅଛନ୍ତି । ସାହିତ୍ୟର ଆଦର୍ଶବାଦରେ ସେ ଆସ୍ଥାବାନ୍ ଥିଲେ । କିନ୍ତୁ ଶିଳ୍ପର ସୁକୁମାର ଓ ସୁମନୋଜ୍ଞ ଆବରଣ ମଧ୍ୟରେ ସେ ଆଦର୍ଶ କିପରି ସୁସଂଯତ ଓ ସୁଷମାନ୍ୱିତ ଇଙ୍ଗିତ ଓ ଅଭିବ୍ୟକ୍ତ ଲାଭ କରିଛି ତାହାହିଁ ତାଙ୍କର ଅପୂର୍ବ କଳାକୁଶଳତାର ପରିଚାୟକ । ରାଧାନାଥ ଓ ମଧୁସୂଦନ ଉଚ୍ଚ ଇଂରାଜୀ ଶିକ୍ଷା ଲାଭ କରିଥିଲେ । ପାଶ୍ଚାତ୍ୟ ସାହିତ୍ୟ ପ୍ରତି ସେ ଦୁହିଙ୍କର ମମତା ଥିଲା । ଦୁହେଁ ଊଣାଅଧିକେ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ । ରାଧାନାଥ 'ଇତାଲୀୟ ଯୁଗ' ଶୀର୍ଷକ ଗୋଟିଏ ଦୀର୍ଘ ଗଳ୍ପ ଓଡ଼ିଆରେ ଅନୁବାଦ କରିଅଛନ୍ତି । ମଧୁସୂଦନ ମଧ୍ୟ 'ପ୍ରଣୟୀର ଅଦ୍ଭୁତ ପରିଣାମ'ରେ ଗୋଟିଏ ବିଦେଶୀ ଗଳ୍ପକୁ ଓଡ଼ିଆରେ ଅନୁବାଦ କରିଥିଲେ । ଇଚ୍ଛା କରିଥିଲେ ମୌଳିକ ଉପନ୍ୟାସ ଓ ଗଳ୍ପ ସେ ଦୁହେଁ ରଚନା କରି ପାରିଥାନ୍ତେ । କିନ୍ତୁ 'ପାରିଥାନ୍ତେ', ଏ କଥାଟି ଶକ୍ତି ଓ

ପ୍ରତିଭାସାପେକ୍ଷ । ଫକୀରମୋହନଙ୍କର ଲୋକଚରିତ୍ର ଅଧ୍ୟୟନ କରିବାର ପ୍ରବୃତ୍ତି ଥିଲା । ଜୀବନପ୍ରତି ତାଙ୍କର ପ୍ରଗାଢ଼ ମମତା ଥିଲା । ଏତେ ଦୁଃଖ କଷ୍ଟ ମଧ୍ୟରେ ବି ସେ ଜୀବନର ରସ ଉପଭୋଗ କରିବାକୁ ଉତ୍କଣ୍ଠିତ ଥିଲେ । ସମାଜସ୍ଥ ଲୋକମାନଙ୍କ ସହିତ ତାଙ୍କର ଗୋଟିଏ ପରମାତ୍ମୀୟ ଭାବ ଥିଲା । ଗଭୀର ଅନୁଭୂତି ଓ ବିସ୍ତୃତ ସହାନୁଭୂତି ଥିଲା ତାଙ୍କ ପ୍ରାଣର ପରମ ସମ୍ପଦ । ତେଣୁ ତାଙ୍କ କଥା-ସାହିତ୍ୟରେ ଆମେ ଦେଖିବାକୁ ପାଉ ମନୁଷ୍ୟଜୀବନର ନାନା ରହସ୍ୟ, ସୁଖଦୁଃଖର ବହୁ ଚିତ୍ର, ଦାମ୍ପତ୍ୟ ପ୍ରଣୟର ଅମିୟ ପ୍ରତିଚ୍ଛବି, ଆଶା ନୈରାଶ୍ୟର ଘାତ ପ୍ରତିଘାତ, ଅନୁତାପର ତୀବ୍ର ତୁଷାନଳ, ଦର୍ପ ଓ ଦମ୍ଭର ବୃଥା ଆସ୍ଫାଳନ, ମୂର୍ଖତା ଓ ନିର୍ବୋଧତାର ଚରମ ଗ୍ଳାନି । ସ୍ଥୂଳତଃ ଫକୀରମୋହନଙ୍କ କଥା-ସାହିତ୍ୟ ଗୋଟିଏ ଚରିତ୍ର-ଚିତ୍ରଶାଳା । ଫକୀରମୋହନ ରାଧାନାଥ, ମଧୁସୂଦନ, ଗଙ୍ଗାଧର ଓ ନନ୍ଦକିଶୋରଙ୍କ ପରି ଜଣେ ବ୍ୟକ୍ତି ମାତ୍ର ନଥିଲେ, ଥିଲେ ଗୋଟିଏ ମୂର୍ତ୍ତିମନ୍ତ ଅନୁଷ୍ଠାନ । ଫକୀରମୋହନ ଖାଣ୍ଟି ଓଡ଼ିଆ ସାହିତ୍ୟିକ । ରାଧାନାଥ ବିଦେଶୀ ସାହିତ୍ୟରୁ ବିଷୟବସ୍ତୁ ଆଣି କାବ୍ୟ ରଚନା କରିଅଛନ୍ତି ବୋଲି ଏପର୍ଯ୍ୟନ୍ତ ସେ ପ୍ରତିକୂଳ ସମାଲୋଚନାର ଶରବ୍ୟ ହୋଇ ରହି ଅଛନ୍ତି । ମଧୁସୂଦନଙ୍କ ବ୍ରହ୍ମୋପାସନା ଏବଂ ବ୍ରାହ୍ମସଙ୍ଗୀତ ଉପରେ ରାମମୋହନରାୟ ପ୍ରବର୍ତ୍ତିତ ବ୍ରାହ୍ମ୍ୟଧର୍ମର ପ୍ରଭାବ କେତେ, ଏ ବିଷୟରେ ମଧ୍ୟ ସମାଲୋଚକମାନଙ୍କଠାରୁ ସନ୍ଦେହର ଗୁଞ୍ଜନ ଶୁଣାଯାଏ । କିନ୍ତୁ ଖାଣ୍ଟି ଓଡ଼ିଆ ଭାଷାରେ ସର୍ବପ୍ରଥମେ ଖାଣ୍ଟି ଓଡ଼ିଆ ପରିବେଶ, ଓଡ଼ିଆ ସାମାଜିକ ଚିତ୍ର ଓ ଚରିତ୍ର ଅଙ୍କନ କଲେ ଫକୀରମୋହନ । କିନ୍ତୁ ସେଥିରେ 'ଗ୍ରାମ୍ୟତା ନାହିଁ, ଗରିମା ଅଛି' ।

ଫକୀରମୋହନଙ୍କୁ ଯୁଗସ୍ରଷ୍ଟା କହିବାର ଅନ୍ୟତମ କାରଣ ହେଉଛି, ସେ ଓଡ଼ିଆ ସାହିତ୍ୟରେ ଆଧୁନିକ ଗଳ୍ପର ସ୍ରଷ୍ଟା । କାହାଣୀର ଅବାସ୍ତବତା, ଅତିରଞ୍ଜନ ଓ ଅବିଶ୍ୱାସ୍ୟତାକୁ ଦୂରକୁ ଠେଲି ଦେଇ ସେ ଗଳ୍ପ-ସାହିତ୍ୟରେ ଆଣିଦେଲେ ନୂତନ ଅଭିମୁଖ୍ୟ, ନୂତନ ଶୈଳୀ । ଆଜି ଅବଶ୍ୟ ଓଡ଼ିଆ-ସାହିତ୍ୟ କ୍ଷୁଦ୍ର-ଗଳ୍ପରେ ସମୃଦ୍ଧ । ଯେ ପାରୁଛି, ସେ କ୍ଷୁଦ୍ର ଗଳ୍ପ ଲେଖିବାରେ ହାତ ଦେଉଛି । ଏହା ଓଡ଼ିଆ ସାହିତ୍ୟର ସୌଭାଗ୍ୟ କି ଦୁର୍ଭାଗ୍ୟ ସେ କଥା କହିହେଉ ନାହିଁ । ଭବିଷ୍ୟତ୍ ତାର ବିଚାର କରିବ । ଫକୀରମୋହନ ଦୂରଦୃଷ୍ଟିର ସହିତ ବୋଧହୁଏ ସେତେବେଳେ ଜାଣି ପାରିଥିଲେ, ନିକଟଭବିଷ୍ୟତରେ ଏହି କ୍ଷୁଦ୍ର ଗଳ୍ପ ହିଁ ପାଠକମାନଙ୍କର ବିଶେଷ ମନୋରଞ୍ଜକ ହେବ, ସେଥିପାଇଁ ଶେଷ ଜୀବନରେ ଦେହ କ୍ରମେ କ୍ରମେ ଅବଶ ହୋଇ ଆସୁଥିବା ସମୟରେ ନିୟମିତ ଭାବରେ କ୍ଷୁଦ୍ର ଗଳ୍ପ ଲେଖି 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ ହେବା ନିମନ୍ତେ ପଠାଉଥିଲେ । କ୍ଷୁଦ୍ର ଗଳ୍ପ ରଚନା କରି ଫକୀରମୋହନ ଯେଉଁ ସୁସ୍ଥ ପରମ୍ପରା ସୃଷ୍ଟି କରିଗଲେ, ତାହା ଏ ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଏବେ ମଧ୍ୟ କୌଣସି କୌଣସି ଗଳ୍ପଲେଖକ, ଅଜ୍ଞାତରେ ହେଉ ବା ସଜ୍ଞାତରେ ହେଉ, ଫକୀରମୋହନଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରି ପାରିନାହାନ୍ତି । କେହି କେହି ଫକୀରମୋହନଙ୍କ 'ପରକୌତୁକମୟୀ' ପ୍ରକାଶ-ଶୈଳୀକୁ ଅନୁକରଣ କରି ହାସ୍ୟରସାତ୍ମକ ଗଳ୍ପ ସୃଷ୍ଟି କରୁଅଛନ୍ତି । କିନ୍ତୁ ଫକୀରମୋହନଙ୍କର କୃତିତ୍ୱ ସେଥିରେ କାହିଁ ? ସାହିତ୍ୟରେ ଯୁଗସୃଷ୍ଟିର ଅନ୍ୟତମ ଲକ୍ଷଣ—ବହୁଦିନଧରି ସେ ସ୍ରଷ୍ଟା ପରବର୍ତ୍ତୀ ଲେଖକମାନଙ୍କର ଅନୁକରଣୀୟ ହୋଇ ରହେ । ଫକୀର-ମୋହନଙ୍କ ପରେ ଯେଉଁମାନେ ଉପନ୍ୟାସ ରଚନା କରିଅଛନ୍ତି,

ସେମାନଙ୍କ ମଧ୍ୟରୁ ଅନେକ ଯେ ତାଙ୍କର ସଂସ୍କାରପ୍ରୟାସ, ବାସ୍ତବନିଷ୍ଠା ଓ ବର୍ଣ୍ଣନାର ପୁଙ୍ଖାନୁପୁଙ୍ଖତାକୁ ଅନୁକରଣ କରିଅଛନ୍ତି, ତାହା ଗବେଷଣାର ସାମଗ୍ରୀ ।

ଫକୀରମୋହନଙ୍କର **ଓଡ଼ିଆ** ସାହିତ୍ୟକୁ ଆଉ ଦୁଇଟି ବିଶିଷ୍ଟ ଅବଦାନ ଅଛି । ଏହି ଅବଦାନର ସ୍ୱତନ୍ତ୍ରତା ଓ ଅଭିନବତ୍ୱ ଯୋଗୁ ତାଙ୍କର ଯୁଗସ୍ରଷ୍ଟା ହେବାର ଦାବୀ ଅଧିକ ଦୃଢ଼ୀଭୂତ ହୋଇଅଛି । ସେ ଦୁଇଟି ହେଉଛି 'ଉତ୍କଳଭ୍ରମଣଂ' ଏବଂ 'ଆତ୍ମଜୀବନ-ଚରିତ' । ଫକୀରମୋହନଙ୍କର ସ୍ୱଭାବସୁଲଭ ରସିକତା ତାଙ୍କର ଉପନ୍ୟାସ ଓ ଗଳ୍ପ ଏବଂ ଏପରି କି କୌଣସି କୌଣସି କବିତାରେ ପରିସ୍ଫୁଟ । ଓଡ଼ିଆ ଜାତିକୁ ସେ ଯେପରି ହସେଇ ରସେଇ ଯାଇଛନ୍ତି, ଏପରି ତାଙ୍କ ପୂର୍ବରୁ କେହି କରିନଥିଲେ, କି ଏପର୍ଯ୍ୟନ୍ତ ତାଙ୍କର ସେହି ଶକ୍ତିକୁ କେହି ଅତିକ୍ରମ କରି ପାରିନାହାନ୍ତି । ଯୁଗନ୍ଧର ଫକୀରମୋହନଙ୍କର ଯୁଗସ୍ରଷ୍ଟାର ଲକ୍ଷଣ ଏହି ନିର୍ମଳ, କ୍ଷମାସୁନ୍ଦର ଓ ସଂବେଦନଶୀଳ ହାସ୍ୟରସ ସୃଷ୍ଟି କରିବାରେ । କିନ୍ତୁ ଏ ହାସ୍ୟରସ ଏବଂ ବ୍ୟଙ୍ଗ ଗୋଟିଏ ଅଭିନବ ରୂପ ଲାଭ କରିଛି ତାଙ୍କ 'ଉତ୍କଳଭ୍ରମଣଂ'ରେ । 'ଉତ୍କଳ-ଭ୍ରମଣଂ' ପଦ୍ୟ ଫକୀରମୋହନଙ୍କ ସମସାମୟିକ ସମାଜର ଗୋଟିଏ ଜୀବନ୍ତ ଇତିହାସ । ଓଡ଼ିଶାର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ତାଙ୍କର ଆଖି ବୁଲି ଆସିଛି । ଯେଉଁମାନେ ଦେଶସେବୀ, ସାହିତ୍ୟିକ, କର୍ମୀ, ପଣ୍ଡିତ, ଧନୀ ଓ ମାନୀ, ଯେଉଁମାନଙ୍କ ସାଧନା ଓ ସେବା ଉପରେ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ନିର୍ଭର କରେ, ସେମାନଙ୍କୁ ଫକୀରମୋହନ କେବଳ ଉତ୍ସାହ ଦେଇ ନାହାନ୍ତି, କର୍ମରେ ଶିଥିଳତା ଦେଖି ସେମାନଙ୍କୁ ବ୍ୟଙ୍ଗ ବିଦ୍ରୂପ ମଧ୍ୟ କରିଅଛନ୍ତି । ଏପରି ଗୋଟିଏ କୌତୁକପୂର୍ଣ୍ଣ ପଦ୍ୟମୟ ଜୀବନ୍ତ-

ଇତିହାସ ଆଜି କିଏ ରଚନା କରୁଛି ? 'ଫକୀରମୋହନ'ଙ୍କ 'ଆତ୍ମଜୀବନ ଚରିତ' ଓଡ଼ିଆ ସାହିତ୍ୟର ଗୋଟିଏ ଅତୁଳନୀୟ ସମ୍ପଦ । ଏଥିରେ କେବଳ ଫକୀରମୋହନ ନିଜର ବ୍ୟକ୍ତିଗତ ଜୀବନର ଉତ୍‌ଥାନ ପତନର ଇତିହାସ ଦେଇନାହାନ୍ତି, ତତ୍କାଳୀନ ଓଡ଼ିଶାର ଶିକ୍ଷା, ରାଜନୀତି ଓ ସମାଜନୀତି ସମ୍ବନ୍ଧରେ ମଧ୍ୟ ବହୁ ତଥ୍ୟ ସେ ସେଥିରେ ଦେଇଅଛନ୍ତି । ଏହାକୁ ଊନବିଂଶ ଶତାବ୍ଦୀର ଏକ ସରସ ଓ ପ୍ରାଣସ୍ପର୍ଶୀ 'ଇତିହାସ' ମଧ୍ୟ କୁହାଯାଇପାରେ । ସେତିକି ନୁହେଁ, ବର୍ତ୍ତମାନ ଯଦି କେହି ଊନବିଂଶ ଶତାବ୍ଦୀର ଓଡ଼ିଶାର ସାମାଜିକ ଇତିହାସ ପ୍ରଣୟନ କରିବାକୁ ଅଗ୍ରହୀ ହୁଏ, ତେବେ ସେ ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପରୁ ବହୁ ଉପକରଣ ପାଇ ପାରିବ ।

ଫକୀରମୋହନଙ୍କ କଥା-ସାହିତ୍ୟରେ କେବଳ ତାଙ୍କର ସଂସ୍କାରପ୍ରବଣତା ଆମ ଦୃଷ୍ଟିରେ ପଡ଼େ ନାହିଁ । ଏ ସଂସ୍କାର ପ୍ରୟାସର ମୂଲ୍ୟ ହୁଏତ ଅସ୍ଥାୟୀ । ଫକୀରମୋହନ ଆମ ସମାଜର ଯେଉଁ କୁସଂସ୍କାରମାନଙ୍କୁ ବ୍ୟଙ୍ଗବିଦ୍ରୂପ କରିଅଛନ୍ତି, ତାହା ହୁଏ ତ ଦିନେ ଲୋପ ପାଇବ, ସେଦିନ ସଂସ୍କାରପ୍ରୟାସୀ ଫକୀରମୋହନଙ୍କର ସମାଜ-ସଂଗଠନ ପ୍ରଚେଷ୍ଟାର ପରିକଳ୍ପନା ଲୋକେ ପାସୋରି ଦେବେ । ତେବେ ଫକୀରମୋହନଙ୍କ ସାହିତ୍ୟରେ ଆଉ କ'ଣ ଅଛି, ଯାହା ଚିରନ୍ତନତାରେ ଭାସ୍ୱର—ଯାହା ସତ୍ୟ, ଶିବ, ସୁନ୍ଦରର ପ୍ରତୀକ—ଯାହା ଯୁଗାନୁସାରୀ ହୋଇ ଯୁଗାତିରିକ୍ତ—ସାର୍ବକାଳିକ ଓ ସାର୍ବଜନୀନ ? ସେ ଚିରନ୍ତନ ସମ୍ପଦ ଏହି ଗୋଟିଏ ମାତ୍ର ଭାବଗର୍ଭିକ ଉକ୍ତିରେ ଅଛି 'ପାପୀକୁ ଘୃଣା କର ନାହିଁ, ପାପକୁ ଘୃଣା କର' ।

ପରିଶେଷରେ ଫକୀରମୋହନଙ୍କର ଏ ଯେଉଁ ବ୍ୟାପକ ଓ ବହୁମୁଖୀ ସାହିତ୍ୟ-ସାଧନା ତାହା ରାଧାନାଥଯୁଗରେ ତାଙ୍କର ଅନନ୍ୟସାଧାରଣ ବୈଶିଷ୍ଟ୍ୟ । ସାହିତ୍ୟର କେଉଁ ବିଭାଗରେ ସେ ହାତ ଦେଇ ନାହାନ୍ତି ? ଓଡ଼ିଆ ଭାଷାକୁ ପ୍ରତିକୂଳ ପରିସ୍ଥିତିରୁ ଉଦ୍ଧାର କଲେ । ଓଡ଼ିଆ ଜାତିର ସମ୍ମାନ ରକ୍ଷା କଲେ । ରାଧାନାଥ ଓ ମଧୁସୂଦନଙ୍କ ପରି ଶିକ୍ଷା-ବିଭାଗର ଉଚ୍ଚପଦସ୍ଥ କର୍ମଚାରୀ ନଥିଲେ, ନିଜ ବହିକୁ ପାଠ୍ୟପୁସ୍ତକରୂପେ ଅନୁମୋଦିତ କରାଇ ବିପୁଳ ଅର୍ଥ ଉପାର୍ଜନର ସୁବିଧା ନଥିଲା । ତଥାପି ରାମାୟଣ, ମହାଭାରତ ଓ ଉପନିଷଦର ଅନୁବାଦଠାରୁ ଆରମ୍ଭ କରି ଉପନ୍ୟାସ, ଗଳ୍ପ, କାବ୍ୟ, କବିତା, ସମାଲୋଚନା ଓ ଆତ୍ମଚରିତ ରଚନା କରିବାରେ ସେ ତାଙ୍କର ସକଳ ଶକ୍ତି ନିୟୋଜିତ କରି ଆନନ୍ଦରେ ତନ୍ମୟ ହୋଇ ରହୁଥିଲେ । ଏପରି ଅନନ୍ୟସାଧାରଣ ସାଧନାର ଅମୂଲ୍ୟ ଧନ ଯେଉଁ ଫକୀରମୋହନ ଆମକୁ ଦେଇ ଯାଇଅଛନ୍ତି, ଏବଂ ଯେଉଁ ବ୍ୟାସକବିଙ୍କର ଅନିର୍ବଚନୀୟ ରସସୃଷ୍ଟି ଓଡ଼ିଆ ଜାତିକୁ ଚିରକାଳ ଆନନ୍ଦର ଦୀପ୍ତିମନ୍ତ ଆଲୋକରେ ଉଦ୍ଭାସିତ କରୁଥିବ, ସେ ଆମ୍ଭମାନଙ୍କର ସମ୍ମାନାର୍ହ, ବରେଣ୍ୟ ଓ ପ୍ରେରଣାର ଜୀବନ୍ତ ଉତ୍ସସ୍ୱରୂପ । ତାଙ୍କୁ 'ଯୁଗସ୍ରଷ୍ଟା' କହିବାରେ ଅସମୀଚୀନତା କେଉଁଠାରେ ?

---

ପରିସମାପ୍ତ

---

ବ୍ରହ୍ମପୁର : ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କ୍‌ସ୍‌ରେ ଶ୍ରୀ ହାଡ଼ୁ ରଥଗୁରୁଙ୍କ ଦ୍ୱାରା ମୁଦ୍ରିତ । ୧୯୬୩ ।

